ସୁଦ୍ରମୁନି ସାରଳାଦାସଙ୍କ କୃତ

# ମହାଭାରତ

ଦ୍ରୋଣପର୍ବ

## ଦ୍ରୋଣ ପର୍ବ





ନୂତନ
ମୁଦ୍ରଣ



ମୂଲ୍ୟ
ଟ ୭-୦୦





ପ୍ରକାଶକ-

ଶ୍ରୀରାଧାରମଣ ପୁସ୍ତକାଳୟ, ବାଲୁବଜାର, କଟକ-୨

## ମହାଭାରତ ଦ୍ରୋଣପର୍ବର

# ସୂଚିପତ୍ର



ଦ୍ରୋଣପର୍ବର ସୂଚିପତ୍ର ସମ୍ପୂର୍ଣ୍ଣ

---

# ମହାଭାରତ

## ଦ୍ରୋଣ ପର୍ବ



ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯକର୍ଣ୍ଣଧାରେ ହରିଃ ॥

ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା
ବିରାଟ ପର୍ବଂ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ ।
ଉଦ୍‌ଯୋଗଂ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃ ପରଂ
ସପ୍ତମଂ ଦ୍ରୋଣପର୍ବଂ ସ୍ୟାତ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ।
ନବମଂ ଶଲ୍ୟପର୍ବଂ ସ୍ୟାତ୍ ଗଦାପର୍ବଂ ତତଃପରଂ
ସୌପ୍ତିକଂ ତୁ ତଥା ପ୍ରୋକ୍ତଂ ଗର୍ଭନାଶନ ମେବ ଚ ।

ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ପ୍ରଦାନମୁଦକସ୍ୟ ତୁ
ଶାନ୍ତିପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧିକମେବ ଚ ।
ସ୍ୱର୍ଗାରୋହଣକଂ ଚୈବ ହରିବଂଶଂ ତଥୈବ ଚ
ଇତ୍ୟଷ୍ଟାଦଶପର୍ବାଣାଂ ସଂଖ୍ୟା ଦ୍ୱୈପାୟନେ ଶ୍ରୁତା ॥

ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।
ଭାରତ ଶ୍ରୁତମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ॥

## ଶାରଳାଙ୍କ ବନ୍ଦନା

ଜୟ ଜୟ ଜଗନ୍ମାତା ତ୍ରିପୁର ମୋହିନୀ
ଜୟ ମାଗୋ ଶାକମ୍ଭରୀ ଦୁଷ୍କୃତ ନାଶିନୀ ।
ଶ୍ରୀସିଦ୍ଧଶାରଳାରୂପେ ଏ କଳିଯୁଗରେ
ଭକ୍ତଙ୍କ ପାଇଁ ବସିଛୁ ଝଙ୍କଡ଼ପୁରରେ ।
ତୋହର ପ୍ରସାଦେ ମାଗୋ ଏ ମହାଭାରତ
ଅକ୍ଲେଶରେ ଲେଖିବାକୁ ଭାବଇ ମୋ ଚିତ୍ତ ।
ଏବେ ଦ୍ରୋଣପର୍ବ କଥା ଲେଖିବି ଗୀତରେ
ପଦମାନ କହିବଟି ବସି ମୋ କଣ୍ଠରେ ।
ଶୁଣ ସୁଜନରେ ମହାଭାରତର ବାଣୀ
ଅନାୟାସେ ତରିଯିବ ଭବସିନ୍ଧୁ ପୁଣି ।

---

## ଦୁର୍ଯ୍ୟୋଧନର ମ୍ଳେଚ୍ଛରାଜା ସହିତ ଭେଟ ଓ ଜଳଧର ବ୍ୟୂହ ଦର୍ଶନ

ମନୁ ରାଜା ପଚାରିଲେ ଅଗସ୍ତି ମୁନିଙ୍କ
ଦୁର୍ଯ୍ୟୋଧନ ଯାଇଥିଲେ ଭୀଷ୍ମଙ୍କ କତିକି ।
ତିଆରିଲେ ଯେ ଅନେକ ମତେ ଗଙ୍ଗାସୁତ
ଉତ୍ତର କୋଇଲେ ଶୁଣି ରାଜା କୁରୁନାଥ ।
ତଦନ୍ତେ କି ହେଲା ଫେଡ଼ି କହ ବ୍ରହ୍ମଋଷି
ବଦନ୍ତି ଅଗସ୍ତି ଯେଉଁପରି କୃଷିକାଶି
ବଳଦ ହଜାଇ ଏଣେତେଣେ ଖୋଜି ବୁଲି
ଭୀଷ୍ମଙ୍କ ଅଭାବେ ରାଜା ହେଲା ସେହିପରି ।
ଇତସ୍ତତଃ ହୋଇ ଏଣେ ତେଣେ ବୁଲୁଥିଲା
ଅରୁଣ ପ୍ରକାଶେ ଦ୍ରୋଣ ଗୁରୁଙ୍କୁ ଦେଖିଲା ।
ଦ୍ରୋଣ ବୋଇଲେ ବାବୁରେ କାହିଁ ତୁ ରାଜନ
ଦୁର୍ଯ୍ୟୋଧନ ବୋଲେ ଭୀଷ୍ମ ହେବାରୁ ମଗନ ।
ତହୁଁ ଦ୍ରୋଣ ବୋଲେ ରାଜା ଶୁଣ ମୋ ବଚନ
ନୈଋତ ଗିରିକି ବାବୁ ଚଳସି ବହନ
କର୍ମକୁ ଆଦରି ଚଳେ ମାନଚକ୍ରବର୍ତ୍ତୀ
ନୈଋତ ପର୍ବତେ ମିତ୍ର ହୋଇଲା ପାହାନ୍ତି ।
ମ୍ଳେଚ୍ଛ ଦେଶର ନୃପତିମାୟାସୁର ରାଜ
ବଡ଼ କାମରୂପୀ ସେହୁ ଅଟଇ ଦନୁଜ ।
ସଙ୍ଗେ ବତିଶ ଅର୍ବୁଦ ରହିଛନ୍ତି ଯୋଧୀ
ସେମାନଙ୍କର ଚଳନ୍ତେ କମ୍ପେ ବାରନିଧି ।
ତାହାର ମୁଖୁଁ ଭାରତ ସମର ସେ ଶୁଣି
ସଗର୍ବରେ ଆସେ ଯେନ ଥାଟର ଘଲଣି
ଖୁସିରେ ରୈବତଗିରି ବଳେ ଧାଇଁବର୍ତ୍ତି
ଯାଇଣ ମ୍ଳେଚ୍ଛରାଜାର ସହିତରେ ଭେଟି ।
ଅକଳନ ଥାଟ ଦେଖି ମାନଚକ୍ରବର୍ତ୍ତୀ
ପାଣ୍ଡବଙ୍କ ସୈନ୍ୟଗ୍ରାସ ମଣି କଲା ଭ୍ରାନ୍ତି ।
ଆସନ୍ତେଣ ଯୋଦ୍ଧାମାନେ କରନ୍ତି ଗର୍ଜନ
ଯେ ନଉନ ତାର ପକ୍ଷେ କରିବେ ସାହାଯ୍ୟ ।

ଆଶାହୀନ ଲୋକଙ୍କୁ ସେ କରନ୍ତି ତାରଣ
କ୍ଷତ୍ରିୟକୁଳ ଦମନ ତାଙ୍କ ବଡ଼ପଣ ।
ଏଣୁ କଥା ଶୁଣି ରାଜା ହୋଇଲେ ଉତ୍ଥିତ
ଥାଟ ନିକଟକୁ ଯାଇ ପୁଚ୍ଛିଲେ ଭୂପତି ।
କେଉଣ ଦେଶର ତୁମ୍ଭେ ଅଟ ମହୀପାଳ
ରାଜାଙ୍କୁ ଦେଖି ରହିଲେ ସେ ସକଳ ବଳ ।
ଯୋଦ୍ଧାଏ ପୁଚ୍ଛିଲେ ତୁମ୍ଭେ କେଉଣ ନୃପତି
ରାଜ୍ୟେଶ୍ୱର ପରପ୍ରେକ ଦିଶେ ତୁମ୍ଭ ମୂର୍ତ୍ତି ।
ମୁହିଁ ଅଟେ କୁଞ୍ଜଗଳ ଦେଶ ଅଧୀଶ୍ୱର
ପାଣ୍ଡବଙ୍କ ତୁଲେ ଜାଣ ବିବାଦ ମୋହର ।
ଧୃଷ୍ଟ ବୋଲଣ ମୋହର ଯେଉଁ ମହାରଥୀ
ତାହାର ପ୍ରତିଜ୍ଞା ପାଇ ପାଣ୍ଡବେ ଅପ୍ରୀତି ।
ସାକ୍ଷାତରେ ବଳୀପ୍ରାୟ ଅଟେ ନିଜ କର୍ମେ
ପର୍ଶୁରାମ ପରାଜୟେ ଯାହାର ସଂଗ୍ରାମେ ।
ବିପାକ କର୍ମ ମୋହର ଦଇବ ଅବଳେ
ସେ କ୍ଷତ୍ରିୟ ଶରଶଯ୍ୟା କଲା ବୃଦ୍ଧକାଳେ ।
ତାହାଙ୍କ ବଧିଲେ ମୁହିଁ ହୋଇ ନରମାକ୍ଷୀ
ପଳାଇବ ଇଚ୍ଛା କଲେ ସ୍ୱରାଜ୍ୟ ଉପେକ୍ଷି ।
ହୋଇବ ଭିକ୍ଷାଶୀ ବନେ ଯୋଗୀରୂପ ଧରି
ଛାଡ଼ିଲି ଯେ ମାୟା ମୋହ ଧନ ପୁତ୍ର ନାରୀ ।
ଆହେ ମ୍ଳେଚ୍ଛ ନରପତି ଶୁଣି ତୋର ବାନା
ଶରଣବତ୍ସଳ ତୋତେ ବୋଲ୍ଥାନ୍ତି ସିନା ।
ନିରଯ ସ୍ୱତନ୍ତ୍ର ମତ ଅଟଇ ମୁଁ ଜାଣି
ସ୍ୱର୍ଗ ଜଳଧାର ପ୍ରାୟ ଏ ତୋହର ବାଣୀ ।
ତାହା ଶୁଣିଣ ବୋଇଲା ମ୍ଳେଚ୍ଛ ନରପତି
ତୁ ଯେବେ ଏତେ ଦୁଃଖୀ ମୁଁ ହେଲି ତୋର ଭକ୍ତ
ନିଶ୍ଚିନ୍ତରେ ଥାଅ ଏବେ ନ ଛାଡ଼ ତୋ ରାଜ୍ୟ
ପାଣ୍ଡବ ତୁଲେ ସମର କରିବାକ ଆଜ ।
ଆଜ ତୋର ପାଟେ ସେନାପତି ହୋନ୍ତୁ ଦ୍ରୋଣ
ସୈନ୍ୟ ସେନ ପାଣ୍ଡବଙ୍କ ସଙ୍ଗେ କର ରଣ ।
ଆମ୍ଭର ସଞ୍ଚିତ ଜଳଧର ବ୍ୟୂହ ଗୋଟି
ଶ୍ରୀକୃଷ୍ଣ ଏଣେ ଆସନ୍ତୁ କେଉଣ କପାଟୀ ।
କୃଷ୍ଣ ଅର୍ଜୁନ କାଲି ତୋ ସମରେ ନ ଥିଲେ
ସ୍ୱର ପାଣ୍ଡବଙ୍କୁ ଜିଣିବୁଟି ତୋର ବଳେ ।
ରାଜା ବୋଲେ ତୁ ଜିଣିଲେ କୃଷ୍ଣ ଅର୍ଜୁନଙ୍କୁ
କ୍ଷଣକେ ଜିଣିବ ମୁହିଁ ସ୍ୱତ ପାଣ୍ଡବଙ୍କୁ ।
ପୂର୍ବେ ଗିରି ପଶ୍ଚିମରେ ଥାଇ ପୀଡ଼ ସ୍ତର
ଉତ୍ତର ମେନାକ ଦକ୍ଷିଣରେ ଯେ ଅଙ୍ଗୁଷ୍ଠି ।
ପଞ୍ଚଦଶ ଯୋଜନ ତା ମଧ୍ୟସ୍ଥଳ ଅଛି
ଚଉକତି ସରସ୍ୱତୀ ଯମୁନା ବେଢ଼ିଛି ।
ତହିଁର ମଧ୍ୟରେ ଜଳଧର ବ୍ୟୂହ ରଚି
ଅନେକ ମାୟା ସେ ମ୍ଳେଚ୍ଛ ଜାଣଇ ଯେ ପାଞ୍ଚି
ଦ୍ୱାତ୍ରିଂଶ ଖଣାରେ ଊନବିଂଶ ଯେ ପାଚେରି
ଅଠାଣୋଇ ଶତ ଦ୍ୱାରେ ସେନା ସସ୍ତ୍ରସ୍ତ୍ରଷି ।
ଅଭେଦ ବ୍ୟୂହ ଏ ପୁଣି ଦୈତ୍ୟ କାମରୂପୀ
ପଞ୍ଚଦ୍ୱାରେ ରହିଲେକ ସବୁ କୋଣ ବ୍ୟାପି ।
ମନ ଭେଦପାରେ ଯେହୁ ନିଜେ ଯୋଗବଳେ
ସେ ଜଳଧର ବ୍ୟୂହକୁ ଭେଦିବ ସେ ହେଳେ
ସ୍ୱର୍ଗ ଭେଦିପାରେ ତଳ ମଣ୍ଡଳୁ ଉପର
ଏ ସୈନ୍ୟ ଅଭେଦ୍ୟ ବ୍ୟୂହ ଅଷ୍ଟଚନ୍ଦ୍ରାକାର ।
ସେହି ମ୍ଳେଚ୍ଛ ଦେଶ ରାଜା ଯେଉଣ ନୃପତି
ଜଳଧର ବ୍ୟୂହକୁ ଯେ ରଚିଲାକ ସତି ।
ଆହେ ମନୁ କୃଷ୍ଣାର୍ଜୁନ ଆସିବେକ ଏଣେ
ଚକ୍ରବ୍ୟୂହେକ କରିବେ ଗୁରୁ ଦ୍ରୋଣ ତେଣେ ।
ମ୍ଳେଚ୍ଛ ନୃପତି ବୋଇଲା ସ୍ୱରହେଁ ମରିବେ
କୃଷ୍ଣ ଅର୍ଜୁନ ଯଦ୍ୟପି ଏଠାକୁ ଆସିବେ ।
ରକ୍ଷି ପାଣ୍ଡବଙ୍କୁ ଧରି ଜିଣି ତୁମ୍ଭେ ରଣେ
କୃଷ୍ଣ ଅର୍ଜୁନଙ୍କୁ ମୁହିଁ ମାରିବଇଁ ଏଣେ ।
ଜଳଧର ବ୍ୟୂହ ଦେଖି ତୋଷ ନରପତି
ବିଜୟ କରିଲା ତହୁଁ ତେଜ ମନୁ ଭ୍ରାନ୍ତି ।
ଆହେ ପ୍ରଭୁ ପୂର୍ଣ୍ଣବ୍ରହ୍ମ ଚତୁର୍ଦ୍ଧା ମୂରତି
ବଡ଼ ଦେଉଳରେ ନରେ ଦର୍ଶନ ପାଆନ୍ତି ।
ତୋହର ଯେ ଆଦିଅନ୍ତ କେ ପାରିବ କହି
ସଦାଶିବ ନ ପାରନ୍ତି ତୋ ପାଦକୁ ଧ୍ୟାୟି ।
ତୁ ଆଦି ପୁରୁଷ ସର୍ବଭୂତେ କରୁ ବାସ
ଜ୍ଞାନ ଅଜ୍ଞାନରେ ହେଉ ଦୃଶ୍ୟ ବା ଅଦୃଶ୍ୟ ।
ନାଭି କମଳରୁ ଜାତ କରିଲୁ ତୁ ବ୍ରହ୍ମା
ସେ ତ ନ ଜାଣି ପାରିଲା ତୋହର ମହିମା ।
ଚଉଦ ବ୍ରହ୍ମାଣ୍ଡ ନାଥ ଶରଣ ସୋଦର
ମୁହିଁ ଅକିଞ୍ଚନ ନର ବାରେ ଦୟାକର ।
ପତିତ ପ୍ରକୃତି ମୋତେ କଲେଣି ଆକୁଳ
ତେଣୁ ସଂସାର ସାଗରେ ନ ମିଳଇ କୂଳ ।

ତୋ ନାମ ରସନା ରଟୁ ନ ହୋଇ ବିମନ
ମୋହର ଅଶାନ୍ତ ଚିତ୍ତେ କର ତୁ ଛେଦନ ।
ଏ ଶୂଦ୍ରମୁନି ଶାରଳା ଦାସର ବିନତି
ଅନ୍ତିମ କାଳରେ ପୁଣି ପାଇବ ମୁକତି ।

---

## ଦ୍ରୋଣ ସେନାପତି ହୋଇ ଚକ୍ରବ୍ୟୂହ ନିର୍ମାଣ ଏବଂ ମ୍ଳେଚ୍ଛ ରାଜାର ବଂଶାନୁଚରିତ

ପଚାରିଲେ ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି କୁହ ମୋ ପୃଚ୍ଛିବା ଗିର ।
ଦୁର୍ଯ୍ୟୋଧନ ମ୍ଳେଚ୍ଛରାଜା ନିକଟରୁ ଆସି
ପୁଣି କେଉଁ କୃତ୍ୟ କଲେ କହନ୍ତୁ ପ୍ରକାଶି ।
ସେହି କଥା ଶୁଣିବାକୁ ମୋହର ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ପ୍ରବେଶିଲା କୁରୁପତି ଦ୍ରୋଣଙ୍କ ସନ୍ନିଧେ
ତାଙ୍କୁ ସେନାପତି କଲା ସେ ବିଶାଳ ଯୁଦ୍ଧେ ।
ସୁବର୍ଣ୍ଣ ରଥେ ଶାର୍ଦ୍ଦୂଳ ଚର୍ମ ଯତ୍ନେ ଥୋଇ
ତା ଉପରେ ଅଷ୍ଟରତ୍ନ ବେଦିକ ମଣ୍ଡାଇ ।
ଆଲଟ ଚାମର ପଡ଼େ ଉଡ଼ଇ ଯେ କେତ
ଗଗନକୁ ଗତିକରି ଦିଶେ ସୁଶୋଭିତ ।
ପାଞ୍ଚଲକ୍ଷ ରଥ ପୁଣି ବିଂଶଲକ୍ଷ ହସ୍ତୀ
କୋଡ଼ିଏ ଯଉଣି ଆଣି ସାଜିଲେ ପଦାତି ।
ସାର ବାହାଳି ମର୍ଦ୍ଦଳ ଲକ୍ଷେ ବାଜେ ଢୋଲ
ଯମରାଜା ଚମକିଲା ଶବଦ ଗହଳ ।
ଆଲମ୍ବ ଯେ ଲକ୍ଷେ ଲକ୍ଷେ ଉଦ୍ଦଣ୍ଡ ଯେ ଲକ୍ଷେ
ମୟୂର ପୁଚ୍ଛହିଁ ଲକ୍ଷେ ଚାମରହିଁ ଲକ୍ଷେ ।
ଦ୍ରୋଣଙ୍କର ଭୂଲେ ଦେଇ ଅସଂଖ୍ୟ ସଇନ
ମୁକୁଟ ବାନ୍ଧିଲା ରାଜା କରେ ଅର୍ଘ୍ୟ ଦେନ ।
କର୍ଣ୍ଣ ଅଶ୍ୱତ୍ଥାମା ଭୂରିଶ୍ରବା ସୋମଦତ୍ତ
ଶଲ୍ୟ ଶକୁନି ଯେ ମହାମଲ୍ଲ ଜୟଦ୍ରଥ ।
ଯୋଦ୍ଧା ମହାଯୋଦ୍ଧା ସଙ୍ଗେ ଦେଇ କୁରୁପତି
ମୁକୁଟ ବାନ୍ଧିଲା ଦ୍ରୋଣେ କରି ସେନାପତି ।
ଅନେକ ସାନନ୍ଦ ହୋଇ ସାଜନ୍ତି ସଇନ
ଦ୍ରୋଣ ସେନାପତି ବୋଲି ଶୁଭିଲାକ ଧ୍ୱନ ।
ସେନାପତି ହୋଇ ଚଳିଗଲେ ଗୁରୁ ଦ୍ରୋଣ
ସଜ ହୋଇଣ ଆସନ୍ତି ସର୍ବ ଯୋଦ୍ଧାମାନ ।
ବାଜେ ମଙ୍ଗଳ ମହୁରି କରି ମିଷ୍ଟଧ୍ୱନ
ଅମର ବୃନ୍ଦ ସେନ କି ବିଜେ ସସ୍ତ୍ରଯୋନ ।
ମକର ଶୁକ୍ଳପକ୍ଷ ଏକାଦଶୀ ତିଥି
ସେ ଆରଦ୍ରା ନକ୍ଷତ୍ରରେ ଅଟନ୍ତି ପାହାନ୍ତି ।
ସେହିଦିନ ସେନାପତି ଭରଦ୍ୱାଜ ଶିଷ୍ୟ
କୁରୁକ୍ଷେତ୍ର ମଣ୍ଡଳରେ ହୋଇଲେ ପ୍ରବେଶ ।
ଉପାନ୍ତ କରିଣ ଗୁରୁ ବ୍ୟୂହକେ ରଚିଲା
ଚକ୍ରବ୍ୟୂହ ବୋଲି ଯାହା ବିଖ୍ୟାତ ହୋଇଲା ।
ବଡ଼ ଦୁରପଦ ବ୍ୟୂହ ଅଟଇ ପ୍ରଚଣ୍ଡ
ନାଗବନ୍ଧରୁ ବଳିଷ୍ଠ ଅଟେ ଅରଦଣ୍ଡ ।
ନବଲକ୍ଷ ରଥୀ ପୁଣି ନବଲକ୍ଷ ହସ୍ତୀ
ଷୋଳସହସ୍ର ଅଶ୍ୱ ନ ଯଉଣୀ ପଦାତି ।
ଏତେକ ସୈନ୍ୟମାନଙ୍କୁ ଘେନି ଗୁରୁ ଦ୍ରୋଣ
ବ୍ୟୂହ ଦ୍ୱାରକୁ ଆବୋରି ରହିଲେ ଆପଣ ।
ତିନିଲକ୍ଷ ଅଶ୍ୱ ହସ୍ତୀ ଦଶଲକ୍ଷ ରଥ
ଦ୍ୱିତୀୟ ଦ୍ୱାରରେ ଘେନି ରହେ ଜୟଦ୍ରଥ ।
ବେନିଲକ୍ଷ ରଥୀ ହସ୍ତୀ ଚୌଦଲକ୍ଷ ହୟ
ତୃତୀୟ ଦ୍ୱାରେ ରହିଲେ କର୍ଣ୍ଣ ମହାଶୟ ।
ତିନିଲକ୍ଷ ହସ୍ତୀ ପାଞ୍ଚଲକ୍ଷ ରଥ ରଥୀ
ଏହା ତଳେ ତିନିକ୍ଷୌଣୀ ଆବର ପଦାତି ।
ଏତେକ ସୈନ୍ୟ ଘେନିଣ ଶାର ଶଲ୍ୟ ରାୟ
ଚତୁର୍ଥ ଦ୍ୱାରେ ରହିଲେ ହୋଇଣ ନିର୍ଭୟ ।
ଲକ୍ଷେକ ରଥ ଆବର ଦୁଇଲକ୍ଷ ହସ୍ତୀ
ତିନିଲକ୍ଷ ଅଶ୍ୱ ଚାରିକ୍ଷଉଣୀ ପଦାତି ।
ଘେନି ପଞ୍ଚମ ଦ୍ୱାରରେ ସ୍ଥିର ଭୂରିଶ୍ରବା
ସୋମବଂଶୀ କ୍ଷତ୍ରୀ ହୁଏ ସମରେ ମସବା ।
ନବଲକ୍ଷ ରଥ ଆଉ ନବଲକ୍ଷ ହସ୍ତୀ
ଏକାଦଶ ଲକ୍ଷ ଅଶ୍ୱ ନ କ୍ଷୌଣୀ ପଦାତି ।
ଷଷ୍ଠଦ୍ୱାରେ ରହିଲେ ଯେ ଘେନି କୃପାଚାର୍ଯ୍ୟ
ସଙ୍ଗେ ଅଛନ୍ତି ତାଙ୍କର ତିନିସହସ୍ର ରାଜ ।
ଲକ୍ଷ୍ମଣକୁମର ପୁଣି ମନ୍ତ୍ରୀ ଯେ ଶକୁନି
ସପ୍ତମେ ଜଗିଲେ ଦଶସହସ୍ର ସୈନ୍ୟ ଘେନି ।
ଅଷ୍ଟମ ଦ୍ୱାରେ ସତର ସହସ୍ର ନୃପତି
ସୈନ୍ୟ ଘେନିଣ ରହିଲେ ମାନଚକ୍ରବର୍ତ୍ତୀ ।
ଅତି ଅଗୋଚର କଥା ନବମ ଦୁଆରେ
ପିମ୍ପୁଡ଼ି ପଶିବାକୁ ବାଟ ନ ମିଳେ ସେଠାରେ ।

ତୃତୀୟ ଦ୍ୱାରେ ରହିଲ ଦ୍ରୋଣ ପୁଣ ଦ୍ରୋଣି
ହସ୍ତୀ ଅଶ୍ୱ ପଦାତିକ କେ ପାରିବ ଗଣି ।
ଏଥୁ ଅନନ୍ତରେ ଯେଉଁ ଦ୍ୱାର ଏକାଦଶ
ଦୁଃଶାସନ ଭୁଲେ ରହେ ଦୈତ୍ୟ ଅନମୁଷ ।
ପଚାଶ ଲକ୍ଷ ବ୍ଲଣ ସହସ୍ର ମତ୍ତହସ୍ତୀ
ଅଶ୍ୱ ପଦାତିକ ସଂଖ୍ୟା କହି ତା ନ ପାରି ।
ଅସଙ୍ଖ୍ୟ ସୈନ୍ୟ ଘେନି କୁରୁକୁଳ ସାଇଁ
ଚକ୍ରବ୍ୟୂହ ମଧ୍ୟରେ ସେ ରହିଲେକ ଯାଇଁ ।
ଚକ୍ରବ୍ୟୂହ ଦେଖିଣ ସେ ଆନନ୍ଦ ନରେନ୍ଦ୍ର
ଦ୍ରୋଣଙ୍କୁ କହଇ ଶିରେ ଦେଇ କର ବନ୍ଦ ।
ବାପାକ କର୍ମ ମୋହର ଯେତେ ଦିନ ଥିଲା
ମେଲ୍ଲପଛେ ଶ୍ରାନ୍ତ ତେଣୁ ଶରଶଯ୍ୟା କଲା ।
ଏସନକ ବୁଦ୍ଧି ଯେବେ ଥିଲା ଦ୍ରୋଣଗୁରୁ
ଆଗୁ ଏହା ନ ଭଣିଲ କେଉଁ ସକାଶରୁ ।
ମୁହିଁ ଆଶ୍ଚର୍ଯ୍ୟ ହୋଇଲି ଚକ୍ରବ୍ୟୂହ ସ୍ୱହିଁ
ଦେବଦାନବ ଭେଦନ୍ତା ଯାକୁ କେହି ନାହିଁ ।
ସାଧୁ ଦ୍ରୋଣ ମହାରଥୀ ଏ ତୋହର ବୁଦ୍ଧି
କୁରୁକୁଳ ରକ୍ଷଣେ ତୋ ଅବଶ୍ୟ ବାରିଧି ।
ଏହା ଶୁଣି ପ୍ରଜାପତି ବୈବସ୍ୱତ ମନୁ
ଏବେ ସଂକ୍ଷେପି କହିବା ଘଟରଣି ସୂନୁ ।
ସେ ଜଳଧର ବ୍ୟୂହକୁ କଲେ ଯେଉଁମାନେ
ସେମାନେ କେ ଅଟନ୍ତି ଯେ କହ ବଦ୍ୟମାନେ
କ ଅବା ପାଣ୍ଡବ ଶତ୍ରୁ ଥିଲେ ତାଙ୍କ ପାଖେ
କହ୍ନାଁ ଜଳଧର ବ୍ୟୂହ ପାତିଲେ ସେ ବିଶେଷେ
ଶୁଣ ଆହେ ମହାରାଜ ଫଲଙ୍ଗ ନୃପତି
କହୁଅଛି ସେହି କଥା ଶୁଣ ଦେଇମତି ।
କଣ୍ୱଚନ୍ଦ୍ର ନାମତ ସତ୍ୟଯୁଗ ଗଟେ
ପ୍ରୟାଗତୀର୍ଥେ ଗଙ୍ଗାଙ୍କୁ ଧ୍ୟାନରେ ଲଗାଏ ।
ଦଶସହସ୍ର ବରଷ ପରିଯନ୍ତେ ସେବ
ତାହାଙ୍କୁ ପ୍ରସନ୍ନ ତହୁଁ ହୋଇଲେ ଜାହ୍ନବୀ ।
ଧବଳ ଶୁଦ୍ଧସ୍ଫଟିକ ପ୍ରାୟ ତାଙ୍କ କାୟେ
ହି ଅମ୍ବରଙ୍କ ମଉଳ ଭୂଷିତ ସେ ମାଏ ।
ପବିତ୍ରକାରଣୀ ସେହୁ ଅଟନ୍ତି ମହୀରେ
ଅର୍ଦ୍ଧକାୟେ ବଢେଇଲେ କଣ୍ୱୁ ଆଗରେ ।
ପ୍ରସନ୍ନ ହୋଇଣ ଆଜ୍ଞା ଦେଲେକ କପାଳୀ
ବରମାଗ କଣ୍ୱୁରେ ପ୍ରସନ୍ନ ମୁଁ ହେଲି ।

ଶୁଣି ସ୍ତୁତିବାକ୍ୟ କହେ ଅନଙ୍ଗର ନାଥ
ପ୍ରସନ୍ନ ହେଲୁ କି ମୋତେ ଅଭୟା ପାର୍ବତୀ ।
ଗଙ୍ଗା ବୋଇଲେ ତୋହର ଯାହା ମନଇଚ୍ଛା
ମାଗରେ କଣ୍ୱଚନ୍ଦ୍ର ପୂରାଇବ ବାଞ୍ଛା ।
ମାଗୋ ଐଶାନ୍ୟ କୋଣର ଭୂଖଣ୍ଡ ଦେଶେ
ମୋହର ରାଜ୍ୟ ଅଟଇ ତହିଁର ପାରୁଷେ ।
ମାଗେ ଧନରେ ମୋହର ନ ଥାଏ ତୃପତି
ସଦା ଚୋର ଧର୍ମେ ମୋର ନାଶପୁଣ ଭକ୍ତି ।
ମାଗୋ ମାଗିବ ବର ମୁଁ ଆଗୋ ଦୟାମୟୀ
ତୋହର ପ୍ରସନ୍ନେ ନର ସର୍ବସିଦ୍ଧି ପାଇ ।
ମାଗେ ପ୍ରୟାଗ ତୀର୍ଥରୁ ମୋ ନଗର ଯାଏ
ଦେବଭାଳ ଗଭୀରରେ ହେବ ନଦୀଟିଏ ।
ଗଙ୍ଗା ବୋଇଲେକ ଭୂରେ କାଟିଯାଅ ରେଖା
ମୁହିଁ ତୋର ସଙ୍ଗେ ସଙ୍ଗେ ଯାଉଥିବ ଏକା ।
ତହୁଁ ରେଖା କାଟି କାଟି ଚଳେ ନୃପମଣି
ପଛେ ପଛେ ଗୋଡ଼ାଇଲେ ଦେବୀ ସୁରଧୁନୀ ।
ଦ୍ୱରପୁରରେ ରକ୍ଷିଲା ସେ ରାଜାର ଧର୍ମ
ସେ ନଦୀ କଣ୍ୱରେଖା ବୋଲି ହେଲା ନାମ ।
ସେହି ନଦୀର ଉତ୍ତର ଭାଗ ଦଗ ଗଲେ
ଅରବନ୍ଦ ନାମେ ଗିରି ସପ୍ତଶାଖା ଭଳେ ।
ମ୍ଲେଚ୍ଛନଗର ବୋଲିଣ ନଗରେକ ଅଛଇ
ତା ଆୟତନ ପଞ୍ଚାଶ ଯୋଜନ ଅଟଇ ।
ତିନିଶତ କ୍ରୋଶ ତହିଁ ତହିଁ ଅଟେ ଦିବ୍ୟ ସ୍ଥାନ
ସେ ସ୍ଥାନେ ବାସ କରନ୍ତି ସାଧୁ ଯେ ସୁଜନ ।
ଦ୍ୱିସହସ୍ର ମାତଙ୍ଗ ଥାଆନ୍ତି ତାହାର
ଅଶୀ ସହସ୍ର ରଥ ଅଠାଅଶୀ ସହସ୍ର ସାର ।
ପଞ୍ଚଷଠି ଅର୍ବୁଦ ଯେ ଭୁଜଙ୍ଗମ ଥାନ୍ତି ।
ନବଲକ୍ଷ ସୈନ୍ୟ କଣ୍ୱୁଙ୍କୁ ଖଟିଥାନ୍ତି ।
ମହାକୋଟୀଶ୍ୱର ସେହୁ କଣ୍ୱ ନୃପତି
ସୁବୁଦ୍ଧି ସାଧୁ ଉପାୟେ ଅଟେ ଚକ୍ରବର୍ତ୍ତୀ ।
କଣ୍ୱୁରୁ ବାହାରିଛି ସେ କଣ୍ୱ ନଦୀ
ତେଣୁ ଦେଶଲୋକ ଧନ ବଳରେ ପ୍ରସିଦ୍ଧି ।
ସେ ନଦୀତୀରରେ ଅଛୁ ଯେତେ ଯେତେ ଦେଶ
ସବୁଙ୍କର ରତ୍ନଅଛି ତହିଁ ରତ୍ନକୋଷ ।
କଣ୍ୱଚନ୍ଦ୍ର ନନ୍ଦନ ଭୂପାଳ ନୃପତି
ଭୂପାଳ ସୁତ ଅରୁଣ ରାଜା ଚକ୍ରବର୍ତ୍ତୀ ।

ଅରୁଣ ନନ୍ଦନ ନାମ ଅଟେ ବୈଲୋଚନ
ଚଣ୍ଡପାଳ ବୋଲି ଅଟେ ତାହାର ନନ୍ଦନ ।
ଚଣ୍ଡପାଳର ନନ୍ଦନ ଶାରପାଳ ନାମ
ଶାରପାଳର ନନ୍ଦନ ନଇର୍ତ୍ତ ସେନ ।
ଶରତଚନ୍ଦ୍ର ବୋଲି ତା ସୁତ ଚକ୍ରବର୍ତ୍ତୀ
ତାହାର ନନ୍ଦନ ନାମ ମଦନେଶ ଯତି ।
ତାହାର ନନ୍ଦନ ନାମ ନୈର୍ତ୍ତ ନୃପତି
ସପ୍ତର ନନ୍ଦମାନ ସେ ହେଲେ ଜନ୍ମ ରତି ।
ସପ୍ତ ନନ୍ଦନୀ ଭେଦଳା ଅଟେ ରୂପବତୀ
ତାଠାରୁ ହୋଇଲେ ପାଞ୍ଚପୁତ୍ର ଉତପତ୍ତି ।
ହୃତକେଶୀ ମଦନେଶ ନଗ୍ନକୂଳ ନାମ
ନଗ୍ନଲମ୍ବ ଭଇଞ୍ଜକ ହୋଇଲେ ଜନମ ।
ଯଦୁବଂଶେ ସେହିମାନେ ହୋଇଲେ ଖବାପୀ
ରାକ୍ଷସୀଠାରୁ ସେ ଜାତ ମହା ଅପରାଧୀ ।
ଏହାଙ୍କ ବଂଶରେ ଜନ୍ମି ମାୟାସୁର ବୀର
ସମସ୍ତ ଜିଣିଲା ହନ୍ତକାରୁ ସେ ଅସୁର ।
ମାୟାସୁର ସୁତ ମେରୁଶୃଙ୍ଗ ରାଜା ହେଲେ
ଯଦୁବଂଶ ନାଶେ ତାଙ୍କୁ ପାଣ୍ଡବେ ମାଇଲେ ।
ମେରୁଶୃଙ୍ଗ ସୁତ ଯେ କାର୍ତ୍ତିକେଶ୍ୱର ବୀର
ମେଦନୀ ସହି ନ ପାରେ ତାହାର ଯେ ଭର ।
ପାଣ୍ଡବେ ବନବାସକୁ ଗଲେ ଯେତେବେଳେ
ରହିଲେ ହିଡମ୍ବ ବନେ ବରୁବଣ୍ଟ ତଳେ ।
ସେହି ବନରେ ଦ୍ରୌପଦୀ ପାଦାସ୍ପର୍ଶ ହୁଏ
ଗୃପତେ ରହିଲେ ତହିଁ ସପ୍ତବନ ଯାଏ ।
ସପ୍ତବନେ ବାହାରିଲେ ଶୁଦ୍ଧସ୍ନାନ ପାଇଁ
ଗୃପତରେ ପ୍ରବେଶିଲେ ନଦୀଘାଟରେ ଯାଇ ।
ସ୍ନାନକରି ଦେବୀ ଫେରି ଆସିବାର ବାଟେ
କାର୍ତ୍ତିକେଶ୍ୱର ବଳତ ଧରିଲାକ ବନେ ।
ସେ ଦେବୀଙ୍କୁ ଟାଣି ଟାଣି ନେଉ ଯୋରବନ
ପାରିଧିକୁ ଯାଇଥିଲେ ଦେଖିଲେ ଅର୍ଜ୍ଜୁନ ।
ଦ୍ରୌପଦୀଙ୍କ ହସ୍ତ ଧରି ନେଉଛି ଅସୁର
ଦକ୍ଷିଣ ହସ୍ତରେ କର୍ତ୍ତ୍ରିକଣ୍ଟାର ତାହାର ।
ଉଚ୍ଚସ୍ୱରରେ ରୋଦନ କରଇ ପାଞ୍ଚାଳୀ
ଯାଆନ୍ତେ ଅର୍ଜ୍ଜୁନ ତାଙ୍କୁ ଧଇଲେ ଓଗାଳି ।
ଅସୁର ଭୁଜେ ଅନେକ ହୋଇଲା ସମର
ଅର୍ଜ୍ଜୁନ ତାହାକୁ ପ୍ରାଣେ ନବଲେ ସଂହାର ।

କାର୍ତ୍ତିକର ପୁତ୍ର ପୁଣି ସମସ୍ତେ ଅସୁର
ପଞ୍ଚବଟୀରେ ମାଇଲେ ତାଙ୍କୁ ବୃକୋଦର ।
ବଂଶର ନିଧନ ଯତ୍ନ ଦେଖିଲାକ ମଧ୍ୟେ
ତେଣୁ ପାଣ୍ଡବେ ନବାସ ସେହିବନୁ ହୁଏ ।
ବୋଇଲେ ପାଣ୍ଡବେ ମୋର ହରିଲେକ ଆଧି
ସେ ନିମନ୍ତେ ଜିଣିବାକୁ ପାଞ୍ଚିଲେ ଏ ବୁଦ୍ଧି ।
ତେଣୁ ଦୁର୍ଯ୍ୟୋଧନେ ସାହା ହୋଇ କଣାତରେ
ଜଳଧର ବ୍ୟୂହ କଲା ଗହନ ଆକାରେ ।
ପାଣ୍ଡବଙ୍କୁ ପୁରାଇଣ ପାଡ଼ିବ ନବାଠ
ଏମନ୍ତ ପାଞ୍ଚି ମନରେ କଲାକ ମୁରାଠ ।
ଅଗସ୍ତି ବୋଇଲେ ଏବେ ଶୁଣ ମହୀପାଳ
ସେ ମ୍ଳେଚ୍ଛରାଜାର ସୈନ୍ୟ ଅତ୍ୟନ୍ତ ପ୍ରବଳ ।
ତୁ ପୁଚ୍ଛିଲୁ ମ୍ଳେଚ୍ଛରାଜା ପାଣ୍ଡବେ ଅପ୍ରୀତି
ପୂର୍ବେ ତ ଉପର ବଂଶେ ଘଟିଛି ଏ ରୀତି ।
ଶୁଣି ସାନନ୍ଦ ହୋଇଲେ ବଳଙ୍କ ରାଜନ
ବୋଇଲେ ଫିଟିଲା ଥିଲା ଯେ ସନ୍ଦେହମାନ ।
ଜଳଧର ବ୍ୟୂହ ପୁଣି ଦୈତ୍ୟ କାମରୂପୀ
କ୍ଷଣକେ ଅଦୃଶ୍ୟ ହୋନ୍ତି କ୍ଷଣେ ଜଗବ୍ୟାପୀ ।
ମହେଶ୍ୱରଙ୍କ ବରରେ ସେମାନେ ଅମର
କୃଷ୍ଣ ଚକ୍ରକୁଟେ ସର୍ବେ ହୋଇଲେ ସଂହାର ।
ଏହିପରି ଅଟେ ଜଳଧର ବ୍ୟୂହ କଥା
ତା ନିସ୍ତାର କହିବାକୁ ମୁଁ କି ସାମରଥା ।
ବନ୍ଦଇ ତ୍ରିଶୂଳଧର ଦେବ ପଞ୍ଚମୁଖ
ଜଷ୍ଟିତ ଲୋକଙ୍କ ଯାର ନ ରହଇ ଦୁଃଖ ।
ମାତଙ୍ଗ ଚର୍ମ ବସନ ସଦାକାଳେ ତୋର
ପିନାକ ଧାରଣ କରିଥାଅ ନିରନ୍ତର ।
ଅପୂର୍ବ ସୁନ୍ଦର ଦିଶେ ଜଟାଜୁଟ ଭାର
ଶୂଳ ଶକତିରେ ଶୋଭା ପାଉଥାଏ କର ।
ପ୍ରେମେ ଗାଅ ଯେ ତାଣ୍ଡବ ନୃତ୍ୟ ରସକଳା
ମଧୁର ଧ୍ୱନିରେ ସଦା ହୋଇଥାଅ ଭୋଳା ।
ଗଳେ ହାଡ଼ମାଳ ତୋର ଲଲାଟରେ ଚତା
ଦୟାସାଗର ଅଭୟ ବରଦ ଯେ ଦାତା ।
ମହୀଧର ନାଗଗଣ ଗାୟତ୍ରୀ ବଜାବେ
ପୁଣ ସେହି ଅଙ୍ଗୁଳିନ ତୋର ପଦସାଦେ ।
ଆନନ୍ଦରେ ଯୋଗଲୟେ କରିଥାଅ ସଦା
କୁଶାଶନେ ଆସନ ତୋ ଚଉଷଠି ମୁଦ୍ରା ।

ଅକର୍ମ କର୍ମଦାୟକ ଅଟ ପଞ୍ଚମାଥ
ଭକତ ହୃଦରେ ସଦା ହୋଇଥାଅ ଭତ ।
ପରଂବ୍ରହ୍ମ ନାଥ ନିରାକାର ଯେ ନିର୍ମଳ
ଶରଣରକ୍ଷଣ ନାଥ ଅଭୟ ପଦର ।
ଧନପତି କୁବେର ଯେ ସଦା ଥାଏ ଖଟି
ଭବନକୁଁ ତରନ୍ତି ଯେ ଭଜ ତୋ ନାମଟି ।
କାର୍ତ୍ତିକ ବଡ଼ାବେ ତୋଳ ଧଇଲ ଯେ ମେରୁ
ହସ୍ତେ ଧଇଲ୍ ନୋହିଲ କଷ୍ଟ ସେହି ଗରୁ ।
ଉପୁଡ଼ି ଥିଲେ ସେ ହାଣ୍ଡା ରସାତଳ ମଧ୍ୟ
ଅଙ୍ଗୁଷ୍ଠିରେ ସପ୍ତଦ୍ୱୀପେ ଥିଲା ତୋର ଭଣ୍ଡ ।
ସ୍ୱାମୀ ପୂର୍ବକାଳେ ବୁନ୍ଧ ହୋଇ କୁତୂହଳ
ସପତ ସମୁଦ୍ର ରଖିଥିଲୁ କରତଳ ।
ମର୍ଦ୍ଦଳ କଂସାଳ ଆଦି ଯେତେ ମହାଶବ୍ଦ
ସମସ୍ତଙ୍କୁ କଲେ ତୋର ଡମ୍ବରୁର ନାଦ ।
ସେହି ବେଦ ଦେବ ପାଦପଦ୍ମେ ସଦା ସେବ
କହଇ ଶ୍ରୀ ଶୂଦ୍ରମୁନି ଶାରଳା ଯେ କବ ।
ବନ୍ଦଇ ଶ୍ରୀ ଗଣନାଥ ଗଜବର ମୁଖ
ବଟକ ନୟନୁ ତୋର ସୁଡ଼ଳ ସୁରେଖ ।
ଅଭୟ ଦେବ ସ୍ୱାମି ତୋ ତାଣ୍ଡବରେ ଲୀଳା
ଭାଳଲଗ୍ନ ଦଶାରଦ ଶିରେ ରଙ୍ଗମାଳା ।
ଗଜର ମସ୍ତକ ପ୍ରଭୁ ମନୁଷ୍ୟର କାୟେ
ମୁହିଁ ଅକାଥନ ବାରେ ହୋଇବା ସଦୟେ ।
ନିରାକାର ପୁରୁଷ ତୋ ମହିମା ଅପାର
କୋଟି ଭଣ୍ଡାରରେ ସୁଦ୍ଧା ଖଟଇ କୁବେର ।
ସବୁଅଛୁ ବକାରହି ତୋ ଚରଣ ଗୋଟି
ସଦୟ ହୁଅସି ନାଥ ନାହିଁ ମୋ ଆନଟି ।
କାର୍ତ୍ତିକ ବଡ଼ାବେ ବୁନ୍ଧ ତୋଳିଲୁ ଯେ ମେରୁ
ଥୋଇ ହସ୍ତରେ ଧଇଲୁ ନ ହୋଇଲା ଗରୁ ।
ଏକକାଳେ ରସାଗତ ହୋଇଲାକ ମଧ୍ୟ
କଣ୍ଠିତରେ ବାମକରେ ତୋଳିଦେଲେ ନେଇ
ଧାରଣ ପୁରୁଷ ବୁନ୍ଧ ମଧ୍ୟ କଲୁ ରକ୍ଷା
ଭକତବତ୍ସଳ ମୋର ପୁର ମନୋବାଞ୍ଛା ।
ସ୍ୱାମି କୁମାର ବୟସେ ଖେଳ କୁତୂହଳେ
ଥୋଇହସ୍ତେ ବାରିନିଧି ଶୋଷିଲୁ ବୁ ହେଳେ ।
କୁତୂହଳ ପୁରୁଷ ବୁ ସଦା ରଙ୍ଗେ ଖେଳା
ହରହର ପୁରୁଷ ପ୍ରଥମେ ଭାଳ ମେଳା ।

କ୍ଷଣକେ ମର୍ଦ୍ଦଳ କ୍ଷଣେ କଂସାଳ ଶବଦ
ଯଥାସ୍ଥଳେ ଜାଣୁ ସ୍ୱାମୀ ସବୁଙ୍କର ସ୍ୱାଦ ।
ସ୍ୱାମି ତୋର କଉତୁକ ଖେଳଘର ଦେଖି
ଆନନ୍ଦରେ ଶିବ ହେଲେ ପଞ୍ଚଦଶ ଆଖି ।
ଶିବଗଣ ନାୟକ ତୁ ଯମ ଦର୍ପଭଞ୍ଜା
ସର୍ବ ଦେବାଦେବୀ ଅଗ୍ରେ ହୁଏ ତୋର ପୂଜା ।
କାଶୀପୁରକୁ ଦହନ କଲୁ ବୃନ୍ଦ କୂଟେ
ମୁହିଁ ତୋତେ ଭେଟିଲଇଁ ମାଳ କଳ୍ପବଟେ ।
କଣ୍ଠିତ ପ୍ରସଙ୍ଗେ ମୁହିଁ ମାଗିଲଇଁ ଗତ
ଆଜ୍ଞା ପାଇଲି ପବନ ସିଦ୍ଧ ଏହୁ ପୋଥି ।
ବଦ୍ମରାଜାଙ୍କ ଚରଣେ ସେବା ନିରନ୍ତର
ଶୂଦ୍ରମୁନି ଶାରଳାକୁ କରିବ ଉଦ୍ଧାର ।
ଜୟ ଶାରଳା ଝଙ୍କଡ଼ପୁର ଗ୍ରାମବାସୀ
ଯାହାକୁ ପାଳିଲେ କୃପାଜଳ ମହାଋଷି ।
ସତ୍ୟ ତ୍ରେତୟା ଦ୍ୱାପର ଆବର ଯେ କଳି
ସ୍ୱରପୂତ ବହିଗଲା ବନ୍ୟାରୂପେ ଖେଳି ।
ବନେ ପଶୁଥିଲେ ତୋତେ କୃପାଜଳ ଋଷି
କହ କେତେକାଳେ ଥିବୁ ଏହି ଘଟେ ବସି ।
ସତ୍ୟ ଯେ ସତରଲକ୍ଷ ଅଠେଇଶ ସହସ୍ର
ତ୍ରେତାଯୁଗ ବାରଲକ୍ଷ ଛୟାଣୋଇ ବର୍ଷ ।
ଆଠଲକ୍ଷ ଚଉଷଠିସହସ୍ର ଯେ ଦ୍ୱାପର
କଳି ଚାରିଲକ୍ଷ ବଳି ଚଳିଲା ଏଥିର ।
ପ୍ରାଣତ୍ୟାଗ କଲେ ଜନ୍ତୁ କେତେ କେତେ ତପି
ବାଳକରୂପେ ରହିଲୁ ଏତେକାଳ ବ୍ୟାପି ।
ମୁଁ ବ୍ରହ୍ମସାଧକ ଯୋଗୀ ଚନ୍ଦ୍ରେ ପରମାତ୍ମା
ମୋତେ ଅଗୋଚର ହେଲା ତୋହର ମହିମା
ଆଠ ବରଷ ପ୍ରାୟକ ତୋହର ଶରୀର
ରଜଭେଦ ନାହିଁ କାହିଁ କରିବ ମୁଁ ବର ।
କେବଣ ମହାମ୍ନାଣୀ ଗୋ କହ କନା ମାୟେ
ଏହିରୂପେ ସେନଥିବୁ କେତେକାଳ ଯାଏ ।
ବୋଇଲେ କୁମାର ମୁହିଁ ଅନାଦି ଅପର୍ଣ୍ଣା
ପାଞ୍ଚଦଶ ବ୍ରହ୍ମା ଜାଣ ମୋର ଶିଷ୍ୟ ସିନା
ମୋର ଇଚ୍ଛା ହେଲେ ସିନା କରବ ମୁଁ ପତ
ଆବର ଅନେକ କାଳ ଥିବ ଏହିମତ ।
ଯାହାଙ୍କର ପରମାୟୁ ନ ଜାଣିଲେ ବ୍ରହ୍ମା
ମୁଁ କାହିଁ ବର୍ଣ୍ଣି ପାରିବ ତାଙ୍କ ଗୁଣସୀମା ।

ନର୍ମଦା ସରସ୍ୱତୀ ତୋ ପ୍ରଥମାବତାର
ଯହିଁ ଯୋଗୀମାନେ ସୁଖେ କରନ୍ତି ବିହାର ।
ଦ୍ୱିତୀୟ ଅବତାରରେ ଭୈରବୀ ମୂରତି
ତୃତୀୟରେ ଶୈଳରାଜା ଗୃହରେ ଉତ୍ପତ୍ତି ।
ଚତୁର୍ଥରେ ଦଶନ ତୋର ତ୍ରିପତି ନିମନ୍ତେ
କାଳହୀଣ୍ଡା କଲୁ ପର୍ଣ୍ଣ ରାମର ସହିତେ ।
ଦ୍ୱାପରରେ ଅବତାର ସ୍ୱୟଂ ବନମାଳୀ
ନନ୍ଦଘରେ ଜନମିଲୁ ହୋଇଣ ବିଜୁଳି ।
କଂସ କରୁଣ୍ଡନ୍ତେ ତୋତେ କଲୁ ଶୂନ୍ୟଗତ
କଳରେ ପାନେ ଜଗତ ନାମେ ଅଜପତି ।
ଅନେକ କାଳ ରହିଲୁ ପର୍ଣ୍ଣ ଗ୍ରାମ ଭୂଲେ
କେବଳ ତ୍ରିପତି ହେଉ ରୁଧିର ଦେଖିଲେ ।
ସର୍ବମଙ୍ଗଳା ଶାରଳା ଚଣ୍ଡୀଙ୍କର ନାମ
ଲୟ ଭକ୍ତଅନ୍ତୁ ମୂର୍ତ୍ତି ମନେ ଅନୁଗମ ।
ଯାହାର ଦର୍ଶନେ ଧର୍ମ ମୋକ୍ଷ କାମ ଅର୍ଥ
ସେ ପାଦେ ଶାରଳା ଦାସ କରେ ଦଣ୍ଡବତ ।
ଏହା ମୋତେ ଆଜ୍ଞାକର ଆଗୋ ଶାକମ୍ବରୀ
ଏକାଦଶ ଛନ୍ଦ ଯୁଦ୍ଧ ଲେଖିବି ସେପରି ।
ତୁହି ମହାମାୟୀ ମୋତେ ହୁଅସି ସଦୟ
ଜନ୍ମେ ଜନ୍ମେ ମିଳୁଥାଉ ତୋର ପଦାଶ୍ରୟ ।

---

## ଜଳଧର୍ ବ୍ୟୂହଭେଦ ନିମନ୍ତେ କୃଷ୍ଣ ଅର୍ଜ୍ଜୁନଙ୍କର ଗମନ ଓ ବ୍ୟୂହ ମଧ୍ୟରେ ବନ୍ଦୀ

ଅଗସ୍ତି ମୁନିଙ୍କୁ ମନୁ ରାଜା ପୁଚ୍ଛାକଲା
ଏଥୁଅନ୍ତେ ପୁଣି ତହିଁ କେଉଁ କଥା ହେଲା ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଦ୍ରୋଣପର୍ବ କଥା ଅଟେ ଅତ୍ୟନ୍ତ ଗହନ ।
ଦ୍ରୋଣ ସେନାପତି ହେଲେ ଯେ ପ୍ରଥମ ଯୁଦ୍ଧେ
ଚକ୍ରାକାରେ ବ୍ୟୂହଭିଆଇଲେ କ୍ଷଣମଧ୍ୟେ ।
ତହୁଁ ଚର ଜଣାଇଲା ପାଣ୍ଡବଙ୍କ କତ
ଚକ୍ରବ୍ୟୂହ କରି ଦ୍ରୋଣହେଲା ସେନାପତି ।
ଅତିରଥୀଙ୍କର ଅଟେ ଚକ୍ରବ୍ୟୂହ କଥା
ଦେବଦାନବ ଭେଦିବ ନାହିଁ ସାମରଥା ।
ଏହିପରି ଚକ୍ରବ୍ୟୂହ ରଚିତାକୁ ଶୁଣି
ସହଦେବଙ୍କୁ ଏକାନ୍ତେ ଘେନି ଚକ୍ରପାଣି ।
ବୋଇଲେ ହେ ସହଦେବ ନିଶିଅର୍ଦ୍ଧକାଳେ
ଦିବସନେ ସ୍ୱପନେକ ଦେଖିଲି ମୁଁ ଭୋଳେ ।
ଏକ ଅଙ୍କି ସ୍ୱରୂପର ରାଜବେଶ ହୋଇ
ବସ୍ତ୍ର ଚକ୍ରେ ମାରିବାକୁ ମୋତେ ଆକର୍ଷଇ ।
ଦେଖିଲି ସେ ବସ୍ତ୍ର ଚକ୍ର ଆସି ଅନ୍ତରୀକ୍ଷେ
ବାହୁମୂଳ ଭେଦ କରି ପଶିଲାକ ବକ୍ଷେ ।
ପୁଣି ତକ୍ଷଣେ ସେ ଚକ୍ର ମୋ ପାଶରୁ ଗଲା
ରାମଙ୍କର ହୃଦୟରେ ଯାଇ ଛିଡ଼ହେଲା ।
ଏହିବାକ୍ୟ ଶୁଣି କହେ ମନ୍ତ୍ରୀ ଚୂଡ଼ାମଣି
ଅଦ୍ଭୁତ ପ୍ରକାର ଏହା ଭବିଷ୍ୟତ ବାଣୀ ।
ଶୁଭ ହେଉ କି ଅଶୁଭ ହେଉ ଏହି କଥା
ଦିବସନ ହେଲୁ ଯେ ନ ଘଟିବ ସର୍ବଥା ।
ଯାହା ପଚାରିଲ ଆସ କହିବି ଗୋପନେ
ସେ ସକଳ ବିଷୟ ମୁଁ ଆଗରୁଟି ଜାଣେ ।
ଏସନକ ସ୍ୱପନ ଯେ ଦଇବ ନିର୍ମାଣ
ସେ ସକଳ କଥା ଏବେ ମନ ଦେଇ ଶୁଣ ।
ତୁ ଦେବ ଅଟୁ ସକଳ ଭୂତେ ଅଧିକାରୀ
କେଉଁ କଥା ତୋତେ ଅଗୋଚର ଅଧିକାରୀ ।
ସ୍ୱାମୀ ଅର୍ଜ୍ଜୁନ ରଥର ସାରଥି ନିମନ୍ତେ
ଆଦ୍ୟକ ଅଣାଇଲ ଯେ ସତ୍ୟ ରକ୍ଷାଅର୍ଥେ ।
ଆଦ୍ୟ ଆପଣ ଆଦର ଦ୍ରୌପଦୀ ବିଜୁଳି
ସ୍ୱଭହେଁ ଯେ ଉଶ୍ୱାସିଲେ ଘୋର ମହାପ୍ରଳ ।
ତୋ ଶଙ୍ଖ ଭଣ୍ଡି ବିଜୁଳି ସ୍ୱର୍ଗପୁରେ ଗଲା
କେଶିନୀ ଦ୍ରୌପଦୀ ହୋଇ ଏଠାରେ ରହିଲା ।
ସ୍ୱାମୀ ଆଣିଛୁ ଆଦ୍ୟକ ଚଉଦ ବର୍ଷକୁ
ତା ସଂକଳ୍ପ ପୂରିଲଣି ଯିବ ସେ ସ୍ୱର୍ଗକୁ ।
ଯାଦ ଅଭିମନ୍ୟୁ ଆମ୍ଭ ଘରେ ହେଲା ଜନ୍ମ
କାଲିକି ଚଉଦ ବର୍ଷ ହେବ ତାର ପୂର୍ତ୍ତି ।
କାଲି ସ୍ୱର୍ଗକୁ ଯଦ୍ୟପି ନ ଦେବୁ ଅଚ୍ୟୁତ
ହରି ଅର୍ଜ୍ଜୁନ କି ଆଉ ରହିବେ ଜୀବିତ ।
କୁମର ଦୁହିଙ୍କୁ ମାରିଣ ଯିବ ସେହୁ ସ୍ୱର୍ଗେ
ତାକୁ ରଖାଇବ ସ୍ୱାମୀ କେବଣ ସରଗେ ।
ଗୋବନ୍ଦ ବୋଇଲେ ପୁଣି ଅର୍ଜ୍ଜୁନ ଥାଆନ୍ତେ
ସେ କାହୁଁ ମରିବ ତାକୁ ମାରିବା କେମନ୍ତେ ।
ସହଦେବ ବୋଲେ ସ୍ୱାମୀ ଅଛଇ ଉପାୟେ
ଆଜ କୁମାରକୁ ଘେନି ଯିବ ଧନଞ୍ଜୟେ ।

ମ୍ଲେଚ୍ଛରାଜା ନିର୍ମାଣିଛି ଜଳଧର ବ୍ୟୂହ
ଶୁଣିଣ ଅର୍ଜୁନ ଚିତ୍ତ ଚଳଇ ନଷ୍ଟପ୍ରାୟ ।
ତୁ ହେବ ଯିବ ତହିଁକ ଅର୍ଜୁନକୁ ଘେନ
ଜଳଧର ବ୍ୟୂହରେ ଯେ ଥିବ ଫାଲଗୁନ ।
ଆମ୍ଭେମାନେ ଚଳିଯିବୁ ସେ ଚକ୍ରବ୍ୟୂହକୁ
ସମରେ ଆଗ କରିବୁ ମେଇ ବାଳକକୁ ।
ଆଜ ଦୁହଙ୍କୁ ଜଗିବ ଜୟଦ୍ରଥ ତହିଁ
ହରଙ୍କ ବର ପ୍ରସାଦେ ମାରିବାର ପାଇଁ ।
ଅଭିମନ୍ୟୁ ସଙ୍ଗତରେ ଗୋଳଯୁଦ୍ଧ କରି
ଅନ୍ୟାୟ ପୂର୍ବକ ତାକୁ ପକାଇବେ ମାରି ।
ସହଦେବର ମୁଖରୁ ଏହିବାକ୍ୟ ଶୁଣି
ଆନନ୍ଦରେ ମଧୁନ୍ତ୍ର କଲେ ଶଙ୍ଖଧ୍ୱନି ।
ଅଭିମନ୍ୟୁର ନିଧନେ ଦ୍ରୌପଦୀ ହିଂସାସେ
ପଡ଼ିବେ ନାଶଯିବେ ଏହି ବେନଦୋଷେ ।
ନିଃସନ୍ଦେହ ବାର୍ତ୍ତା ଯହୁଁ କହେ ସହଦେବ
ଶୁଣି ମନୁ ଭ୍ରାନ୍ତ ଚେତନ୍ୟାକଲେ ବାସୁଦେବ ।
ଏମନ୍ତ ବଚନର କନ୍ଥୁ ପାହିଲା ରଜନୀ
ରଣ ସାଜ ରଣ ସାଜ ଶୁଭଇକ ଧ୍ୱନି ।
କୃଷ୍ଣ ଅର୍ଜୁନ ଚଳିଲେ ଯୁଧିଷ୍ଠିରଙ୍କ କତି
ଚକ୍ରବ୍ୟୂହ କଲେ ଦେବ ଦ୍ରୋଣ ସେନାପତି ।
ପ୍ରଥମରେ ଦ୍ରୋଣ ଦ୍ୱିତୀୟରେ ଜୟଦ୍ରଥ
ତୃତୀୟେ କର୍ଣ୍ଣ ଚତୁର୍ଥେ ଶଲ୍ୟ ମହାରଥ ।
ପଞ୍ଚମରେ କୃପାଚାର୍ଯ୍ୟ ଷଷ୍ଠେ ଭୂରିଶ୍ରବା
ସପ୍ତମରେ ଅଶ୍ୱତ୍ଥାମା ଯେତେକ କୌରବା ।
ଏ ଚକ୍ରବ୍ୟୂହକୁ ଦେବ ଅର୍ଜୁନ ନ ଯିବ
କିଏ କେଉଁଦ୍ୱାରେ ଦେବ ସମର ଭଣିବ ।
ପ୍ରଥମରେ ଧୃଷ୍ଟଦ୍ୟୁମ୍ନ ବଚନ ବୋଇଲା
ଦ୍ରୋଣ ଯେଉଁଦ୍ୱାରେ ଅଛି ମୋହର ହୋଇଲା
ଦ୍ୱିତୀୟ ଦ୍ୱାରକୁ ଜଗିଅଛି ଜୟଦ୍ରଥ
ଶିଖଣ୍ଡୀ ବୋଲେ ମାରିବି ତା ସୈନ୍ୟ ସହିତ ।
ତୃତୀୟ ଦ୍ୱାରେ ଜଗିଛି ସୂର୍ଯ୍ୟଙ୍କର ସୂନୁ
ସେ ଦ୍ୱାରକୁ ଆବୋରିଲେ ବୀର ଅଭିମନ୍ୟୁ ।
ଚତୁର୍ଥଦ୍ୱାରେ ଅଛଇ ମହାରଥୀ ଶଲ୍ୟ
ଉତ୍ତର ବୋଲେ ମୋ ଭାଗେ ରହୁ ହେବ ଭଲ
ପଞ୍ଚମ ଦ୍ୱାରେ ରହିଛି କୃପାଚାର୍ଯ୍ୟ ଦ୍ୱିଜ
ତାଙ୍କୁ ଆବୋରି ପାଞ୍ଚାଳ ଦେଶ ମହାରାଜ ।

ଷଷ୍ଠଦ୍ୱାରକୁ ଜଗିଛି ବୀର ଭୂରିଶ୍ରବା
ସାତ୍ୟକି ବୋଲେ ସେ ଦ୍ୱାର ମୋତେ ସମର୍ପିବା ।
ଏହିରୂପେ ଆବୋରିଲେ ଯେ ଯାହାର ଦ୍ୱାର
ବ୍ୟୂହ ଭେଦିବେ ଅର୍ଜୁନ ଯାଇଣ ଉତର ।
ଅନ୍ୟପାଣ୍ଡବେ ରହିବେ ତାଙ୍କ ସମକକ୍ଷେ
ଆଜ ସମରେ କୌରବମାନଙ୍କୁ କେ ରକ୍ଷେ ।
ସାଜିଲେକ ସୈନ୍ୟ ରଥ ମତ୍ତନ୍ତ ଯେ ହସ୍ତୀ
ଉଡ଼େ ଚଗଳ ପତାକା ହୋଇ ପନ୍ତ ପନ୍ତ ।
ହାହାର ହେଲେ ପାଣ୍ଡବେ କରି ଶଙ୍ଖଧ୍ୱନି
ଭେରେକାର ଶବଦରେ କମ୍ପଇ ମେଦିନୀ ।
ବାହୁଣାବନ୍ତ ପୂର୍ବରେ ବଶିଲାକ ଥାଟ
ଦେଖାଇବ ଜଣାଇଲା ଆସିଣ ନିକଟ ।
ଯୁଧିଷ୍ଠିରଙ୍କ ପାଦପଦ୍ମେ ସହସ୍ରପ୍ରଣମି
ବୋଇଲା ହେ ଶୁଣିବାକୁ ଆଜ୍ଞାକର ସ୍ୱାମୀ ।
ମାଗ୍ଧ ଅଧିର ବୋଲଣ ମ୍ଲେଚ୍ଛଦେଶ ରାଜା
ମାନଗୋବିନ୍ଦ ନୃପତି ତାକୁ କଲ ପୂଜା ।
ସହସ୍ର ଷାଠିଏ ଜଳଧର ବ୍ୟୂହ ରଚି
ସପ୍ତସାଗର ଯୋଦ୍ଧାଙ୍କୁ ଘେନ ରହିଅଛି ।
ଯେବେ ଯିବ ଚକ୍ରବ୍ୟୂହ ସମର ଆଡ଼କୁ
ତେବେ ସେ ମ୍ଲେଚ୍ଛ ବାହିବ ଜୟନ୍ତା ଗଡ଼କୁ ।
ଭାଙ୍ଗି ଦେବେ ଗ୍ରାମଦେଶ ନେବେ ପରବଧୂ
କଟକ ଧ୍ୱଂସିବେ ଦେବ ଆପଣ ଅସାଧୁ ।
ଏମନ୍ତ ବାରତା ଯହୁଁ ଗୁରୁ ଦେଲା ଯାଇଁ
ହସିଲେ ବ୍ୟୂହ ଭେଦ ନ ଜାଣନ୍ତି କେହି ।
ଶ୍ରୀକୃଷ୍ଣ ଚରଣତଳେ ପଡ଼ି ଫାଲଗୁନ
ବୋଲେ ଜଳଧରବ୍ୟୂହ ଯିବି ମୋତେ ଘେନ
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ଧର୍ମରାଜେ
କପଟ ଯୁଦ୍ଧ ବୋଲଣ ପାଇଲ ବାର୍ତ୍ତା ଏ ।
ଅର୍ଜୁନଙ୍କୁ ସଙ୍ଗେ ଘେନ ଯିବ ଜଳଧରେ
ମ୍ଲେଚ୍ଛ ରାଜାକୁ ମାରିବୁ ଯୁଝି ତା ସଙ୍ଗରେ ।
ମୁହିଁ ଯୁଦ୍ଧ କରିବ ସେ ଅସୁର ସଙ୍ଗର
ଜଳଧର ବ୍ୟୂହର ଯେ ଯୁଦ୍ଧ ଅଗୋଚର ।
ସ୍ୱାମୀ ଆଜ ଦିବା ଦଶଦଣ୍ଡକର ମଧ୍ୟେ
ସେ ନିଶାଚର ବଳଙ୍କୁ ବିନାଶିବୁ ଯୁଦ୍ଧେ ।
ଚକ୍ରବ୍ୟୂହ ଦ୍ୱାରେ ସର୍ବେ ଜଗିଥିବ ରହି
ତୁମ୍ଭ ମଧ୍ୟେ ବ୍ୟୂହ ଭେଦ ନ ଜାଣନ୍ତି କେହି ।

ଆମ୍ଭେ ମ୍ଳେଚ୍ଛବ୍ୟୂହ ଛେଦି ଆସିଲେ ଲେଉଟି
ଅର୍ଜୁନ ଭେଦିବେ ପୁଣି ଚକ୍ରବ୍ୟୂହ ଗୋଟି
ଯଦି ବା ବିଳମ୍ବ ହେବ ଆମ୍ଭ ଫେଣ୍ଟିବାରେ
ତଥାପି ଚକ୍ରବ୍ୟୂହକୁ ଭେଦିବା ଘାତରେ ।
ସହଦେବ ବୋଲେ ସ୍ୱାମୀ ସବୁ ତୁମ୍ଭ ଜାଣୁ
ପାଣ୍ଡବମାନଙ୍କ ଆଶ୍ରା ନାହିଁ ତୋର ବିନୁ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ମୋହର ବଚନ
ଯୁଦ୍ଧ କରୁଥିବ ସର୍ବେ ହୋଇ ସାବଧାନ ।
ଛିଦ୍ର ଟାକି ରହିଥିବ ନ ଭେଦିବ ବ୍ୟୂହ
ଆମ୍ଭର ଆସିବା ଯାଏ ବାହାରରେ ଥାଅ ।
ଶ୍ରୀମ ଦ୍ରୁପଦ ବିରାଟ ସବୁନ୍ତ ତିଆରି
ଜଳଧର ବ୍ୟୂହେ ଗଲେ ଅର୍ଜୁନକୁ ଧରି ।
ସରସ୍ୱତୀ ନଦୀ ପର୍ବ ଉତ୍ତରବାହିନୀ
ବାରୁଣୀ କୂଳେ ତ ଭେଟିଲେ କୃଷ୍ଣ ଫାଲଗୁନ ।
ଦେଖିଲେ ସେ ବ୍ୟୂହ ଅଟେ ବିଷମ ପ୍ରମାଦ
ଅସଂଖ୍ୟ ମହିମା ତାର ନ ମିଳଇ ଭେଦ ।
ବ୍ୟୂହ ବିସ୍ତାର ଛଅଶତ ଯୋଜନ ପର୍ଯ୍ୟନ୍ତେ
ଭେଟିବାକୁ ନାହିଁ ବାଟ ନେତ୍ରରେ ଦେଖନ୍ତେ
କରାଳବଦନ ଯାରେ ଖପଟେ ଖେପନ୍ତି
ତର୍ଜନ୍ତି ଗର୍ଜନ୍ତି ଆନ ଆନ ଯେ ମୂରତି ।
ବଡ଼ଆଖି ଉଡ଼ଦେହ ଯେସନେ ମନ୍ଦର
କେ ଗଣି ପାରିବ ସୈନ୍ୟ ସଂଖ୍ୟା କରି ତାର ।
କୁଠାର ଖଡ଼ଗ କୁନ୍ତ ଅସିଉଦ୍ଧ କାତି
କୋଦାଳ ମୂଷଳ ପର୍ଶୁ ବାହାର ଶକତି ।
କେତେ ଧନୁଶର ଧରି ରହିଛି ଆଡ଼ିଣ
କୁନ୍ତ ଲଙ୍କିଆ ବା କରେ ବାର ବଜ୍ରବାଣ ।
ଦେଖିକରି ମହାଭୟ ଦାନବ ସଇନ
କୃଷ୍ଣ ବୋଇଲେ କେମନ୍ତେ ଦେଖୁ ଫାଲଗୁନ
ଅର୍ଜୁନ ବୋଇଲେ ଏହା ଜଣିବ କଷ୍ଟତେ
ହୁଦେ ବସ୍ତ୍ରରେ ନର୍ଦ୍ଦୋଷୀ ମାରିବ କେମନ୍ତେ ।
ନୁହନ୍ତି ବଇରୀ ଜବା ନ ଲାଗନ୍ତି କେହି
ଅଦୋଷୀ ପ୍ରାଣୀ ମାଇଲେ ହତ୍ୟାଦୋଷ ପାଇ
ବାହା ସ୍ୱାମୀ ତୁରଙ୍ଗମ ବ୍ୟୂହର ଦୁଆର
ଦେଖିବା ଅଟଇ ତାହା କେବଣ ଆକାର ।
ଶ୍ରବଣରେ ଶୁଣିନାହିଁ ଦେଖିନାହିଁ ନେତ୍ର
ଗୁପ୍ତ କହିନାହିଁ ପୁଣି ଭେଦିବାର ପଥ ।

ଶ୍ରୀ ଇନ୍ଦ୍ର ନନ୍ଦଘୋଷ ବାହା ଆହେ ଦେବ ହରି
ଅସ୍ତ୍ର ପ୍ରହାର କରି ମୁଁ ଯାଉଥିବି ମାରି ।
ଗୋବିନ୍ଦ ବୋଇଲେ ଏହି ବ୍ୟୂହ ଅଟେ ପାର୍ଥ
ସର୍ବେ ଅଶ୍ୱଙ୍କୁ ଘେନି ବାହୁଛି ମୁଁ ରଥ
ଏତେ କହି କୃଷ୍ଣ ନନ୍ଦଘୋଷ ରଥ ନେଇ
ଜଳଧର ବ୍ୟୂହଦ୍ୱାରେ ଦେଲେକ ଲଗାଇ ।
ବୀରବର ବୋଇଲଣ ଯେ ଦୈତ୍ୟ ସେନାପତି
ତିନିଅର୍ବୁଦ ସେନାଙ୍କ ଆଗରେ ରହିଛି ।
ଅସି ଖଡ଼ଗ କୁଠାର କୋଦାଳ ଆୟୁଧ
ଘେନି ରହିଛନ୍ତି ଯୋଦ୍ଧା କରି ହାକଯୁଦ୍ଧ ।
ସୂତମୁନି ଜଳବାକୁ ତହିଁ ନାହିଁ ବାଟ
ସାତର ସମ ଦିଶନ୍ତି ମ୍ଳେଚ୍ଛରାଜା ଥାଟ ।
ସମୁଦ୍ର ପ୍ରାୟ ଦିଶଇ ଅସୁରଙ୍କ ଥାଟ
ସିନ୍ଧୁ ଗର୍ଜନ ଅଧିକ ଶୁଭଇ ମୁଗଟ ।
ବାହିନେଲେ ତୁରଙ୍ଗମ ଦେବ ଜଗନ୍ନାଥ
ପ୍ରଥମ ଦ୍ୱାରରେ ଯାଇଁ ପ୍ରବେଶିଲା ରଥ ।
ଦେଖି ମହାକୋପକରି ସେ କୌଣପ ବଳ
ଏକମୁଖ ହୋଇ ଅସ୍ତ୍ର ବନ୍ଧିଲେ ସକଳ ।
ଦଶସହସ୍ର ଅଧିକ ଦୈତ୍ୟ ହୋଇମେଳ
ନନ୍ଦଘୋଷେ ପ୍ରହାରିଲେ ମୁଷଳକୁ ତୋଳି ।
ତାହା ଦେଖି ଅରଜୁନ ହୋଇ କୋପଭର
ସୁତୀକ୍ଷ୍ଣ ନାରାଚ ସବୁ କରିଲେ ପ୍ରହାର ।
ପ୍ରତିଜ୍ଞା ଯେ କରୁଥିଲେ ଦୈତ୍ୟ ଅପ୍ରତ୍ୟକ୍ଷେ
ଅସ୍ତ୍ର ବାଜନ୍ତେ ରହିଲେ ଯାଇଁ ଅନ୍ତରୀକ୍ଷେ ।
ମାୟାସମର ଦେଖିଣ ବୀର ଅରଜୁନ
ଶରଘାତରେ ଅର୍ଜୁନ ହେଲେ ଅନ୍ତର୍ଦ୍ଧାନ ।
ଜ୍ୱାଳାବଳି ଅସ୍ତ୍ରଘାତେ ନ ଭେଦିଲା ସେହ୍ଲା
ତାହା ଦେଖି ଧନଞ୍ଜୟ କରଇ ସ୍ତବନା ।
ନାରାଚ ଗୁଣେ ବସାଇ ପୁଣି ପଞ୍ଚଷଠି
ଆକର୍ଷି ବିନ୍ଧନ୍ତେ ଶର ଭେଦିଲା କସଟି ।
ଆହୋ ଚଇତନ ଶୁଣ ଯାହା ଶରଘାତେ
ଶିର କମ୍ପମାନ ହୋଇ ପଡ଼େ ଭୂମିଗତେ ।
ସେ ପୁଣି ନିର୍ଘାତଶବ୍ଦେ କଲା ଶରବୃଷ୍ଟି
ପଞ୍ଚଷଠି ଦୈତ୍ୟ ମାଡ଼ି ମଲେ ମସ୍ତିକୋଟି ।
ପଡ଼ନ୍ତେ ଅସୁରବଳ ଭଣୁ ଗଲେ ଭାଜି
ପୁଣିହି ଆସିଲେ ଯୋଦ୍ଧା ହୋଇ ଗଳଗାଜି ।

ତ୍ରୈଲୋକ୍ୟବିଜୟୀ ବୋଲି ଅଟେ ଯାର ନାମ
ବିନ୍ଧୁଛନ୍ତି ସେହି ପାର୍ଥ ହୋଇ ଅବଗମ ।
ଯୋଦ୍ଧାମାନେ ଅସି କୁନ୍ତ ବୁଲାଇଣ ଯାଠି
ଭେରେକାର କଣ୍ଠ ସର୍ବେ ସମରରେ ଉଠି ।
ବାସବ ନନ୍ଦନ ଅଟେ ରଣେ ଜଗଜ୍ଜିତା
ସପ୍ତଦ୍ୱୀପ ଭେଦିବାକୁ ଯେତୁ ସାମରଥା ।
ତ୍ର୍ୟମ୍ବକର ପ୍ରସାଦେ ଅତ୍ୟନ୍ତ ସମର୍ଥ
ବୈଶ୍ୱାନର ପ୍ରାୟେ ତେଜ ଜଗତେ ବିଖ୍ୟାତ
ଖଣ୍ଡଳ ସମର ତହୁଁ ଦେଖେ ଧନଞ୍ଜୟ
ଗଗନେ ଗର୍ଜ୍ଜନ କରେ କାଳସର୍ପ ପ୍ରାୟ ।
ସୈନ୍ୟବଳ ଦେଖି ସେନାପତି ବୀରବର
ହସ୍ତୀ ଆରୋହି ଆସିଲା ସମ୍ମୁଖ ତାଙ୍କର ।
ତିନି ଅରବୁଦ ସୈନ୍ୟ ଦକ୍ଷିଣ ବାମରେ
ରଖି କୋଟି କୋଟି ଶର ପ୍ରହାର ସେ କରେ
ଚତୁର୍ଦ୍ଦିଗରେ ବେଢ଼ିଣ ବିନ୍ଧିଲେ ସେ ଶର
ନନ୍ଦିଘୋଷ କାହିଁ ଅଛି ନୋହିଲା ଗୋଚର ।
ତାହା ଦେଖି ହନୁମାନ ବିସ୍ତାରିଲା ଲୁଣ୍ଡ
ସବୁ ଅସ୍ତ୍ର ପଡ଼େ ଯାଇ ତାର ଗଭ ଖଣ୍ଡ ।
ବଜ୍ରେ କର୍ଣ୍ଣ କଠାରିକ ଯମ ଦେଇଥିଲା
ବୀରବର ସେନାପତି କୃଷ୍ଣଙ୍କୁ ମାଇଲା ।
ଯେଉଁପରି ଆକାଶରୁ ପଡ଼ିଲେ ନିର୍ଘାତ
ସେ ଅସ୍ତ୍ର ଆସନ୍ତେ ଶୁଭେ ଶବ୍ଦ ତଡ଼ବଡ଼ ।
କୃଷ୍ଣଙ୍କ ବିରୋଧି ଶର ଦେଖି ସବ୍ୟସାଚୀ
ତୂଣୀର ମଧ୍ୟୁଁ କାଢ଼ିଲା ଏକ ଶର ବାଛି ।
ଏକଘ୍ନୀ ବୋଲିଣ ଅଟେ ତାର ନାମ ଗୋଟି
କୁମ୍ଭକକୁ ମାରିଥିଲେ ସେ ଅସ୍ତ୍ରେ ଧୂର୍ଜ୍ଜଟୀ ।
ସେହି ଅସ୍ତ୍ର ଗୋଟାକୁ ଯେ ଧରିଣ ଅର୍ଜ୍ଜୁନ
ବ୍ୟୂହର ପ୍ରଥମ ଦ୍ୱାର କଲା ଛିନ୍ନ ଭିନ୍ନ ।
ଦୈତ୍ୟ ଶର ନିବାରି ସେ ସତ୍ୱରେ ଗମିଲା
ବୀରସେନ ସେନାପତି ହୃଦରେ ପଡ଼ିଲା ।
ଉଶନଶାସ୍ତ୍ରୀ ହୋଇଣ ପଢ଼ି ମନ୍ତ୍ର ବୀର
ପୃଥ୍ୱୀ କମ୍ପମାନ ହେଲା ଆଘାତେ ତାହାର ।
ଦୁରନ୍ତକ ଦୈତ୍ୟ ପଡ଼ିଲାକ ଅଷ୍ଟାଙ୍ଗତେ
ଦେଖିଣ ମହାବୀରସ ରହିଥିଲେ ଯେତେ ।
ଅର୍ଜ୍ଜୁନ ନାରାଚମାନ ବର୍ଷେ ଗଳଗାଜ
କେତେ ସୈନ୍ୟ ମଲେ କେତେ ଛିଣ୍ଡିଗଲେ ଭଜ

ପ୍ରଥମ ଦ୍ୱାରେ ପଡ଼ିଲେ ତିନିକୋଟି ସେନା
ପଦାତି ସୈନ୍ୟର ଅବା କେ କରେ ଗଣନା ।
ରଣ ଆନ୍ଦୋଳନ ଲଗାଇ ବୀର ଧନଞ୍ଜୟ
ପ୍ରଥମ ଦ୍ୱାରେ ଦୈତ୍ୟଙ୍କୁ ମାରି କଲେ ଜୟ ।
କେହି ନ ଥିବାର ଦେଖି ପାର୍ଥ ଜଗନ୍ନାଥ
ବ୍ୟୂହ ଭେଦିଣ ଉତ୍ତରେ ଘେନ ଗଲେ ରଥ ।
ଦ୍ୱିତୀୟ ଦ୍ୱାରେ ପ୍ରବେଶ ବାସବ ସନ୍ତତି
ଅଛଇ ମରୁତ ନାମେ ତହିଁ ସେନାପତି ।
ମୟୂରକଣ୍ଠ ପକ୍ଷପ୍ରାୟେ ତାର କଣ୍ଠଦେଶ
ଯମ ଦେବତା ତାହାକୁ କରୁଥାଏ ତ୍ରାସ ।
ଦ୍ୱିବଦନ ଷଡ଼ବାହୁ ସବୁଙ୍କର କାୟ
ରଣରଙ୍ଗୀ ସେ ଦାନବେ ତେଜ ବହ୍ନି ପ୍ରାୟ ।
ବିଶେଷେ ଅସୁରବଳ ଅତ୍ୟନ୍ତ ବିକଟ
ଲମ୍ବ ଲମ୍ବ ଓଷ୍ଠ ପୁଣି ଡଙ୍ଗା ପ୍ରାୟ ପେଟ ।
ଲମ୍ବ ଲମ୍ବ ପାଦ ପୁଣି ବିସ୍ତାରିତ ପାଟି
କୁଣ୍ଡ ବିସ୍ତାରନ୍ତେ ଦିଶେ ମଧ୍ୟ ଭୁବନଟି ।
ମହା ମହା ଭୟଙ୍କର ଦୈତ୍ୟବଳ ଦେଖି
ଭୟେ ଦେବତା ଚଳିଲେ ଗଗନ ଉପେକ୍ଷି ।
ଗୋବିନ୍ଦ ବୋଇଲେ ତୁମ୍ଭ ଶୁଣ ଧନଞ୍ଜୟ
ଏ ବ୍ୟୂହକୁ ଦେଖି ମୋତେ ମାଡ଼ୁଅଛି ଭୟ ।
ପାର୍ଥ ବୋଲେ ଭେଦିବାକୁ ନ ମିଳଇ ବାଟ
ଗୋଚର ନୁହଇ ଦେବ ଅକଳନା ଥାଟ ।
ଏ ବ୍ୟୂହକୁ ଭେଦିବାର ନ ଜାଣଇ ମୁହିଁ
ତୁମ୍ଭେ ଯେବେ ଜାଣ ମୋତେ କହ ଯଦୁଗୋସାଇଁ ।
ଗୋବିନ୍ଦ ବୋଇଲେ ଶୂନ୍ୟ କାହିଁ ଯିବ ରଥ
ଉପରେ ରହି ବାଣ ବିନ୍ଧୁଥାଅ ପାର୍ଥ ।
ଅଧର୍ମ ଯୁଦ୍ଧକୁ ଆଜ ଆଚରିବା ଜାଣି
ମେଘମାନେ ପଶି ତୁମ୍ଭ ବାଣ ବନ୍ଧ ଟାଣି ।
ଅତି ଦୁର୍ଦ୍ଦାନ୍ତ ଅଟନ୍ତି ଏ ଅସୁରବଳ
ଏମାନେ ନ ମଲେ ସ୍ଥିର ନୁହେଁ ଭୂମଣ୍ଡଳ ।
ତୁମ୍ଭଙ୍କୁ ମାରିବା ପାଇଁ କରୁଛନ୍ତି ବୁଦ୍ଧି
କୂଟ କପଟେ ହରିବେ ତୁମ୍ଭର ସମୃଦ୍ଧି ।
ଅନେକ ପ୍ରକାରେ ଦୋଷୀ ଅଟଇ ଯେ ଜନ
ତାକୁ ଧର୍ମ ଆଚରିବା ନୁହେ ପ୍ରୟୋଜନ ।
ଏତେ କହି କୃଷ୍ଣ ବ୍ୟୂହ ପାଶେ ରଖି ରଥ
ବୋଇଲେ ଶର ବର୍ଷିଣ ସର୍ବ କର ହତ ।

ଯେଉଁ ମାୟାଧରଙ୍କର ଚନ୍ଦ୍ରକୂଟ ବୁଦ୍ଧି
କଥାକଥାକେ ଅର୍ଜୁନ ଦେଲେ ସେ ପ୍ରବୋଧି ।
ବାସୁଦେବଙ୍କ ବଚନେ ଶର କର ବୃଷ୍ଟି
ଶୁଣିଣ ସମସ୍ୟା ଆଉ ନ ଦେଲା କିରୀଟୀ
ଧାଡକାରେ ମଧୁରିପୁ ବାହୁ ଅଶ୍ୱବର
ରଥ ଚଳାଇଲେ ଶୂନ୍ୟଭୁବନ ଉପର ।
ଗଗନରେ ଥାଇ ଦେବ ତହିଁ କଲେ ବୃଷ୍ଟି
ଜଳଧର ବ୍ୟୂହ ଭେଦ କରିଲା କିରୀଟୀ ।
ପୃଥିବୀ ଦିଶାଇ ବାର ଅର୍ଜୁନ ଦେଖିଲା
ଜ୍ୱାଳାବଳ ଶର ନେଇ ବେଗେ ପ୍ରହାରିଲା ।
ଆକାଶ ଯେ କମ୍ପି ଗଲା ନାରାଚ ରଡରେ
ଆସି ପଡ଼ିଲା ଅସୁର ମାନଙ୍କର ଶିରେ ।
ମସ୍ତକରେ ପଡ଼ି ଶର ଯାଏ ପାଦେ ଗଳି
ଅସାଷ୍ଟମ ହୋଇ ଦୈତ୍ୟ ପଡ଼ିଲେକ ତଳି ।
କେହି ପ୍ରାଣେ ହତ କେହି ହେଲା ମୋହଗତ
ଲୋମ ଲୋମକେ ନାରାଚ ବୃଷ୍ଟି କଲେ ପାର୍ଥ
ଶରବୃଷ୍ଟି ଦେଖି ଦୈତ୍ୟ ଊର୍ଦ୍ଧ୍ୱେ ଦେଲେ ଦୃଷ୍ଟି
ଆଖିରେ ପଡ଼ିଣ ଶର ତାହା ଯାଏ ଫୁଟି ।
କେବଣ ନାରାଚ ପଡ଼ି କାଟି କଣ୍ଠସ୍ଥଳ
ଭୂମିରେ ପଡ଼ଇ ଯାଇ ତା ଶିରକମଳ ।
ରକତେ କର୍ଦ୍ଦମ ହେଲା ସେହି ରଣସ୍ଥଳ
କବନ୍ଧ ନୃତ୍ୟ କରନ୍ତି ହୋଇ ମେଳ ମେଳ ।
କେଉଁ ଦୁର୍ଦ୍ଦାନ୍ତ ଅସୁର ଧାଏଁ କ୍ରୋଧ ହୋଇ
କେଉଁ ଅସୁର ନାରାଚ ଆକାଶେ କ୍ଷେପଇ ।
ଗଦା ମୁଦ୍ଗର ଶେଲ ପୁଣି ତହିଁ ଜାତ
କେ ଅସୁର ଧରି ବୃଷ୍ଟି ଦେଇ ଶୂନ୍ୟ ପ୍ରତ ।
ଅସୁରମାନଙ୍କ ପ୍ରତ ହୋଇ କୋପାନଳ
ଆକାଶୁ ମାରଇ ଶର ଆଖଣ୍ଡଳବାଳ ।
ଗଗନର ଯୁଦ୍ଧ ଦେଖି ବୀର ଛତ୍ରମୁଖ
ଶତ୍ରୁକୁ ନ ଦେଖି ରଣେ ହୁଅଇ ବିମୁଖ ।
ବୃତ୍ତାନ୍ତକ ମନ୍ତ୍ରୀ ପୁଣି ବଚନ ପ୍ରକାଶି
ପାଣ୍ଡବ ସମର କରେ ମେଘମାନେ ପଶି ।
ମୁଖା ଦୁର୍ମୁଖା ନାମକ ଦୁଇଟା ଅସୁର
କ୍ରୋଧଭରେ ଆକାଶରୁ ପ୍ରହାରିଲେ ଶର ।
ଦୈତ୍ୟ ଶର ଆସିବାର ଦେଖିଣ କିରୀଟୀ
ଅଦ୍ଭୁତ ପ୍ରକାରେ ପକାଇଲେ ତାହା କାଟି ।

ଅର୍ଜୁନର ଶର ବାଜି ଦୈତ୍ୟଙ୍କର ଅଙ୍ଗେ
ମନ ଚଞ୍ଚଳ ହୋଇ ନାଚନ୍ତି ସେ ରଙ୍ଗେ ।
କଣ୍ଡା ଢକଶୋଷ ବାଇ ଘୁମୁରା ଦାଉଣ୍ଡି
ମଦକ୍ଷେପେ ନାଚନ୍ତି ଖେମଟା ନାଚଖଣ୍ଡି ।
ବହୁତ ନାରାଚ ଯନ୍ତ୍ରେ ବନ୍ଦେ ଫାଲଗୁନ
ଦ୍ୱିଗୁଣ ମନ୍ତ୍ରୁଅନରେ ହୁଏ ମୁଖଧ୍ୱନ ।
ଗୋବିନ୍ଦ ବୋଇଲେ ଶୁଣ ବୀର ଧନଞ୍ଜୟ
ତୋର ଶରକୁ ଅସୁରେ ନ କରନ୍ତି ଭୟ ।
ଏହିପରି ବଚନକୁ ଶୁଣି ଫାଲଗୁନ
ତୂଣୀରୁ କାଢ଼ିଲା କାଳ ନାରାଚ ବହନ ।
ଯେସନ୍ତେ ସେ ଶରକୋଟି ଗର୍ଜନ ନାଦରେ
ଅନଳ ବୃଷ୍ଟି କରିଲା ଦୈତ୍ୟଙ୍କ ଉପରେ ।
ବହୁତ ସୈନ୍ୟ ପୋଡ଼ିଣ ହୋଇଗଲେ ହତ
ଭୟ ପାଇ କେତେ ସୈନ୍ୟ ହେଲେ ଛନ୍ନଛତ୍ର
ଅର୍ଜୁନ ବୋଇଲେ ବାହ୍ୟ ବାହା ମୋର ରଥ
ଶତ୍ରୁ ମୁଖ ନ ଦେଖିଲେ ସମର ବ୍ୟର୍ଥ ।
ଶତ୍ରୁ ଆଗମେ ଯଦ୍ୟପି ହେବ ଅଧୋମୁଖ
ରଣ କରିବାରେ କେବେ ଅଛି ତୋର ସୁଖ ।
ସମର ସମ୍ବନ୍ଧେ ମୁହିଁ ନୁହଇ ନିରତ
କାତର ଯୋଦ୍ଧାଙ୍କୁ ଶର ନ କରେ ଆଘାତ ।
ଊର୍ଦ୍ଧ୍ୱେ ଥାଇ ଶର ମୁହିଁ କରୁଛି କ୍ଷେପଣ
ତେଣୁ ଶତ୍ରୁମାନେ ମୋର ଲଭନ୍ତି କଷଣ ।
ଅର୍ଜୁନ ବଚନ ଶୁଣି ଯାଦବ ଈଶ୍ୱର
ରଥ ଉଭା କଲେ ନେଇ ସେ ବ୍ୟୂହର ଦ୍ୱାର ।
ଅସୁର ସଇନ ଛନ୍ତି ଶଂଖପୂର୍ଣ୍ଣ କୋଟି
ଧାତକାରେ ନନ୍ଦଘୋଷେ ପଶିଲା କିରୀଟୀ ।
ଅଦ୍ଭୁତ ରଥ ଦେଖି ଅସୁର ସୁବାହୁ
ନନ୍ଦଘୋଷକୁ ବେଢ଼ିଲା ଯେସନେକ ରାହୁ ।
ପୂରଇ ସେ ବଜ୍ରାବଳୀ ବାଣ ପାପ ଦୈତ୍ୟ
ଅର୍ଜୁନକୁ ବୋଲନ୍ତି ସେ ହୋଇ କୋପାନ୍ୱିତ
ଆଜ ତୋର ପ୍ରାଣ ନାଶ କରିବୁ କିରୀଟୀ
ରଣରଙ୍ଗେ ଆମ୍ଭ ଆଗେ ଅଛୁ ଆଜ ଭେଟି ।
ମେଘମାନେ ପଶି ଯୁଦ୍ଧ ଥିଲୁ ଅର୍ଜୁନ
ଶିର କାଟାଇଣ ଆଜ ନେବୁ ତୋ ପ୍ରାଣ ।
କେବଳ ପଡ଼ଇ ଜଣା କ୍ଷତ୍ରୀ ସାଧୁପଣ
ସମ୍ମୁଖ ସମରେ ଯେବେ କରୁଥାଏ ରଣ ।

ସ୍ଥିରକର ବୁଝି ଏବେ ପ୍ରତିଜ୍ଞା ଆମ୍ଭର
ଜଣା ହବ ଜଣାଯିବ କଲେ ସେ ସମର ।
ଦୁଃସହ ପ୍ରତିଜ୍ଞା କରି କହଇ ସୁବାହୁ
କ୍ରୋଧେ ଉଷ୍ଣ ତମ୍ପେ କଷ୍ଟ ନ ପାରଇ ଆଉ ।
ତୂଣେ ଥୋଇଥିବା ପାଞ୍ଚକୋଟି ଦିବ୍ୟଶର
କୋପେ ପେଷିଲା ତାହାକୁ ଅର୍ଜୁନ ଉପର ।
ଦେବକୀନନ୍ଦନ କାଣ୍ଡ ପଡ଼ିବାର ଦେଖି
କୌମୋଦକୀ ଗଦା ଆଉ ବଥାଇଲେ ମୁଷ୍ଟି ।
ପୁଣି ନାଗତେ ପୂରଇ ଶର ପଞ୍ଚଷଠି
ଅର୍ଜୁନର ଉପରକୁ କ୍ରୋଧେ କଲା ବୃଷ୍ଟି ।
ସେ ନାରାଚ ପଡ଼ିବାର ଦେଖି ବାୟୁବଳା
ଲାଙ୍ଗୁଳରେ ବାନ୍ଧି ସବୁ ଚୂର କରିଦେଲା ।
ପୁଣ ନାଗତେ ପୂରାଇ ଶର ଦଶାଶତେ
ଘୋର ଅନ୍ଧାର କରଣ ବନ୍ଧିଲା ଉପରତେ ।
ଏମନ୍ତ ଦେଖିଣ ମନେ ହୋଇ କୁତୂହଳୀ
ଅର୍ଜୁନ ପେଷିଲା ତହୁଁ ଶର ଆଦ୍ରାବଳୀ ।
ତତକ୍ଷଣେ ପୃଥିବୀ ଯେ ହେଲା ଜ୍ୟୋତିର୍ମୟ
ଦୁଷ୍ଟ ଦାନବ ରହିଲେ ହୋଇଣ ନିର୍ଭୟ ।
ଯେଉଁ କାଳଚକ୍ର ଶର ଯମ ଦେଇଥିଲା
ଆକର୍ଷି ସୁବାହୁ ତାକୁ ଅର୍ଜୁନେ ମାରିଲା ।
ସେ କାଳଚକ୍ର ଆସନ୍ତେ ଗାଇ ଫାଲଗୁନ
ବଇଷ୍ଣବ ଚକ୍ରେ ପ୍ରତିଶର କଲେ ଯେଣ ।
ବୈଷ୍ଣବଚକ୍ର ପଶିତାଳେ ଉଠିଲା ବହ୍ନି
ପ୍ରଳୟକାଳେ ଯେସନେ ଦିଶଇ ଅବନୀ ।
ଆକାଶକୁ ଅଗ୍ନି ଶ୍ୱାସ ହୁଅନ୍ତେ ପ୍ରକାଶ
ଦେବଗଣ ତ୍ରାସେ ସ୍ତୁତି କରିଲେ ବିଶେଷ ।
ଦେବତାଙ୍କ ସ୍ତୁତିବାକ୍ୟେ ହୋଇ ପରସନ୍ନ
ବୈନତଚକ୍ରେ ଚଳିଗଲେ ନିଜ ନିଜ ସ୍ଥାନ ।
ଅର୍ଜୁନ ଶରେ ବହୁତ ଦୈତ୍ୟ ହେଲେ ହତ
ତଥାପି ଯୁଦ୍ଧ କରନ୍ତି ନ ହୋଇ ନିବର୍ତ୍ତ ।
ପୁନଃ ପୁନଃ ବନ୍ଦେ ଦୈତ୍ୟ ଶର ସୂଚିମୁଖ
ଅବଶ୍ରାନ୍ତ ବନ୍ଦେ ବାଣ ନୋହିଣ ବିମୁଖ ।
ସାରବାହୁ ମନେ ପାଞ୍ଚି କଲା ଏକ ବୁଦ୍ଧି
ହନୁ ଅର୍ଜୁନ କୃଷ୍ଣଙ୍କୁ ଶର ବନ୍ଦେ ସନ୍ଧି ।
ଜନପଦ ସୈନ୍ୟଙ୍କୁ ସେ କରି ଏକମୁଖ
ଧର୍ମ ଉପେକ୍ଷିଣ ଶର ବନ୍ଦଇ ଦୁର୍ମୁଖ ।

ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲା ଫାଲଗୁନ
ଯୁଗାନ୍ତେ ଆଦିତ୍ୟ ଯେହ୍ନେ ଉଦେ ତେଜ ସେନ
ସିନ୍ଧୁ ଉଚ୍ଛୁଳିଲେ ଶୁଭେ ଯେହ୍ନେ ଘୋରନାଦ
ଖଣ୍ଡ ଶଇଳ ପଡ଼ନ୍ତେ ଯେପରି ଶବଦ ।
ଚମକ ପଡ଼ିଲା ଶତ ଯୋଜନ ପର୍ଯ୍ୟନ୍ତେ
ଶରେ ଶରେ ଅନ୍ଧକାର ଘୋଟିଲା ଜଗତେ ।
ଅର୍ଜୁନକୁ ନ ଦିଶଇ ଶ୍ରୀକୃଷ୍ଣ ସାରଥି
ଶ୍ରୀକୃଷ୍ଣଙ୍କୁ ରଥଅଶ୍ୱ ପୁଣି ନ ଦିଶନ୍ତି ।
ଆବରନ୍ତି ନ ଦିଶଇ ସେ କପିକେତନ
ଶ୍ରୀକୃଷ୍ଣ ଦିଅନ୍ତି ଡାକ ଅଛୁ କି ଅର୍ଜୁନ ।
ଉଚ୍ଚେ ବହୁତ ଡାକିଲେ ଦେବ ଚକ୍ରପାଣି
ଅର୍ଜୁନଙ୍କୁ ନ ଶୁଭିଲା ଶ୍ରୀକୃଷ୍ଣଙ୍କ ବାଣୀ ।
ରଥ ଉପରେ ଆଇଣ ଦେବ ଶିଖିପତ
ଥିବା ନ ଥିବା ଅଶ୍ୱଙ୍କୁ ଖୋଜି ଆଉଁସନ୍ତି ।
ଶ୍ରୀକୃଷ୍ଣଙ୍କ ଚତୁର୍ଭୁଜ ଲାଗି ତାଙ୍କ ପିଠି
ଧାଡିକାରେ ଅଶ୍ୱ ଗଲେ ଗଗନକୁ ଉଠି ।
ବହୁଦୂର ଗମି ରହିଲେକ ଅନ୍ତରୀକ୍ଷେ
ଲାଗିଛନ୍ତି ସଙ୍ଗେ ସଙ୍ଗେ ଦୁରନ୍ତକ ରକ୍ଷେ ।
ଅର୍ଜୁନକୁ ମାର ବୋଲି ଶୁଭେ ମୁଖଧ୍ୱନି
ଆକାଶେ ଥାଇଣ ତାହା ଶୁଣେ ଫାଲଗୁନ ।
ଶ୍ରୀକୃଷ୍ଣ ଚରଣ ତଳେ ହୋଇ ପ୍ରଣିପାତ
ବୋଇଲେ ସମର ମୁଖେ ନାଥ ମୋର ରଥ ।
ଗୋବିନ୍ଦ ବୋଇଲେ ଦେଖ ଆନନ୍ଦ ମନରେ
ଆପେ ଆପେ ହଣାମରା ହେଉନ୍ତୁ ଅସୁରେ ।
ଆଦିତ୍ୟ ଉଦ୍ଧାରେ ଯହୁଁ ଘୋଟିଲା ରଜନୀ
ନିଜ ପର ବୋଲି ଦୈତ୍ୟ ନ ଜାଣିଲେ ତହିଁ
କାହାର ଅସ୍ତ୍ରକୁ କିଏ ନଥାଇ ଛଡ଼ାଇ
ଏକ ପ୍ରହାରରେ ବଶଧ୍ୱଂଶ କେ ମାରଇ ।
ପଳାଇଗଲା କ୍ଷଣୀକୁ ଗୋଡ଼ାଇ ମାରନ୍ତି
ଆପଣେ ଆପଣେ ତହିଁ ହଣାହଣି ହୋନ୍ତି ।
ଏକ ଶିରରେ ଆରେକ ଅସ୍ତ୍ର ନେଇ ପିଟି
ଅସାସ୍ତ୍ରମେ ଦୈତ୍ୟବଳ ମଲେ ମହାଲୋଟି ।
ଅର୍ଜୁନ ବୋଇଲେ ଶୁଣ ଦେବ ରମାନାଥ
ଜଳଧର ବ୍ୟୂହକୁ ଯେ ବାହା ମୋର ରଥ ।
ଅକାରଣେ ରଥ କର୍ପା କରୁ ଅନ୍ତର୍ଦ୍ଧାନ
କ୍ଷତ୍ରିୟ କୁଳକୁ ହେବ ବଡ଼ ଅପମାନ ।

ସମରି କରଣ ଯେବେ ଜିଣିବା ଯୁଦ୍ଧରେ
ତେବେ ଆସ୍ଥର ସୁଖ୍ୟାତ ହେବ ତ୍ରିଜଗତେ ।
ସମ୍ମୁଖ ସମରେ ଥାଇ ମଲେ ରଣଭୂଇଁ
ବଇକୁଣ୍ଠରେ ବସିବ ଶୁଣ ହେ ଗୋସାଇଁ ।
ଅର୍ଜ୍ଜୁନ ବଚନ ଶୁଣି ବୋଲନ୍ତି ଶ୍ରୀଧର
ବିଷମ ସମର ଏହୁ ମୋତେ ଅଗୋଚର ।
ମହାମନ୍ତ୍ର ହୋଇ ଦୈତ୍ୟ ମରନ୍ତେ ବହୁତ
ପରେ ଦେଖିଲେ ନାହାନ୍ତି ପାର୍ଥ ଜଗନ୍ନାଥ ।
ଆକାଶରୁ ଯହୁଁ ରଥ ଆଣିଲେ ଶ୍ରୀଧର
ଚଢ଼ିଲା ପରା ଦେଖନ୍ତି ଥିଲେ ଯେ ଅସୁର ।
କେ ବୋଲଇ କୃଷ୍ଣାର୍ଜ୍ଜୁନ ମଇଲେ ସମରେ
କେ ବୋଲଇ ନନ୍ଦଘୋଷ ନାହିଁ ତ ଏଠାରେ
ମୃତପିଣ୍ଡ ଲେଉଟାଇ ଅସୁରେ ଦେଖନ୍ତି
କାହିଁ କୃଷ୍ଣ ଅରଜୁନ ବୋଲିଣ ଡାକନ୍ତି ।
ତାହା ବର୍ଣ୍ଣି ଲେଉଡ଼ ଯହୁଁ ନ ପାଇଲେ ଭଣେ
ବୋଇଲେ କୃଷ୍ଣ ଅର୍ଜ୍ଜୁନ ପଳାଇଲେ କେଣେ
ଏମନ୍ତ ବିଚାରୁଛନ୍ତି ଅସୁର ସଇନ
ନନ୍ଦଘୋଷ ଯେଣୁ ଚଳେ କୃଷ୍ଣ ଫାଲଗୁନ ।
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଦଇତ୍ୟାରି
ଦେବଦତ୍ତ ଶଙ୍ଖ ପାର୍ଥ ଫୁଙ୍କିଲେ ଓଟାରି ।
ରଥଧ୍ୱଜେ ହନୁମନ୍ତ ବସିବାର ଦେଖି
ପଳାନ୍ତି ଅସୁର ସୈନ୍ୟ ସମର ଉପେକ୍ଷି ।
ଗାଣ୍ଡିବ ଧନୁର ଯହୁଁ ଶୁଭେ ଗୁଣଘୋଷ
ଲେଉଟି ଧାଇଁଲେ ତହୁଁ ସେ ସବୁ ରାକ୍ଷସ ।
ସମରେ ରାକ୍ଷସମାନେ ଅତ୍ୟନ୍ତ ନିର୍ଭ୍ରାନ୍ତ
ନାରାଚ ଧରି ବେଢ଼ିଲେ ରଥ ଚଉକତ ।
ଯଥା ରକ୍ତବୀର୍ଯ୍ୟ ରଣ କଲା ସତ୍ୟଯୁଗେ
ମୁଖରବ କରି ହେଲେ ଶ୍ରୀକୃଷ୍ଣଙ୍କ ଆଗେ ।
ଦଶବଂଶ ପରୁଷ ଯେ ପୂରାଇଣ ଶର
ତିନିଲକ୍ଷ ଯୋଦ୍ଧା ମିଶି କରନ୍ତି ସମର ।
ଶ୍ରୀକୃଷ୍ଣ ବୋଇଲେ ଭୁଜ ଶୁଣ ଧନଞ୍ଜୟ
ଲାଘବ ଯୁଦ୍ଧେ ଅସୁର ନ ହୋଇବେ କ୍ଷୟ ।
ଧ୍ୟାନେ ସୁମରଣା କଲେ ଦେବ ବନମାଳୀ
ପାତାଳୁ ଆସିଲେ ଶର କଙ୍କାଳ ବେତାଳ ।
ଲହ ଲହ ଜିହ୍ୱା କେଶ ଅଛଇ ଯାଙ୍କର
ଧରିଥାନ୍ତି ହସ୍ତେ ସେହୁ କାତି ଯେ ଖପର ।

ସର୍ଣ୍ଣ ଆଦରି ଉଠାଇ ଦେବନଙ୍କର ହସ୍ତେ
ପୃଥିବୀରେ ପାଦ ଶିର ଗଗନର ପଥେ ।
ଶ୍ରୀକୃଷ୍ଣ ବୋଇଲେ ଦେଖି ପୁଣ ଧନଞ୍ଜୟ
ଏ ଦେବ ଅସ୍ତ୍ରକୁ ଯେବେ ଶତ୍ରୁ କର କ୍ଷୟ ।
ଅର୍ଜ୍ଜୁନ ବୋଇଲେ ଏ ତ ଅଟଇ ଭୈରବୀ
ମୋହର କୁହଇ ଅସ୍ତ୍ର କେମନ୍ତେ ପେଷିବି ।
ଅଶରୀରତ ଶର ସେ କପଟ ପେଷଇ
ଧର୍ମ ନାଶଯାଇ ପୁଣି ଦୂଷିତ ହୁଅଇ ।
ଗୋବିନ୍ଦ ବୋଇଲେ ଯେତେ ଅସ୍ତ୍ର ଅରଜିଲୁ
ସ୍ୱସ୍ତିବ ସ୍ତୁତିଗାନରେ ସମସ୍ତ ପାଇଲୁ ।
ଖାଣ୍ଡବ ଦହନ କାଳେ ଅଗ୍ନି ଦେବତାଏ
ସର୍ବଦେବତାଙ୍କ ଅସ୍ତ୍ର ତୋତେ ଆଣିଦଏ ।
ରାଜସୂୟ ଯାଗକାଳେ ତୁ ଗଲୁ ପାତାଳେ
ଅଷ୍ଟକୁଳନାଗ ଶର ଦେଲେ କନ୍ୟାକୁଳେ ।
ଗୋପବନରେ ବୁଲୁଥିଲୁ ହର ଉଦ୍ୟାନରେ
ରୁଦ୍ରଦେବତା ତୋଷିଲୁ କିରାତ ରୂପରେ ।
ପାଶୁପତ ଶର ଆଉ ଅମୋଘ ଶକତ
ଖେଳା ହୋଇକରି ଦେଲେ ତୋତେ ପଶୁପତି
ସଦାଶିବଙ୍କ ବଚନେ ତୃପତ ପାଉସୀ
ଦେଲେ ସେ ଅକ୍ଷୟ ତୂଣ ତୋତେ ଆଣିକରି
ପାତାଳ ଶରକୁ ଯେବେ ଏତେ ଭୁଞ୍ଜ ବାନ୍ଧୁ
ତେବେ ଏ ଅସ୍ତ୍ର ସକଳ କପାଇଁ ରଖିଛୁ ।
ମାୟାଧର ପୁରୁଷ ସେ ଦେବ ନରହରି
ଅର୍ଜ୍ଜୁନକୁ ପ୍ରବୋଧନ କଲେ ଏହିପରି ।
କଙ୍କାଳ ବେତାଳ ଦୁଇ ଦେବଶସ୍ତ୍ର ଯେନ
ଦୈତ୍ୟଙ୍କ ପ୍ରତି ପେଷିଲେ ବେଗେ ଫାଲଗୁନ ।
ବେନ ଅସ୍ତ୍ରକୁ ବହୁତ ପ୍ରଣିପାତ ହୋଇ
ବୋଇଲେ ଅସୁର ବଳ ବେଗେ ଖାଅ ଯାଇ
ଫାଲଗୁନର ବଚନେ ଦେବ ଅସ୍ତ୍ର ବେନ
ପଶିଲେ ସମରେ ହୋଇ ପ୍ରଳୟ ବଦନ ।
ସଂଗ୍ରାମେ ଯେତେକ ଅସ୍ତ୍ର ପେଷଇ ଅର୍ଜ୍ଜୁନ
ଅସୁରମାନଙ୍କ ଶିର କରଇ ଛେଦନ ।
ପୃଥିବୀ ମଧ୍ୟରେ ଯହୁଁ ହୁଏ ରକ୍ତବୃଷ୍ଟି
ମୃତପିଣ୍ଡ ଚେତାପାଇ ବଳନରେ ଉଠି ।
ମୁଖା ଦୁର୍ମୁଖା ନାମରେ ଦୁଇ ଦୈତ୍ୟବୀର
ମେଦନୀ ନ ସହଇ ଯେ ଦୁହିଙ୍କର ଭାର ।

ବଳେ ଚର୍ଣ୍ଣି କୁଠାର ସେ ଦୁହିଙ୍କର ହାତେ
ଶୀଘ୍ରରେ ପିଟିଲେ ନେଇ ନନ୍ଦଘୋଷ ରଥେ ।
ସେ କୁଠାର ପଡ଼ିବାର ଦେଖି ଫାଲଗୁନ
କୋପରେ ପ୍ରହାରିଲା ପାଶୁପତ ଶେନ ।
ମହାଯୋଗେଶ୍ୱରଙ୍କର ଅଟଇ ସେ ବାଣ
ସତ୍ୟଯୁଗେ ଅନ୍ଧକର ନେଇଥିଲା ପ୍ରାଣ ।
ନାଗତ ପଡ଼ନ୍ତେ ଉଲ୍କାପାତ ହେଲା ମହୀ
ସେ ମହାଅଗ୍ନିର ତାପ କେ ପାରିବ ସହି ।
ମୁଖା ଦୁର୍ମୁଖା ଅସୁର ଥିଲେ ଅସ୍ତ୍ର ନେଇ
ପାଶୁପତାସ୍ତ୍ରେ ଛିଡ଼ିଲା ଦୁହିଙ୍କ ମୁର୍ଦ୍ଧନ ।
ଶର ଘୁଡ଼ିବାରୁ ତହିଁ ଅସମ୍ଭବ ହେଲା
ଖେଚର ଭୂଚର ହୋଇ କବନ୍ଧ ନାଚିଲା ।
ହୁଁ ହୁଁ କାର ଶବଦରେ କଲେ ଘୋରବାଣୀ
ଶରୀରୁ ମୁଣ୍ଡେକ ଆସି କନ୍ଧେ ଲାଗେ ପୁଣି
ଗୋବିନ୍ଦ ବୋଇଲେ କୃଷ୍ଣ ଦେଖରେ ଅର୍ଜୁନ
କନ୍ଧରୁ ଶିରେକ ପୁଣି ହେଲା ଉତପନ୍ନ ।
ପୁଣି ଛୁରିଶର ପାର୍ଥ ବନ୍ଧିଲେକ ଟାଣି
ସେହିକ୍ଷଣି ବେନି ମୁଣ୍ଡ ପକାଇଲେ ହାଣି ।
ପୁଣ କବନ୍ଧ ନାଚଇ କରି ରଣରଙ୍ଗ
ମୁଣ୍ଡ ଛିଡ଼ିଲାଣି ତାର ନ ଲେଟଇ ଅଙ୍ଗ ।
ପୁନଃ ପୁନଃ ସେ ନାଗତ ବନ୍ଧେ ଫାଲଗୁନ
ଉତପତ୍ତି ମୁଣ୍ଡମାନ ପକାଏ ସେ ହାଣି ।
ମୁଖା ଦୁର୍ମୁଖା ସମରେ ନୁହନ୍ତି ନିଧନ
ବିମୁଖ ହୋଇଲା ରଣ କରିଣ ଅର୍ଜୁନ ।
ଅର୍ଜୁନ ବୋଇଲା ଦେବ ବଡ଼ ଅସମ୍ଭବ
କାଟିଲା ମୁଣ୍ଡ ଜନ୍ମିଲେ କିଏ ଅଛି ଗର୍ଭ ।
ଗୋବିନ୍ଦ ବୋଇଲେ ଏହି କଥା ଅଛି ପୂର୍ବେ
ତ୍ରେତା ଯୁଗର ଚରିତ କହିବାକ ଏବେ ।
ରାବଣ ଯେ ହରିନେଲା ଶ୍ରୀରାମ ବନିତା
ସେହି ରାବଣର ପୁତ୍ର ଅଟେ ଇନ୍ଦ୍ରଜିତା ।
ଲକ୍ଷ୍ମଣ ସଙ୍ଗେ ସମର କଲା ଅପ୍ରମିତ
ସମରେ ଶିର ଛେଦିଲେ ସୁମିତ୍ରାର ସୁତ ।
ନାଗତ ପଡ଼ନ୍ତେ ଛିଡ଼ି ପଡ଼ଇ ତା ଶିର
ଖେଚର ଭୂଚର ହୋଇ କରଇ ହୁଂକାର ।
ପୁଣି ଶିର ଉତପତ୍ତି ଗର୍ଭରୁ ହୁଅଇ
ଦେଖି ଚକିତ ହୋଇଲେ ସେହି ବେନିଭାଇ ।

ରାବଣ କହନ୍ତି ଶୁଣ ନାମ ବିଭୀଷଣ
ସେହି କହିଲା ତାହାର ମୃତ୍ୟୁଭେଦମାନ ।
ଗର୍ଭରେ ଅଛି ଅମୃତମୟ ଲିଙ୍ଗ ଖଣ୍ଡ
ଛେଣ୍ଡି ବାହାର ହୁଅଇ ପୁଣି ତାର ମୁଣ୍ଡ ।
ନାଭିକି ନାଗତ ଭୁଷି ବିନ୍ଧ ହୋ ଲକ୍ଷ୍ମଣ
ତେବେ ଯାଇ ସେ ଅସୁର ହାରିବ ପରାଣ ।
ଏହାର ଗର୍ଭରେ ଅଛି ଅମୃତର ଲିଙ୍ଗ
ତାକୁ ମାଇଲେ ଭୂମିରେ ପଡ଼ିବ ତା ଅଙ୍ଗ ।
ଶ୍ରୀକୃଷ୍ଣ ବଚନ ଶୁଣି ବୀର ଧନଞ୍ଜୟ
ବୋଲେ ତା ଗର୍ଭରେ ଲିଙ୍ଗ ଅଛଇ ନିଶ୍ଚୟ ।
ଅର୍ଜୁନ ସମର କଲା ତାହା ମନେ ରଖି
ପ୍ରାଣତ୍ୟାଗର ନାଗତ ବନ୍ଧିଲା ନାଭିକି ।
ନିର୍ଘାତ ନାଗତ ପଡ଼େ ଦନୁଜଙ୍କ ଗର୍ଭେ
ଉତ୍ତାନ ହୋଇ ପଡ଼ିଲେ ଦୁହେଁ ଏକଠାବେ ।
ଧାଇଁ ଆସି ଆକର୍ଷିଲେ କଙ୍କାଳ ବେତାଳ
ଘୋଟିଯାଇ ହୁଁ ହୁଁ କାରେ କଲେ ହୁଳହୁଳ
ରକତ ମାଂସ ଭକ୍ଷଣ କରି ବଜ୍ରତୁଣ୍ଡୀ
ଆକାଶେ ଖେଳନ୍ତି ଯାଇ ରଣ ରଙ୍ଗେ ମଣ୍ଡି ।
ଘୋଟିଲେ ସମରେ ସେତ୍ତ ଆକାଶେ କ୍ଷେପିଣ
କୁଠାର ଅସ୍ତ୍ର ବୁଲାଇ ପିଟନ୍ତି ସେ ପୁଣ ।
ଦୈତ୍ୟଙ୍କ ମସ୍ତକ ଛିଡ଼ି ପଡ଼ଯାଏ ତଳ
କବନ୍ଧ ନାଚନ୍ତି ରଣେ ହୋଇ କୁତୂହଳ ।
ମୃତପିଣ୍ଡକୁ ଆବୋରି ଭକ୍ଷନ୍ତି ସେ ବେନି
ଅନ୍ତରୀକ୍ଷରେ ଧାମନ୍ତି କୁଠାରକୁ ନେଇ ।
ଅସୁର ମର୍ଦ୍ଦିମା ଇଟମଟ କରି ପାଟି
ପିଙ୍ଗଳବରଣା ଶୂନ୍ୟମାର୍ଗେ ଗଲେ ଘେଟି ।
ବିଷମ ସମର ହେଲା ବ୍ୟୂହ ଜଳଧରେ
ଅସଂଖ୍ୟ ଅସୁର ମଲେ କିଏ ଗଣିପାରେ ।
ଦୁଃସହ ଅଗୋଚର ଏ ଜଳଧର ବ୍ୟୂହ
ମାୟା ଉପାୟେ ରହିଛି ଅସୁର ଯେ ମୟ ।
ସେ ବ୍ୟୂହ ଭିତରେ ଯହୁଁ କୃଷ୍ଣ ଯୁଦ୍ଧକଲେ
ବ୍ୟୂହକୁ ନେଇ ଅସୁର ଅନ୍ତର୍ଦ୍ଧାନ ହେଲେ ।
ନାଗତ ପୂରାଇ ପାର୍ଥ ଚଉଦିଗ ଚାହିଁ
ଅସୁର ବଳମଧ୍ୟରେ ଜଣେ କେହି ନାହିଁ ।
ଖୋଜନ୍ତି ବିପିନ ଆଦି ଗିରିଶିଖେ ଉଠି
ଚହ୍ଲା ବର୍ତ୍ତି ନ ପାଇଲେ କାହାର କେଉଁଠି ।

ଗୋବିନ୍ଦ ବୋଇଲେ ଶୁଣ ଆହୋ ଅର୍ଜୁନ
କେଣେ ସେ ବୃନ୍ଦାରକ ହେଲେ ଅନ୍ତର୍ଦ୍ଧାନ
ନ ପୁଣ ଜମ୍ବୁଦ୍ୱୀପରେ ନ ଦିଅନ୍ତି ଧାଡ଼
ଦେଶ ଉଜାଡ଼ ନଗର ନ ଦିଅନ୍ତି ପୋଡ଼ ।
ସଂଗ୍ରାମରୁ କେଣେ ଗଲେ ସେ ଦୁଷ୍ଟ ପାପିଷ୍ଠୀ
ନ ପୁଣ କଣ୍ଟକ ହେଡ଼ି ଧରନ୍ତି ଯୁଧିଷ୍ଠି ।
ଏମନ୍ତ ବଚନ ତହୁଁ ଦେବକୀର ବାଳ
ରଥୁ ଓହ୍ଲାଇ ଦେଖନ୍ତି ତହିଁ ଜଳାକୁଳ ।
ତହୁଁ ଅଶ୍ୱଙ୍କୁ ରଥରୁ ଫେଇ ଚକ୍ରପାଣି
ସରସ୍ୱତୀ ନଦୀରେ ଯେ ପିଆଇଲେ ପାଣି ।
ଆକାଶରେ ଦେଖୁଥିଲା ମୟୂ ଦୈତ୍ୟେଶ୍ୱର
ଶ୍ରୀକୃଷ୍ଣ ରଥ ଘୁଞ୍ଚନ୍ତେ ମାୟା କଲା ଘୋର ।
ଶ୍ରୀକୃଷ୍ଣ ଗମନ୍ତେ ରଥୁ ଓହ୍ଲାଇ ଅର୍ଜୁନ
ପର୍ବତ ଶିଖରୁ ଉଠି କଲେ ଶଙ୍ଖସ୍ୱନ ।
କୃଷ୍ଣାର୍ଜୁନ ଛଡ଼ା ଛଡ଼ି ହେଲେ ଯେତେବେଳେ
ଶୂନ୍ୟଭେଦ ଧାଡିବାରେ ଅଇଲେ ବୃନ୍ଦାରେ
ଯମ ଦେଇଥିଲା ତାକୁ ଯେଉଁ କାଳଫାଶି
ତାହା ଘେନି ଅର୍ଜୁନକୁ ବାନ୍ଧିଲେକ ଆସି ।
ସଙ୍ଗରେ କୌଣସ ସୈନ୍ୟ ଅଛଇ ତାହାର
ପାର୍ଥ କରେ ଅଛୁ ବଜ୍ରକର୍ଣ୍ଣ ଯେ କଟାର ।
ପାଶ ସହସ୍ରେକ ଜଣି ବସ୍ତ୍ରଇ ନେ୍ୟାତ
ଦେଖିଣ ବାନରେ ଭେଦି ନ ପାଆନ୍ତି କତ ।
ଧନଞ୍ଜୟ ହସ୍ତରେ ଯେ ଧନୁତୃଣ ନାହିଁ
ନଦୀକୁ ସେ ଆସିଅଛୁ ଗାଧୋଇବା ପାଇଁ ।
ଭେଦ ନ ପାରି ବନ୍ଧନେ ପଡ଼ିଲା ପାଣ୍ଡବ
ଅଶ୍ୱଙ୍କୁ ପାଣି ପିଆଇ ଆଣିଲେ ମାଧବ ।
ଅଶ୍ୱମାନେ ସୁସ୍ଥହେଉଁ ଦେବ ବଇତ୍ୟାରି
ନନ୍ଦିଘୋଷରେ ଯୋଚିଲେ ନେଇ ଅଶ୍ୱବର ।
କରେ ବାଗଡୋର ଧରି ରଥେ ଯାଇ ଉଠି
ଦେଖିଲେ ରହିଛି ଧନୁ ନାହିଁ ଯେ କିରୀଟୀ ।
ଶ୍ରୀହରି ଉଠିଲେ ଯାଇ ରଥଧ୍ୱଜ ପରେ
ଅର୍ଜୁନ ଅର୍ଜୁନ ବୋଲି ଡାକିଲେ ଉଚ୍ଚରେ ।
ଅର୍ଜୁନ ଶୁଣିଲା କୃଷ୍ଣ ଉଚ୍ଚ ଡାକ ବାଣୀ
ଅତି ଉଚ୍ଚରେ ବୋଇଲା ରଖ ଚକ୍ରପାଣି ।
ରଥଧ୍ୱଜରେ ଥାଇଣ ବୋଲେ ହନୁମନ୍ତ
ଜଳଧର ବ୍ୟୂହେ ବନ୍ଦିହେଲା ତୋର ପାର୍ଥ ।

ହନୁ ମୁଖରୁ ବାରତା ଶୁଣି ଜଗନ୍ନାଥ
ଶୀଘ୍ରେ ଚକ୍ର ଧରିଣ ଧାଇଁଲେ ତୁରିତ ।
ଗୋବିନ୍ଦ ବିଜୟ ଯହୁଁ ଦେଖିଲେ ଦୁରନ୍ତ
ଜଳଧର ସେନଯାଇ ହେଲେ ଉପାଗତ ।
ଅନ୍ଧାର ଭୁବନେ ଗଲେ ଅର୍ଜୁନକୁ ସେନ
ଦେବଦତ୍ତ ଶଙ୍ଖଧ୍ୱନି କରେ ଫାଲଗୁନ ।
କୃଷ୍ଣଙ୍କୁ ଶୁଭଇ ସେହି ଦେବଦତ୍ତ ନାଦ
ସେ ଶବଦ ବାରି ପଛେ ଜୋଡ଼ାନ୍ତି ଗୋବିନ୍ଦ
ପବନହୁଁ ବେଗେ ଧାଉଁଛନ୍ତି ଚକ୍ରଧର
ଦେଖିଲେ ସେ ବ୍ୟୂହ ଅଟେ ଅତ୍ୟନ୍ତ ଅନ୍ଧାର
ତହୁଁ ଦେବ କୌମୋଦକୀ ଗଦାକରେ ସେନ
ଜୋଡ଼ାଇ ପିଟନ୍ତି ପଛେ ଅସୁର ସଇନ ।
ଜଗାସୁର ଧପାସୁର ବୋଲି ଦେନପାରେ
ବହୁ ସେନା ସେନ ଭେଟି କୃଷ୍ଣଙ୍କ ସମ୍ମୁଖରେ ।
କରେ ପର୍ବତ ସମାନ ଦେନ ଗଦା ଘେନ
ଶ୍ରୀକୃଷ୍ଣ ଉପରେ ତାହା ପ୍ରହାରିଲେ ଦେନ ।
କରେ କୌମୋଦକୀ ଗଦା ଦେବ ସେନ ପିଟି
ଜପାସୁର ଧପାସୁର ମଲେ ମଗ୍ନଲେଟି ।
ଶ୍ରୀକୃଷ୍ଣଙ୍କ ପାଶେ ଥିଲେ କଙ୍କାଳ ବେତାଳ
ଧାଇଁଯାଇଁ ଅସୁରଙ୍କୁ ପକାଇଲେ ଗିଳ ।
ଜପାସୁର ଧପାସୁର ମରିବାରୁ ରଣେ
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ନାରାୟଣେ ।
ପାଞ୍ଚଜନ୍ୟ ଶଙ୍ଖ ଯହୁଁ କରିଲେକ ଧ୍ୱନି
ତାହା ଶୁଣିଣ ହରଷ ହେଲେ ଫାଲଗୁନି ।
କଣ୍ଟାସୁର ବୋଲି ପୁଣ ଏକଇ ଅସୁର
କୃଷ୍ଣ ସମ୍ମୁଖରେ ଆସି କଲେକ ସମର ।
କୌମୋଦକୀ ଗଦା କୃଷ୍ଣ ପିଟିଲେକ ତୋଳି
ସେ ଅସୁର ହାଡ଼ ମାଂସ ହୋଇଲାକ ଧୂଳି ।
ମାୟା ରଚିତ ବ୍ୟୂହକୁ କେହି ଭେଦପାରି
ଅକ୍ଲେଶେ ଭେଦିଲେ ତାକୁ ଦେବ ଦଇତ୍ୟାରି
ସେ ଘୋର ଅନ୍ଧାର ବ୍ୟୂହ ଦେବେ ଅଗୋଚର
ଆପଣେ ମାରନ୍ତି ଦେବ ଦୁରନ୍ତ ଅସୁର ।
ଯହୁଁ ଶୁଭିଲାକ ତହିଁ ଗଦା ଯୁଦ୍ଧ ଧ୍ୱନି
ଗୋବିନ୍ଦ ଉଦ୍ଧାର ବୋଲି ଡାକେ ଫାଲଗୁନି
ତାକ ଶୁଭଇ ଯିବାକୁ ତହିଁ ନାହିଁ ବାଟ
ଭୟଙ୍କର ବ୍ୟୂହ ଏହୁ ସମସ୍ତ କପଟ ।

ଅଗସ୍ତିଙ୍କୁ ପଚ୍ଚରଲେ ମନୁ ନୃପବର
ପାର୍ଥେ ବନ୍ଧକର କପାଁ ନ କାଟିଲ ଶିର ।
ପାଣ୍ଡବ ମାରିବା ପାଇଁ ଅସୁରଙ୍କ କକ୍ଷା
ନ ମାରି ତାହାକୁ କପାଁ କରିଛନ୍ତି ରକ୍ଷା ।
ଅଗସ୍ତି କହନ୍ତି ଶୁଣ ଆହେ ଯୋଗେଶ୍ୱର
ଅଗ୍ନି ଦେଇଥିଲେ ତାଙ୍କୁ ଗୋଟିଏ କୁଠାର ।
ସେହି କୁଠାରକୁ ପାର୍ଥ ଧରିଅଛି କରେ
ଅଗ୍ନିତେଜରୁ ପ୍ରଖର ତେଜ ସେ ବାହାରେ ।
ତାହା ଦେଖିଣ ଦାନବେ ମନେ ପାଇ ଖେଦ
କେହି ପଶି ନ ପାରନ୍ତି ଉତ୍ସି ତା ଭିତ ।
ନିଜ ଜୀବନକୁ ଅବା କାର ଭୟ ନାହିଁ
କାଣ୍ଡ ମାଇଲେହେଁ ତେଜେ ଯାଏ ଭସ୍ମ ହୋଇ
ତେଣୁଟି ରକ୍ଷା ପାଇଲା ବୀର ଧନଞ୍ଜୟେ
ରକ୍ଷକୂଳ କୃଷ୍ଣଙ୍କୁ ସେ ବେଢ଼ିଲେ ନିର୍ଭୟେ ।
କଙ୍କାଳୀ ବେତାଳୀ ତହିଁ ବହୁ ସୈନ୍ୟ ମାରି
ଗଉକୁ କ୍ଷେପି ଦିଅନ୍ତି ଅତି ଯତ୍ନକର ।
କର୍ଣ୍ଣିକଣ୍ଠାଗ୍ରକୁ ମାରି ପାତିଣ ଖପର
ପିଅନ୍ତି ରକ୍ତକୁ ପିଣ୍ଡ କରନ୍ତି ଆହାର ।
ଯେତେ ମାଇଲେ ଦନୁଜ କେତେ ନ ମରନ୍ତି
ଦ୍ୱିଗୁଣ ତେଜରେ ପୁଣି ସମର କରନ୍ତି ।
ଶ୍ରୀନାରାୟଣ ବିମୁଖ ହୋଇବାର ରଣେ
ସୁଦର୍ଶନ ଚକ୍ର ହସ୍ତ ଧଇଲେ ଆପଣେ ।
ଶ୍ରୀନାରାୟଣଙ୍କ କରେ ସୁଦର୍ଶନ ଦେଖି
ପଳାନ୍ତି ଅସୁରବଳ ସମର ଉପେକ୍ଷି ।
ବ୍ୟୂହକୁ ବାଟ ନ ପାଇ ଦେବ ନାରାୟଣ
ବୁଲନ୍ତି ଯେ ଏଣେ ତେଣେ ଅଥୟ ହୋଇଣ
ଅନେକ କୌଣପବଳ ମାରି ଦାମୋଦର
ଜଟାସୁରର କେଶକୁ ଧଇଲେ ସତ୍ୱର
ବୋଇଲା ଯେ କଉଣପ ଶୁଣ ହେ ଗୋବିନ୍ଦ
ମୋତେ ନ ମାଇଲେ କହିଦେବି ବ୍ୟୂହଭେଦ
ତାହା କଲେ ଦୈତ୍ୟବଳ ହୋଇବ ନିଧନ
ମୋତେ ତୁ ନ ମାର ଦେବ ଯଦୁକୁଳନାନ ।
ଅସୁର ବଚନେ ଦେବ ଛାଡ଼ିଲେ ତା ବାଳ
ବୋଇଲେ ଯଥାର୍ଥ କହ ରେ ଦୈତ୍ୟଚଣ୍ଡାଳ
କହ କେଉଁଠାରେ ତେବେ ଅଛି ଅରଜୁନ
ତାକୁ ନ ଭେଟିଲେ ତୋତେ କରିବି ନିଧନ ।

ଜଟାସୁର ବୋଲେ ଦେବ ସତ୍ୟ ମୋର ବାଣୀ
ଅର୍ଜୁନକୁ ଭେଟାଇବି ତୋତେ ଏହିକ୍ଷଣି ।
ତହୁଁ ବହୁ ଅଳଙ୍କାର ଘେନି ଦେବରାଜା
ଆଶ୍ୱାସନା କରି ଦାନବକୁ କଲେ ପୂଜା ।
ତହୁଁ ଦୈତ୍ୟ ବାଟ କଢ଼ାଇଲା ବ୍ୟୂହଭେଦ
ପଛେ ପଛେ ଦୈତ୍ୟନାଶି ଯାନ୍ତି ଦୟାନିଧି ।
କପଟେ ନେଇଣ ଜୀର୍ଣ୍ଣକୂପ ଭେଟାଇଲା
ଏଥି ଭିତରେ ଅର୍ଜୁନ ଅଛନ୍ତି ବୋଇଲା ।
ସବେଣ ଜୀର୍ଣ୍ଣକୂପରେ ପଡ଼ିଲେକ ଡେଇଁ
ଦେଖିଲେ ତହିଁ ଭିତରେ ଧନଞ୍ଜୟ ନାହିଁ ।
କପଟେ କହି ପଳାଏ ଦୈତ୍ୟ ଜଟେଶ୍ୱର
ଗୋବିନ୍ଦ ରହିଲେ ଯାଇ ସେ କୂପ ଭିତର ।
ଅର୍ଜୁନ ବନ୍ଦ ହୋଇଛି ଅନ୍ଧାର ଭୁବନ
ବିଅର୍ଥ ହୋଇଲେ ଏବେ କୃଷ୍ଣ ଅରଜୁନ
ମହା ବିଶ୍ୱରୂପ ହେଲେ କଙ୍କାଳୀ ବେତାଳ
ମାରିଣ ଅସୁରବଳ ତହିଁ କଲେ କେଳି ।
କଙ୍କାଳୀ ଓଗାଳି ରହେ ଜୀର୍ଣ୍ଣକୂପ ଦ୍ୱାରେ
ବେତାଳୀ ରହିଲା ଯାଇ ଅର୍ଜୁନ ପାଖରେ ।
ବିକଟାଳ ରୂପ ଦେଖି ଭାଜିଲେ କୌଣପ
ସଂହାର କଲା ବେତାଳୀ ଅସୁରଙ୍କ ଦର୍ପ ।
କଙ୍କାଳୀ ଜୀର୍ଣ୍ଣକୂପକୁ ଆବୋରିଣ ଅଛି
ଅର୍ଜୁନର ଜାଳପାଶ ଫେଡ଼ିଲା କାମାକ୍ଷୀ ।
ବଜେ ତର୍ଣ୍ଣି କଟାସାକ ଦେଇଥିଲେ ବନ୍ଧି
ତେଣୁ ସେ ଅନେକ ବଳ ନାଶେ ଫାଲଗୁନ ।
ଧନଞ୍ଜୟକୁ ବିରଥ ଦେଖି ମଘବାନ
ମାତଳିକି ବୋଲେ ନିଅ ପୁଷ୍ପକ ବିମାନ ।
ତହିଁ ଅଛି ଅଜଗବ ଧନୁ ଆଉ ତୂଣ
ଜଳଧର ବ୍ୟୂହକୁ ତୁ କରରେ ପ୍ରୟାଣ ।
ଶୁଣି ମାତଳି ସ୍ୱର୍ଗରୁ ଆଇଲା ବହନ
ଉପସ୍ଥ ତ ହେଲେ ଯହିଁ ଥିଲେ ଅରଜୁନ ।
ବୋଇଲା ଏ ଯାନେ ବସି ଆର୍ଦ୍ରାବଳଧର
ସମର କରି ଦୈତ୍ୟଙ୍କୁ ପେଷ ଯମପୁର ।
ଶୁଣି ପୁଷ୍ପକବିମାନେ ବସି ଧନଞ୍ଜୟ
ଅନେକ କୌଣପ ସୈନ୍ୟ କରିଲେ ସେ କ୍ଷୟ
ଇନ୍ଦ୍ର ଦେଇଥିଲେ ଯେଉଁ ଧନୁ ଆର୍ଦ୍ରାବଳ
ତହିଁରେ ଅସୁର ସୈନ୍ୟ ହୋଇଗଲେ ଦଳ ।

ତେଣୁ ଅର୍ଜ୍ଜୁନ ହୋଇଲ ସମରେ ଅଜେୟ
ଅନେକ ବନ୍ଧନଲ ଶର ନାହିଁ ପରାଜୟ ।
ରଣରଙ୍ଗେ ପ୍ରହାରନ୍ତେ ଅନେକ ସଇନ
ପଳାଇଲେ ଜଳଧର ବ୍ୟୂହ ଦୈତ୍ୟ ସେନ ।
ସେ ଗାଣ୍ଡି କୂପ ଉପରେ ଥିଲାକ କଙ୍କାଳୀ
ବିଶ୍ୱରୂପରେ କୃଷ୍ଣଙ୍କୁ ଅଣିଲ ସେ ତୋଳି ।
କୃଷ୍ଣ ଅର୍ଜ୍ଜୁନ ଆଦର ମାତଳୀ ସାରଥି
ଜଳଧର ବ୍ୟୂହରୁ ସେ ବାହାର ହୁଅନ୍ତି ।
ଜଳଧର ବ୍ୟୂହେ ଥାଇ ସେ ସମର କଲେ
ତିନ ଅରବୁଦ ଯୋଦ୍ଧା ସମରେ ପଡ଼ିଲେ ।
ବିଷମ ପ୍ରହାର ପାଇ ପଳାଇଲେ ଆଟ
ବ୍ୟୂହଭେଦ ବାହାରିଲେ ସରସ୍ୱତୀ ତଟ ।
କୃଷ୍ଣ ଅର୍ଜ୍ଜୁନ ମାତଳି ବୃଷ୍ଣିକ ଆସେନ୍ତି
ଭେଟିଲେ ସେ ନନ୍ଦଘୋଷ ରଥ ଥିଲା ଯହିଁ ।
ନନ୍ଦଘୋଷ ରଥ ଘେନି ହନୁ ଅଛି ରହି
ଅର୍ଜ୍ଜୁନକୁ ବେଢ଼ାକରି ପ୍ରବେଶିଲେ ଯାଇଁ ।
ଜଳଧର ବ୍ୟୂହ ଯୁଦ୍ଧ ଅସମ୍ଭବ କଥା
ଏହା କହିବାକୁ ମୋର କାହିଁ ବା ଯୋଗ୍ୟତା
ଅଭୟ ମାତଙ୍ଗ ମାତଗୋ ନମସ୍ତେ ଶାରଦା
ବାଳକା ରୂପକୁ ଧରି ଭୁଞ୍ଜି କରୁ ଖେଳା ।
ମଳୟ ବସନ୍ତ ମାତଃ ଅଟୁ ତୁ ମୋହିନୀ
ଶରଣ ରକ୍ଷିଣୀ ମାତ ଜଗତଜନନୀ ।
ଅବଶ୍ୟ ହୁଅଇ ସିଦ୍ଧ ଯାହାର ବଚନେ
ଅନୁଗ୍ରହ ସାଧକଙ୍କ ଭାବ ପଞ୍ଚମନେ ।
ପଣ୍ଡିତ ଧୀରଜନଙ୍କ ଚରଣେ ଆରାଧି
ସର୍ବମଙ୍ଗଳା ଦେବୀଙ୍କୁ ବିନୟେ ପ୍ରବୋଧି ।
ଅଦୃଷ୍ଟଙ୍କ ଦୃଷ୍ଟି ମୁହିଁ କରାଇଲ ଆଣି
ପ୍ରତ୍ୟକ୍ଷେ କହିଲେ ମୋତେ ଝଙ୍କଡ଼ବାସିନୀ
କୃପାଜଳ ନନ୍ଦନୀ ଗୋ ସେବା ତୋର ପାଦେ
ଶୂଦ୍ରମୁନି ପଦ କହେ ଶାରଳା ପ୍ରସାଦେ ।
ଦ୍ରୋଣପର୍ବ ଲେଖିବାକୁ ପାରନ୍ତି କି ଭାବ
ଯାହା ଆଜ୍ଞାକଲେ ମୋତେ ସେ ଶାରଳାଦେବୀ
ଜନ୍ମରୁ ମୂରୁଖ ମୁହିଁ ପଢ଼ିନାହିଁ ବିଦ୍ୟା
ନ ଜାଣଇ ଜପ ମନ୍ତ୍ର ହୃଦଇ ମୁଁ ସିଦ୍ଧା ।
ପରମ ସାଧବୀ ସେହୁ ପରଦୁଃଖେ ଦୁଃଖୀ
କାମିନୀଙ୍କ କାମସେଣା ପ୍ରତ୍ୟକ୍ଷେ କାମାକ୍ଷୀ ।
ସେ ମହାମାୟୀ ପ୍ରସାଦେ ମନେ ଯା ସ୍ଫୁରଇ
ମାନକଳ୍ପବଟ ତଳେ ବସି ତା ଲେଖଇ ।
ବିଷ୍ଣୁପୁରାଣ ଗରୁଡ଼ ମାର୍କଣ୍ଡ ପୁରାଣ
ଶିବପୁରାଣ ନାରଦ ପୁରାଣ ଯେ ପୁଣ ।
ବାମନ ବରାହ ଆଦ କୂରୁମ ପୁରାଣ
ନୃସିଂହ ମତ୍ସ୍ୟ ବଉଦ୍ଧ କଳଙ୍କି ଯେ ପୁଣ ।
ଏହି ଆଦ ଅଷ୍ଟାଦଶ ପୁରାଣରେ ସାର
ଅଷ୍ଟାଦଶ ପର୍ବ ମହାଭାରତ ପ୍ରଚାର ।
ଏତେକକୁ ଆଜ୍ଞାକଲେ ଦେବୀ ନିରଞ୍ଜନା
ତେଣୁ ବୋଲଇ ଶାରଳାଦାସ ଶୂଦ୍ର ମୁନି ।

---

## ଅଭିମନ୍ୟୁ ଗର୍ଭ ମଧ୍ୟରେ ଥାଇ ଚକ୍ରବ୍ୟୂହ ଭେଦ ଶ୍ରବଣ ଓ ସେନାପତି ହୋଇ ପ୍ରଥମ ଦ୍ୱିତୀୟ ଦ୍ୱାର ଜୟ ଏବଂ ଜୟଦ୍ରଥର ଶିବଙ୍କ ଠାରୁ ବରପ୍ରାପ୍ତି

ଅଗସ୍ତିଙ୍କୁ ପୃଚ୍ଛାକଲେ ମନୁ ନରଗଣ
ଜଳଧର ବ୍ୟୂହ କଥା କଲ ହେ ବର୍ଣ୍ଣନ ।
କୁଟେ ଯୁଦ୍ଧକଲେ ଦ୍ରୋଣ ଚକ୍ରବ୍ୟୂହ କରି
ପାର୍ଥ ବିନା ଯୁଧିଷ୍ଠିରଙ୍କୁ ଧରିବେକ ବୋଲି ।
ଚକ୍ରବ୍ୟୂହ କଥା ମୋତେ କହିବା ବିଶେଷ
କୋଟିକଳ୍ପ ପାପ ତେଜି ଶୁଣି ହେବ ତୋଷ ।
ବଦନ୍ତି ଅଗସ୍ତି ମୁନି ଶୁଣ ମହାରାଜ
ଶ୍ରୀମହାଭାରତ ଶୁଣି ପାପ ତାପ ତେଜ ।
ଏକମନ ହୋଇ ଶୁଣ ଶ୍ରୀ ମହାଭାରତ
ଦେହାନ୍ତର କହେ ଯାଇ ପାଣ୍ଡବ ଅଗ୍ରତ ।
ଚକ୍ରବ୍ୟୂହ କୋଟି ଯେ ରଚିଲେ ଗୁରୁ ଦ୍ରୋଣ
ଭେଦନ୍ତା ନାହିଁ ତାହାକୁ ଏ ତିନିଭୁବନ ।
ଡଗର ମୁଖୁଁ ଏସନ ବାରତାକୁ ଶୁଣି
ଯୁଧିଷ୍ଠିରଦେବ ଆଶ୍ଚର୍ଯ୍ୟ ହୋଇଲେକ ପୁଣି ।
ବୋଇଲେ ବାବୁରେ ଶୁଣ ବୀର ବୃକୋଦର
ଚକ୍ରବ୍ୟୂହ ବୋଲି ତୁହ୍ମ ଜାଣୁ କି ପ୍ରକାର ।
ସେ ଚକ୍ରବ୍ୟୂହ ଭେଦନ୍ତା ମହୀରେ କେ ନାହିଁ
ଆହ୍ମ ମଧ୍ୟେ କିଏ ତହିଁ ସମର୍ଥ ଅଟଇ ।
ପ୍ରଥମ ଦ୍ୱାରେ ଅଛନ୍ତି ଦ୍ରୋଣ ସେନାପତି
କାଳଦଣ୍ଡ ପ୍ରାୟେ ଅଟେ ତାଙ୍କ ଶରଶକ୍ତି ।

ସମ୍ମୁଖେ ପଡ଼ିଲେ ତାଙ୍କୁ କିଏ ବଞ୍ଚିବ
ଏହା ଚିନ୍ତି ମନରେ ଝୁରନ୍ତି ଧର୍ମଦେବ ।
ଭୀମସେନ ବୋଲେ ତୁମ୍ଭେ ଶୁଣ ଦେବରାୟ
ତା ଭେଦିବାକୁ ସମର୍ଥ କୃଷ୍ଣ ଧନଞ୍ଜୟ ।
ଦେବ ଦାନବେ ଅଜଣା ନର କେଉଁ ଛାର
ଚକ୍ରବ୍ୟୂହ ଶୁଣିନାହିଁ ଦୁଇକର୍ଣ୍ଣ ମୋର ।
ଶୁଣିଣ ଧର୍ମ ରାଜନ ହୋଇଣ ଚିନ୍ତିତ
ନକୁଳ ପୁଚ୍ଛିଲେ ତୁ କି ଜାଣୁରେ ବୃତ୍ତାନ୍ତ ।
ନକୁଳ ବୋଲଇ ଦେଖିନାହିଁ ମୁଁ ନୟନେ
ପାଇନାହିଁ ଏହି ବିଦ୍ୟା ଶୁଣିନାହିଁ କାନେ ।
ଏହି ରୂପେ କଥାବାର୍ତ୍ତା ହେଉଁ ଝରଝାଇ
ଶଙ୍ଖ ଶବ୍ଦ ଯୁଧିଷ୍ଠିଙ୍କ କର୍ଣ୍ଣରେ ସମ୍ଭାଇ ।
ପାର୍ଥ ଶଙ୍ଖଧ୍ୱନି ପ୍ରାୟ ଶୁଭିଲା ତୁରିତ
ତହୁଁ ଧର୍ମ ଦେବଙ୍କର ଫିଟିଲା ଆରତ ।
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ନିକଟରେ ଅଭିମନ୍ୟୁ ମିଳିଲେକ ଜବ ।
ପାଦପଦ୍ମେ ଶତ ଶତ ହୋଇ ପରଣାମି
ପଚାରିଲ କିସପାଇଁ ବିଷାଦିତ ସ୍ୱାମୀ ।
ଯୁଧିଷ୍ଠିର କୋଳେ ନେଇ ଧଇଲେ ନନ୍ଦନ
ବୋଇଲେ ଶୁଣରେ ସୁତ ଯୁଦ୍ଧର ଆଖ୍ୟାନ ।
ଚକ୍ରବ୍ୟୂହ ବୋଲି ବ୍ୟୂହ ପାତିଅଛି ଦ୍ରୋଣ
ତାକୁ ଭେଦିବାକୁ ଶକ୍ୟ କାର ନାହିଁ ଜାଣ ।
ଅଭିମନ୍ୟୁ ବୋଲେ ଏବେ ଶୁଣ ଦେବସ୍ୱାମୀ
ମୋ ଶିରେ ମୁକୁଟବାନ୍ଧ ହେବ ବ୍ୟୂହଗାମୀ ।
ମୁହିଁ ଚକ୍ରବ୍ୟୂହ ଆଜ ଭେଦିବଇଁ ସତ୍ୟେ
ମୋର ସଙ୍ଗେ ରହିଥିବ ତୁମ୍ଭେ ଯେ ସବହେଁ
ତୁମର ବଚନ ଶୁଣି ହସିଲେ ରାଜନ
ଷୋଡ଼ଶ ବଷର ମାତ୍ର ଅଟୁ ତୁ ନନ୍ଦନ ।
ଆମ୍ଭେ ସେନାପତି ତୋତେ କରିବା କେମନ୍ତେ
କାହୁଁ ଜାଣିବୁ ତୁ ବ୍ୟୂହଭେଦ କଥା ଯେତେ
ଯୁଧିଷ୍ଠି ଦେବଙ୍କଠାରୁ ଏହି କଥା ଶୁଣି
ବୋଲଇ ଶୁଣିମା ହେଉ ନୃପ ଚୂଡ଼ାମଣି ।
ଗର୍ଭେ ଥିଲି ମୁଁ ମକର ଶୁକ୍ଳ ତ୍ରୟୋଦଶୀ
ଅର୍କବାର ପୁନର୍ବସୁ ମିଥୁନ ଯେ ରାଶି ।
ତୈତିଳ ନାମେ କରଣ ଆୟୁ ନାମେ ଯୋଗ
ପିତାମାତା ହେଉଥିଲେ ନାନାବିଧ ପ୍ରସଙ୍ଗ ।
ମାତା ଗର୍ଭେ ହୋଇଥିଲି ମୋତେ ସାତମାସ
ପିତାଙ୍କୁ ପୁଚ୍ଛିଲେ ମାତା ହୋଇ ହସ ହସ ।
କୌଣସି ଗୋଟିଏ କଥା କହ ମୋର ଆଗ
ତାହା ଶୁଣିବାକୁ ମୋର ହେଉଛି ସରାଗ ।
ମାତାର ବଚନେ ପିତା ଅତି ତୋଷ ହୋଇ
ବୋଇଲେ କହିବ ଯାହା ଅଛି ମୁଁ ନର୍ଭାଇ ।
ସୁଭଦ୍ରା ବୋଇଲେ ସ୍ୱାମୀ ଶୁଣ ମୋର ତଥ୍ୟ
ଅନ୍ୟ କଥାରେ ମୋହର ନାହିଁ ଅଭିମତ ।
ମହାଭାରତ ବୋଲିଣ ହୋଇବ ସମର
ଏଥିର ଚରିତ ଦେବ କୁହ ମୋ ଆଗର ।
କହନ୍ତି ପିଅର ଯାହା ଶୁଣନ୍ତି ଜନମା
ଅଷ୍ଟାଦଶ ଦିବସର ବ୍ୟୂହପର୍ବ ଭିନ୍ନ ।
ଶକଟ ଯେ ଜଳଧର ଶର ଆର୍ଦ୍ରବଳୀ
ଘୋର ଅନ୍ଧାର ଆବର ଶୂନ୍ୟର ହିବଳ ।
ଉଲୁକ ସାଗର ବ୍ୟୂହ ଗମନାଗମନ
ଯାହାର ଯେମନ୍ତ ଭେଦ କହିଲେ ସେମାନ ।
ସମସ୍ତ କହିଲେ ପିତା ମାତାଙ୍କ ସମକ୍ଷେ
ଚକ୍ରବ୍ୟୂହ କଥାଟିକ କହିଲେ ସେ ପକ୍ଷେ ।
ପ୍ରବେଶିବା କଥାଟିକ ପିତାଥିଲେ କହି
ସକଳ ଶୁଣିଲି ମୁହିଁ ଗର୍ଭ ମଧ୍ୟେ ରହି ।
ତୃତୀୟ ପ୍ରହର ଯେବେ ହୋଇଥିଲା ଗତ
ମାତା ମୋର ନିଦ୍ରାଗଲେ ସେ ନିଶା ପାହାନ୍ତି ।
ମାତାଙ୍କ ନିଦ୍ରାରେ ମୁହିଁ ନିଦ୍ରାଗଲି ପୁଣି
ବାହାରିବା କଥା ତେଣୁ ନ ପାରିଲି ଶୁଣି ।
ଏଣେ ଚକ୍ରବ୍ୟୂହ ମାତ୍ର ପାରଇ ମୁଁ ଭେଦ
କପର ମୁଁ ବାହୁଡ଼ିବ କହ ମୋତେ ବୁଦ୍ଧି ।
ଅଭିମନ୍ୟୁର ମୁଖରୁ ଏ ବଚନ ଶୁଣି
ବୃକୋଦର ଧାଇଁକାରେ ଉଠେ ଶିରଝୁଣି ।
ବୋଇଲା ଯେ ଆରେ ବାବୁ ନ ଭାବ ତୁ ତାହା
ତେର ଅକ୍ଷୌହିଣୀ ଦଳ ସୈନ୍ୟ ହେବ ସାହା ।
ବ୍ୟୂହ ଭାଜିଲେ ଜଣିବୁ ଛାର ଦ୍ରୋଣ କର୍ଣ୍ଣ
ଶଲ୍ୟ ଦୁର୍ଯ୍ୟୋଧନ ଆଦି ନ ହୁଅନ୍ତି ଗଣ୍ୟ ।
ଝରଝାଇ ମିଳ ତହିଁ କରୁଥିବୁ ରଣ
ବାହୁଡ଼ା ବେଳକୁ ପ୍ରବେଶିବେ ଅରଜୁନ ।
ଏତେ ବୋଲି ଭୀମସେନ କୋପେ ପରଜ୍ୱଳ
ଆକାଶକୁ ଫିଙ୍ଗି ଗଦା ଧଇଲା ସେ ତୋଳ ।

ବୃକୋଦର ମୂରତି ଯେ ଦେବେ ଅଗୋଚର
ଶୁଣି ଶଙ୍ଖଧ୍ୱନି କଲେ ସହଦେବ ବୀର ।
ଚକ୍ରବ୍ୟୂହ ଭେଦିବାକୁ ତୁ ଯେବେ ସମର୍ଥ
ବାହୁଡ଼ା ବେଳକୁ ପ୍ରବେଶିବେ କୃଷ୍ଣପାର୍ଥ ।
ସହଦେବ ମୁଖୁଁ ଯହୁଁ ଏମନ୍ତ ଶୁଣିଲେ
ଏକାଦଶ ଅକ୍ଷୌହିଣୀ ବଳ ସଜ କଲେ ।
ତିନିକୋଟି ରଥ ପାଞ୍ଚକୋଟି ଦନ୍ତା ହସ୍ତୀ
ନବକୋଟି ଅଶ୍ୱ ତେରକୋଟି ଯେ ପଦାତି ।
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ଏକାନ୍ତ ଯେସନେ ସଜ ହୋଇଲେକ ସର୍ବ ।
ସଜ ହୋଇଣ ସରବେ ବାହାର ହୁଅନ୍ତି
ସତ୍ୟ ଯୁଗର ଅଟଇ କେତନ ସାରଥି ।
ତାହାଙ୍କୁ ଚାହିଁଣ ଅଭିମନ୍ୟୁ ବୀର କହି
ଧବଳ ରଥ ମୋ ସାଜିଆଣ ବେଗେ ଯାଇ ।
ଅଭିମନ୍ୟୁ କଥା ଶୁଣି ସାରଥି ଚଳିଲା
ସମର ରଥ ମଣ୍ଡନ କରଣେ ଲଗିଲା ।
ଯୁଧିଷ୍ଠି ଭୀମ ନକୁଳ ବୀର ସହଦେବ
ଏହାଙ୍କୁ ବୁଝାଇ ଚଳେ ଅର୍ଜ୍ଜୁନ ସମ୍ଭବ ।
ଆଜ୍ଞା ପରମାଣେ ବିଶ୍ୱାବସୁ ସୁତ ଯାଇଁ
ଅଷ୍ଟରତ୍ନେ ଅଭିମନ୍ୟୁ ରଥକୁ ମଣ୍ଡାଇ ।
ଶୁଦ୍ଧ ସ୍ଫଟିକରେ ଅଟେ ତାର ସ୍ୱରସ୍ତମ୍ଭ
ଅଷ୍ଟରତ୍ନରେ ମଣ୍ଡିବି କରିଲା ଆରମ୍ଭ ।
ହୀରା ନବଲକ୍ଷ ତହିଁ ହୋଇଛି ମଣ୍ଡିଣି
ତେଜ ପ୍ରକାଶଇ ଯେହ୍ନେ ନବ ଦିନମଣି ।
ପାଟଛନ୍ଦ ରତ୍ନଅଛି ତହିଁ ଅପ୍ରମିତା
ତଥି ଉପରେ ଅଛଇ ଗଜର ମୁକୁତା ।
ସ୍ଫଟିକର କଳଶ ଯେ ଦିଶେ ଅତି ଉଷସ
ଝଲକଇ ଚଉକତି ମାଣିକ୍ୟର ଝସ ।
ତାହାର ଉପରେ ଶତ ଚାମର ମଣ୍ଡିଣି
ତା ସନ୍ନିଧେ ଲମ୍ବାଇଲେ ନେତର ପତନି ।
ଧବଳ ଶଙ୍ଖ ପରାୟେ ଯେଉଁ ସ୍ୱରହୟ
ବସନ୍ତ ମିଥୁନ ମାସେ ବକପକ୍ଷୀ ପ୍ରାୟ ।
ସେହି ଅଶ୍ୱକୁ ଯୋଜଣ କରି ସୁଯତନ
ଯୋଚିଲା ଉଦ୍ଭବରରେ ସାରଥି କେତନ ।
ଅଶ୍ୱହିଁ ଧବଳ ତାର ଚାମର ଶୁକଳ
ତେଣୁ ସେ ରଥର ନାମ ଅଟଇ ଧବଳ ।

ଆଦିତ୍ୟ ଉଦୟ କବା ହେଲା ସୋମବଂଶେ
ଆଦିନାମେ ଅଭିମନ୍ୟୁ ସେହିପରି ଦିଶେ ।
ସତ୍ୟଯୁଗର ସାରଥି ନାମ ତା କେତନ
ସେ ରଥ ମଣ୍ଡନକରି କରଇ ଗମନ ।
ଦାରୁକ ମାତଳି ଚନ୍ଦ୍ରଧ୍ୱଜ ନାରାୟଣ
ସୁମନ୍ତ କେତନ ପୁଣି ଅଟେ ଯେ ଅରୁଣ ।
ଏ ସପ୍ତ ସାରଥି ଯେବେ ରଥକୁ ବାହିବେ
ତ୍ରିଭୁବନେ କଣ୍ଟକରେ ବୁଲିଣ ଆସିବେ ।
ଏହି ରଥ ଧ୍ୱଂସ ନୁହେଁ କାଳ ଅବସାନେ
ସେହିପରି ଚିରଞ୍ଜୀବୀ ଯେ ଏ ସାରଥିମାନେ ।
ରଥ ହୟ ସାରଥି ଏ ତିନହେଁ ଅକ୍ଷୟ
ରଥୀମାର ପୁନଃ ଜନ୍ମ ହୁଅଇ ଉଦୟ ।
ସୂର୍ଯ୍ୟସାରଥି ଅରୁଣ ଇନ୍ଦ୍ରର ମାତଳି
କାମଦେବର ସାରଥି ଚନ୍ଦ୍ରଧ୍ୱଜ ବଳୀ ।
ଦଶରଥର ସାରଥି ସୁମନ୍ତ ବୋଲାଇ
ଅଭିମନ୍ୟୁର ସାରଥି କେତନ ଅଟଇ ।
ଧନଞ୍ଜୟର ସାରଥି ଦେବ ନାରାୟଣ
ବାସୁଦେବର ସାରଥି ଦାରୁକ ଯେ ଜାଣ ।
କସ କହିବ ସାରଥିମାନଙ୍କ ମହିମା
ଲେଖନ୍ତେ ଅନ୍ତ ନ ମିଳେ ଏହାଙ୍କର ସୀମା ।
ଧବଳ ରଥକୁ ଯେନି ବିଶ୍ୱାବସୁ ସୁତ
ସମ୍ମୁଖେ କଲେ ଉଭା ଦେଖେ ଅଭିମନ୍ୟୁ ।
ଲକ୍ଷେ ବ୍ରାହ୍ମଣ କଲେ ତହିଁ ବେଦଧ୍ୱନି
ସଜ ହୋଇଲା କୁମର ଶୁଭବେଳ ଯେନି ।
ତାରକାଯୁଦ୍ଧେ କାର୍ତ୍ତିକ ଯେଉଁ ରୂପେ ଦିଶି
ତେସନେକ ଅଭିମନ୍ୟୁ ତେଜ ପରକାଶି ।
ଦିବ୍ୟ ଅଳଙ୍କାରେ ବେଶ ସୁଭଦ୍ରାର ବଳା
କାମହୁଁ ବେଶି ପଟାନ୍ତର ବର୍ଣ୍ଣ ଅଟେ ଧଳା ।
ଶ୍ରୀକୃଷ୍ଣଙ୍କର ଭଗ୍ନୀଜ ସୁଗୁଣରେ ସିନ୍ଧୁ
ପାଣ୍ଡବକୁଳ ରକ୍ଷଣେ ମହିମା ତା ସାଧୁ ।
ରଣବେଶ ହୋଇ ବୀର ବସେ ଯାଇ ରଥେ
ଉଠିଲା ରଥ ତକ୍ଷଣ ଗଗନର ପଥେ ।
ନବସସ୍ତ୍ର ଧନୁବଳ କଣେ ଆଦ୍ରୀବଳ
ହୀରାମାଳା ପଦ୍ମରାଗ ଶୋଭଇ ବୋହଲ ।
ପିତା ସମର୍ପିଣ ଥିଲେ ଧନୁଶର ଆଦ
ଗୁରୁନାଶେ ଯାହା ଦେଇଥିଲେ ଜମ୍ବୁଭେଦ ।

ପ୍ରଳୟ କାଳେ ଦିଶନ୍ତି ଯେହ୍ନେ ନିରଞ୍ଜନ
ଅଭିମନ୍ୟୁ ସେହିପରି ଦିଶଇ ଶୋଭନ ।
ଦିବ୍ୟ ଅବତାର ହୋଇ ବସେ ଯାଇ ରଥେ
ବାଣ ଧରିଣ କେତନ ବସିଲା ସଙ୍କେତ ।
ବାମଦିଗେ ବୃକୋଦର ଦକ୍ଷିଣେ ନକୁଳ
ପଛେ ରହିଛନ୍ତି ସହଦେବ ମନ୍ତ୍ରୀବର ।
ଅନ୍ୟବୀର ଯୋଦ୍ଧା ପୁଣି ଯେତେ ମହୀପାଳେ
ଚାରିଦେଶେ ଗମନ୍ତି ସେ ଯୁଧିଷ୍ଠିରଙ୍କମେଳେ ।
ଆଗୁଆଣି ହୋଇଛନ୍ତି ଦ୍ରୁପଦ ବିରାଟ
ପାଞ୍ଚଲକ୍ଷ ଯୋଦ୍ଧା ଘେନି ହୋଇ ମହାହୃଷ୍ଟ ।
ବାଜଇ ଦୁନ୍ଦୁଭି ଭଙ୍ଗେ ଟମକ ନିଶାଣ
ଥାଟ ଚଳିବାର ଯହୁଁ ଦେଖେ ଗୁରୁ ଦ୍ରୋଣ ।
ଜନସାଗର ଯୋଦ୍ଧାଙ୍କୁ ରଖିଲା ଆଗରୁ
ଦ୍ରୁପଦ ବିରାଟ ତାହା ଦେଖିଲେକ ଦୂରୁ ।
ଜମ୍ବୁଦୈତ୍ୟ ନିବାରଣେ ଯେହ୍ନେ ମଘବାନ
ତେସନେ ଶୋଭନ୍ତି ଭରଦ୍ୱାଜଙ୍କ ନନ୍ଦନ ।
କାନ୍ତି ଦିଶଇ ଯେସନେ କାଳାନଳ ବହ୍ନି
ତର୍ଜ୍ଜିକ ଯୁଦ୍ଧେ ନାହାନ୍ତି କୃଷ୍ଣ ଫାଲଗୁନ ।
ଦ୍ରୋଣେ ଦେଖି ସାରଥିକୁ ପୁଚ୍ଛେ ଅଭିମନ୍ୟୁ
କେତନ ବୋଇଲା ଏହି ଭରଦ୍ୱ ଜ ସୂନୁ ।
ପର୍ଶୁରାମଠାରୁ ବିଦ୍ୟା ପାଇଛନ୍ତି ସାଧି
ଚକ୍ରବ୍ୟୂହ ରଚିବା ଯେ ଏହାଙ୍କର ବୁଦ୍ଧି ।
ଅଭିମନ୍ୟୁ ବୋଲେ ଆଗେ ଜିଣିବା ଏହାକୁ
ଆହେ କେତନ ମୋ ରଥ ନିଅ ତା ଆଗକୁ ।
ଗୋକ୍ଷୀର ଯେ ଶଙ୍ଖ ପଦ୍ମ ଶ୍ୱେତହସ୍ତ ସ୍ୱର
ଯାଅ ବୋଲନ୍ତେ ତଳନ୍ତି ସ୍ୱର୍ଗ ମର୍ତ୍ତ୍ୟପୁରୀ ।
ଯାଅ ବୋଲି ଆଜ୍ଞା ଯହୁଁ ଦେଲାକ ସାରଥି
ପ୍ରଥମ ହାରେ ଭେଟିଲା ଦ୍ରୋଣଙ୍କର କଟ ।
ଯେଉଁରୂପେ କ୍ଷୁଦ୍ର ତାରା ଆକାଶୁଁ ଖସଇ
ତେମନ୍ତ ଦ୍ରୋଣଗୁରୁଙ୍କୁ ସେ ରଥ ଭେଟଇ ।
ଅଦ୍ଭୁତ ରଥ ଦେଖି ପଚାରନ୍ତି ଦ୍ରୋଣ
ନିସାଟୀ ସମରମୁଖେ କଲାକ ପ୍ରୟାଣ ।
ଦ୍ରୋଣଙ୍କ ସମ୍ମୁଖରେ ତହୁଁ ସାରଥି ବୋଲଇ
ପାର୍ଥସୁତ ଅଭିମନ୍ୟୁ ଏହଟି ଅଟଇ ।
ଅର୍ଜ୍ଜୁନଠାରୁ ଅଧିକ ଦେଖି ତେଜୋବନ୍ତ
ପ୍ରଶଂସା କରିଲେ ତାକୁ ଭରଦ୍ୱାଜସୁତ ।

ତାହାଶୁଣି ଅଭିମନ୍ୟୁ ପେଷି ସ୍ୱରଶର
ଶରପାଇ ଦ୍ରୋଣପାଦେ କଲା ନମସ୍କାର ।
ତାହାଦେଖି ଦ୍ରୋଣଗୁରୁ ହୋଇ ତୋଷ ଚିତ୍ତ
ଅଭିମନ୍ୟୁକୁ କଲ୍ୟାଣ କରିଲେ ବହୁତ ।
ସେହି ସ୍ୱରିବାଣେ ଗୁରୁ ମତିଭ୍ରମ ହୋଇ
ବୋଲଇ ଯାକୁ ଜିଣିବା କଠିନ ଅଟଇ ।
ଏହି ରୂପରେ ବିରୁଦ୍ଧ କରୁଛନ୍ତି ଗୁରୁ
ନିକ୍ରୋଧ ବାଣ ପେଷେ କୁମର ଦୂରରୁ ।
ଯେମନ୍ତେ ନିର୍ଘାତ ଆସି ପଡ଼ଇ ଗଗନୁ
ସେବାଣେ ବ୍ୟୂହ ମନ୍ଥନ କଲା ଅଭିମନ୍ୟୁ ।
ଅଭିମନ୍ୟୁଙ୍କର ବାଣ ଆଘାତରେ କରି
ଦ୍ରୋଣଙ୍କର ଧ୍ୱଜ ଅଶ୍ୱ ଗଲେ ଅପସରି ।
ଦ୍ରୋଣଦ୍ୱାର ଗ୍ରହିବ୍ୟନ୍ତେ ଧାଇଁଲା ପାବନ
ବହୁଯୋଦ୍ଧାଙ୍କୁ ପ୍ରହାର କଲେ ଗଦାସେନ ।
ପାଞ୍ଚରଥୀ ପଛୁ ଦ୍ରୋଣ ବଳ ଗଲା ଭଜି
ବିହରନ୍ତି ପାଣ୍ଡବେ ଯେ କ୍ରୋଧେ ଗଜରାଜ ।
ସମରରେ ଡାକଦେଲା ସୋମଦତ୍ତ ରଥୀ
ବ୍ୟୂହଭେଦ କଲାଇଲୁ ରେ ଦ୍ରୋଣଦୁର୍ମତି ।
ଶୁଣିକରି ମହାକ୍ରୋଧ ହୋଇ ଦ୍ରୋଣଗୁରୁ
ବୋଇଲେ ବାଳକ ବୋଲି ହେଳାଯୁଦ୍ଧ କରୁ
ବସିଲୁକ ମହାବେଗେ ବସ୍ତ୍ର ଭଗ୍ନ ଦେଖି
ନାରାଚ ବନ୍ଧିଲେ ଗୁରୁ କ୍ରୋଧ ନ ରଖି ।
ବଜ୍ର ସମାନ ବନ୍ଧିଲେ ପଞ୍ଚଦଶ ବାଣ
କୋପେ ମହାମୂର୍ତ୍ତି ଧରି ଉଭାହେଲେ ଦ୍ରୋଣ ।
ଯେଉଁରୂପେ ଗଗନରୁ ପଡ଼େ ଗିରିବର
ସେହି ପ୍ରକାରେ ପଡ଼ିଲା ଦ୍ରୋଣଙ୍କର ଶର ।
ବେଗଭରେ ଅଭିମନ୍ୟୁ ପେଷେ ତୀକ୍ଷ୍ଣମୁନା
ଶିରଶ୍ଛେଦ ଭେଦଗଲା ଦ୍ରୋଣଙ୍କର ସେନା ।
କ୍ଷିପନ୍ତି ରୁଧିର ଗଳେ ଦ୍ରୋଣଙ୍କ ଅଙ୍ଗରେ
ଜଳଧାର ବହେ ଯେହ୍ନେ ବରଷା କାଳରେ ।
ବତିଶ ନାରାଚ ଦ୍ରୋଣ କରିଲେ କ୍ଷେପଣ
ମହାଅନଳ ସମାନେ କରିଲେ ଗମନ ।
ସେ ମହା ଅନଳଶର ସାରଥିକୁ ଭେଦେ
ଅର୍ଜ୍ଜୁନନନ୍ଦନ ତାହା କଣ୍ଠରେ ଛେଦେ ।
ଆବରଣ ଶରକୁ ଯେ ପେଷିଲେକ ଗୁରୁ
ନ ପଡ଼ୁ ଛେଦିଲା ଶର ଅଭିମନ୍ୟୁ ଦୂରୁ ।

ଆକାଶେ ଥାଇ ଦେଖନ୍ତି ଦିଗପାଳଗଣ
ଦ୍ରୋଣ ଅଭିମନ୍ୟୁ ଦୁହେଁ ରଣରେ ସମାନ ।
ଦ୍ରୋଣଙ୍କର ଶର କେବେ ହୋଇଯାଏ ବ୍ୟର୍ଥ
ମାତ୍ର ଅଭିମନ୍ୟୁ ଶର ନ ଟଳେ କଞ୍ଚିତ ।
ଏକ ଏକ ପ୍ରହାରକେ ପଞ୍ଚବିଂଶ ରଥୀ
ସମରେ ପଡ଼ଣ ସେହୁ ଉବୁତ ନ ଯାନ୍ତି ।
ଭୀମସେନ ସହଦେବ ନକୁଳ ଏ ତିନି
ସମରେ ପ୍ରହାର କଲେ ଅନେକ ସଇନ ।
ମେଦମାଂସେ ପରିପୂର୍ଣ୍ଣ ହେଲା ରଣସ୍ଥାନ
ଗହନ ରଣେ ଦାରୁଣ ନୁହେ ବେନି ସୈନ୍ୟ
ଦ୍ରୋଣ ଗୁରୁଙ୍କ ସମର ଅତି ଭୟଙ୍କର
ତାହା ସନ୍ଧି ବ୍ୟୂହ ମଧ୍ୟେ ଅର୍ଜୁନ କୁମର ।
ଦ୍ରୋଣଙ୍କ ସହିତ ଅଭିମନ୍ୟୁ ରଣକରେ
ଭୀମସେନ ସମାନ କେ ଅଛି ତ୍ରିଲୋକରେ ।
କୃତାନ୍ତକ ଜଣି ତାର ତେଜ ବଳ ଶିଳ୍ପ
ବ୍ୟୂହ ଭାଙ୍ଗି ଦ୍ରୋଣ ପେଲି ଭିତରେ ପଶିଲା
ବୃନ୍ଦ ଅର୍କଦେଶ ରାଜା ମଦନ ନୃପତି
ସେ ରାଜାର କୂଳେ ଛନ୍ତି ଅଶୀସହସ୍ର ରଥୀ ।
ଥିଲବେଳେ ଦ୍ରୋଣସଙ୍ଗେ ସେହି ସୈନ୍ୟଘେନି
ତାହାଙ୍କୁ ମର୍ଦ୍ଦନ କଲା ପାଣ୍ଡବପାବନି ।
ମତ୍ତଗଜ କରେ ଧରି କଟ୍ଟଡ଼ଇ ଭୀମ
ବଳଦେଲା କଷ୍ଟିତରେ ଦାରୁଣ ସଂଗ୍ରାମ ।
ବାମକରେ ଗଦାଧରି ପ୍ରହାରିଲା ତୋଳି
ମଦନ ନୃପତି ପଡ଼ି ହୋଇଗଲା ଧୂଳି ।
ରାଜା ପଡ଼ିବାର ଦେଖି ପାଣ୍ଡବଦଳ
ବେଢ଼ିଲେ ଭୀମସେନକୁ ପିଟିଲେ ପ୍ରବଳ ।
ରେ ରେକାର ଶବଦରେ କମ୍ପଇ ଆକାଶ
ଗଦା ପ୍ରହାରେ ଅନେକ ଦଳ କଲା ଧ୍ୱଂସ ।
ଦ୍ରୋଣ କର୍ଣ୍ଣ ନ ସହନ୍ତି ଯାହାର ସମର
ତା ସମରେ କେ ରହିବ ଆନ ବୀର ସ୍ଥିର ।
ଅଶୀ ଅଶୀ ସହସ୍ର ସେ ଯୋଦ୍ଧା ଆଉ ହସ୍ତୀ
ବେନି ସଙ୍ଗ ସମରରେ ନିଃଶେଷ କରନ୍ତି ।
ଦମନ ଦଳ ଧ୍ୱଂସନ ଅଟଇ ତା ବାହୁ
ଭରତେ ହୁସେଇ ମଲ୍ଲ ଭୀମ ମହାବାହୁ ।
ସୈନ୍ୟଦଳ ପଡ଼ନ୍ତେ ଦେଖିଲେ ଦ୍ରୋଣଗୁରୁ
ସମ୍ଭାଳି ନ ପାରେ ଏକା ପାର୍ଥ ରଣ କରୁ ।
ଦମନଦଳ ପଡ଼ିଲେ ଯହୁଁ ଭୀମରଣେ
ପଳାଇଲେ ହାରି ସ୍ଥିତି ନ ରହିଲେ ଜଣେ ।
ସୈନ୍ୟଦଳ ପଡ଼ିଯାନ୍ତେ ଗୁରୁ ହେଲେ ଏକା
ପ୍ରଥମ ଯୁଦ୍ଧରେ ଦ୍ରୁତେ ହୋଇଲେ ଚାଟକା ।
ସମସ୍ତରେ ଛିଦ୍ରପାଇ ସୁଭଦ୍ରାର ବଳା
କୋପେ ନାଗର ବନ୍ଧିଲା ନାମେ ମହାଖେଳା
ଡାକନ୍ତି ପ୍ରେତ ପିଶାଚୀ ଆବର ରୁମୁଣ୍ଡା
ଖାଙ୍କରକେଶୀ ଦେଖାଏ ଦିଶନ୍ତି ପ୍ରଚଣ୍ଡା ।
ପିଶାଚୀ ନାଗର ଯହୁଁ ବିନ୍ଧେ ଅଭିମନ୍ୟୁ
ରୋମ ରୋମକେ ଭେଦିଲା ଦ୍ରୋଣଙ୍କର ତନୁ ।
ରୁଧିରରେ ଜରଜର ଦ୍ରୋଣଙ୍କର କାୟ
ଭୁଜ ଚରଣୁ ବହଇ ଜଳଧାର ପ୍ରାୟ ।
ବଳହୀନ ହେଲେ ଗୁରୁ ନାହିଁ ଦୂରଦୃଷ୍ଟି
ଶର ମାଇଲେ ଶତ୍ରୁ କୁ ନ ପାରଇ ଭେଟି ।
ହା ବୁଡ଼ାଶର କୁମର ଦୁଷ୍ଟହେଲା ସ୍ଥିଡ଼ି
ଜ୍ଞାନହୀନ ହୋଇଣ ଗୁରୁ ରଥେ ଗଲେ ପଡ଼ି ।
ଦ୍ରୋଣଙ୍କ ସାରଥି ରଥ ନେଲା ଆଡ଼କରି
ହାରି ରଖି ନ ପାରିଣ ଚଳେ ଅପସରି ।
କେତନ ବୋଇଲା ବାଣ ବିନ୍ଧ ଅଭିମନ୍ୟୁ
ବେନିଖଣ୍ଡ କରି କାଟ ଦ୍ରୋଣଙ୍କର ତନୁ ।
ଅଭିମନ୍ୟୁ ବୋଲେ ଏହା ନୁହେ କ୍ଷତ୍ରିଧର୍ମ
ମୂର୍ଚ୍ଛିତ ଯୋଦ୍ଧା ଯେ ମାରେ ସେ ବଡ଼ ଅଧର୍ମ
ପିତାଙ୍କର ଗୁରୁ ଏହୁ ଥାଲୁ ଜନା ବର୍ତ୍ତି
କୃଷ୍ଣାର୍ଜୁନ ବଦରଣ ଯ୍ୟାଙ୍କୁ ଦେବେ ଶାସ୍ତି ।
ପ୍ରଥମ ଦ୍ୱାରରେ ଦଶସହସ୍ର ନୃପତି
ପଞ୍ଚସସ୍ର ହସ୍ତୀ ଦଶସହସ୍ର ପଦାତି ।
ଦ୍ରୋଣ ଯେ ଆବୋରିଥିଲେ କଉରବ ଥାଟ
ସବୁ ମଲେ ଦ୍ରୋଣ ଗଲେ ଫିଟିଗଲା ବାଟ ।
ଯେସନେ ସାଗର ବ୍ୟୂହ ରଚି ହଂସପନ୍ତି
ସୈନ୍ୟମଧ୍ୟେ ଅଭିମନ୍ୟୁ ତେସନ ଦିଶନ୍ତି ।
କ୍ଷେପିଥାନ୍ତି ଅଶ୍ୱ ଗଜ ହୋଇ ପରଚଣ୍ଡ
ଅଶ୍ୱ ଗଜ ସୈନ୍ୟ ମାରି କଲେ ମସିଗୁଣ୍ଡ ।
ସୈନ୍ୟ ସମ୍ମୁଖରେ ଯାଏ ଏକରଥ ଗଲା
କୁରୁସୈନ୍ୟ ଚନ୍ଦ୍ରପ୍ରାୟ ଦିଶଇ ଧବଳ ।
ପଞ୍ଚବିଂଶ ସସ୍ର ରାଜା ନଉସସ୍ର ହସ୍ତୀ
ଘେନିଣ ଦ୍ୱିତୀୟ ଦ୍ୱାରେ ଜୟଦ୍ରଥ ଅଛି ।

ଉତ୍କଷ୍ଟ ପିନ୍ଧି ହୀରା ମାଳା ମଣ୍ଡି ହୋଇ
କନ୍ଦର୍ପ ସଦୃଶେ ସିନ୍ଧୁରାଜା ବିକାଶଇ ।
ସାରଦେଶ ହସ୍ତରେ କୋଦଣ୍ଡ ଅଛି ଧରି
ସୈନ୍ୟଙ୍କ ସହ ଉଠିଲା ତତକ୍ଷଣେ ହୁଂକାରି ।
ଅଭିମନ୍ୟୁ ପଛକତ ଭୀମସେନ ଥିଲା
ମହାରଡ଼ି ଘାତ କରି ଆଗ ହୋଇଗଲା ।
କାଳଦଣ୍ଡ ସେହି ଜବା ବନେ ନାଶକର
ତେସନ ପ୍ରକାରେ ବଧେ ପାଣ୍ଡବ ସୁନ୍ଦର ।
ଶ୍ୟେନ ଦେଖି ପଳାବନ୍ତି ଯେସନେ ଆନ ପକ୍ଷୀ
ଭାଜିଗଲେ କଉରବେ ଭୀମସେନ ଦେଖି ।
ଲେଉଟିଣ ଲକ୍ଷେରାଉ ସେହି କ୍ରୁର ଖଡ୍ଗ
ପ୍ରହାର କଲେ ନେଇଣ ଭୀମସେନ ଅଙ୍ଗ ।
ପବନନନ୍ଦନ ଦେଖି ଘାତେ ବାମଅଙ୍ଗ
ପଡ଼ିଣ କୋଟି ଶାଳେଳୀ ହୋଇଗଲା ଭଙ୍ଗ ।
ଅସ୍ତ୍ର ଭାଙ୍ଗିବାର ଦେଖି ଭୀମସେନ ଉଠେ
ବେନି ଗଦା ବୁଲାଇଣ କୁରୁସୈନ୍ୟ ପିଟେ ।
ପର୍ବତ ଭାଙ୍ଗିବଏ ଯେଉଁ ମହାବଳୀ
ତା ଆଘାତେ ସବୁ ରଥ ହୋଇଗଲା ଧୂଳି ।
ଦଶସହସ୍ର ରଥୀ ସେହି ଜୟଦ୍ରଥ ଥିଲା
ବେଢ଼ିଣ ବୃକୋଦରଙ୍କୁ ବହୁଯୁଦ୍ଧ କଲା ।
ରଥ ହାଣ୍ଡୋଳାରେ ଭୀମ ଅତି ପରଚଣ୍ଡା
ରଥେ ରଥେ ପିଟିକରି କରିଦେଲା ଗୁଣ୍ଡା ।
ଅପାର ସଂଗ୍ରାମ ହେଲା ସେହି ରଣରଙ୍ଗ
ସମରେ ଅଭଙ୍ଗ ଅଟେ ଭୀମସେନ ଅଙ୍ଗ ।
ଖଡା ମୁଦୁଗର ଶେଲ ଅସିପଟ୍ଟ ଯାଠି
ଏକମୁଖ ହୋଇ ସର୍ବେ ଭୀମସେନେ ପିଟି ।
ଜୟଦ୍ରଥ ତେଜ ଅଟେ କାଳାନଳ ଜଣି
ସହସ୍ରେକ ରାଜା ସେହି ଉଠିଲେକ ପୁଣି ।
ମହା କୋଳାହଳ ହୋଇ ହେଲା ଘୋରରଣ
ତା ବିସ୍ତାର କହିବାକୁ କେ ସମର୍ଥ ପୁଣ ।
ନକୁଳ ସହଦେବର ଘୋରରଣ କଥା
ମହା ଭାରତ ଯୁଦ୍ଧରେ ସେହୁ ସାମରଥା ।
ନକୁଳ ସମର କରେ ଅଖିଳ ଗହନେ
ରଥ ଛକାକାରେ ତୋଳେ ତାର କୁଳମୁନେ
ଅନ୍ତରୀକ୍ଷେ ବୁଲାଇଣ ଦଅଇ ସେ ଫିଙ୍ଗି
ବହୁତ ଦୂରରେ ପଡ଼ି ତାହା ଯାଏ ଭାଙ୍ଗି ।

ଏହିପରି ରଣ ହୁଏ ହସ୍ତିପୁ ଦୁଆରେ
ମହା ମହା ବଳବନ୍ତ ପଡ଼ିଲେ ସମରେ ।
ଶର ପେଶେ ସହଦେବ ସମରରେ ପଶି
ଶରଜାଳରେ ଗଗନମଣ୍ଡଳ ନ ଦିଶି ।
ବଜ୍ରଠାରୁ ଅଧିକରେ ଅଟଇ ସେ ବାଣ
ନିର୍ଘାତ ପ୍ରାୟେ ପଡ଼ିଣ ସେନଇ ଯେ ପ୍ରାଣ ।
ବିଶେଷରେ ମନ୍ତ୍ରୀ ସେହି ପରେ ସବୁ ଭେଦ
ଆକାଶରୁ ବାଣ ପଡ଼ି ସବୁଦିଏ ଛେଦ ।
ରଥ ଗଜ ପଦାତିକ ଯେ ମୁଖେ ପଡଇ
ବିମୁଖ ହୋଇଣ ସର୍ବେ ଯାଆନ୍ତି ପଳାଇ ।
ଶାକଲ୍ୟ ଦେଶର ରାଜା ମନ୍ମଥ ନୃପତି
ମନ୍ତ୍ରୀକୁ ଓଗାଳେ ସେହି ପାଞ୍ଚସହସ୍ର ରଥୀ ।
ସମରେ ନିଃଶଙ୍କ ଅଟେ ମାଦ୍ରୀଦେବୀସୁତ
ତା ସଙ୍ଗେ ଯୁଝିବାପାଇଁ ବଳାଇଲା ଚିତ୍ତ ।
ଗୁଣ ଟଙ୍କାରିଣ ସହଦେବକୁ ଓଗାଳି
ପ୍ରଶଂସଇ ସହଦେବ ସାଧୁ ମହାବଳୀ ।
ପଇଁଗୃଳଶ ସହସ.ବଳ ଧରି ଧନୁ
ଅନୁକ୍ଷଣେ ବାଣ ବର୍ଷେ ମାଦ୍ରୀ ଦେବୀ ସୁନୁ ।
ନାରାଚ ପଡ଼ନ୍ତେ ସେହୁ ପଡ଼ିଲେକ ତଳ
ହୟ ସାରଥି ରଥ ଯେ ଫୁଟିଗଲା ଗଳ ।
ରୁଧିରେ ଉକଟ ବର୍ଣ୍ଣ ସବୁଙ୍କର କାୟେ
ଦିଶନ୍ତି ସର୍ବେ ମନ୍ଦାର କୁସୁମ ପରାୟେ ।
ସେମାନଙ୍କ ଅସ୍ତ୍ରସବୁ ନ ଭେଦଇ କିଛି
ମନ୍ତ୍ରି ଅଭେଦ କବଚ ଅଙ୍ଗେ ପିନ୍ଧିଅଛି ।
ବିସ୍ମରନ୍ତି ସହଦେବ ସେମାନଙ୍କୁ ଦେଖି
ଅନାଥ ଲୋକଙ୍କୁ ଧର୍ମଦେବ ପିତା ସାକ୍ଷୀ ।
ହାତେ ସମର କରଇ ଅଭିମନ୍ୟୁ ସୁତ
ଦଶସହସ୍ର ରାଜାକୁଳେ ଅଛି ଜୟଦ୍ରଥ ।
ଜୟଦ୍ରଥକୁ ଦେଖିଣ କହେ ଅଭିମନ୍ୟୁ
ସମ୍ଭାଳ ତୁ ଜୟଦ୍ରଥ ଏବେ ତୋର ତନୁ ।
ଏହା କହି ପାଞ୍ଚ ଲୁହାଶର ଏକମୁନା
ବିନ୍ଧିବ୍ୟନ୍ତେ ଭେଦିଗଲା ଜୟଦ୍ରଥ ସେହ୍ନା ।
ଯେଉଁରୂପେ ସର୍ପମାନେ ପଶନ୍ତି ବିବରେ
ତେମନ୍ତ ଭେଦିଲା ଜୟଦ୍ରଥର ସେହ୍ନାରେ ।
ପୁଣି ପାଞ୍ଚବାଣ ସେହି ବୀର ଅଭିମନ୍ୟୁ
କାଟିବରେ ଛେଦିଦେଲା ଜୟଦ୍ରଥ ଧନୁ ।

ପୁଣି ପଞ୍ଚବାଣ ହାଣେ ସୁଭଦ୍ରା ତନୟ
ସାରଥି ସହ ଛେଦିଲା ରଥ ସ୍ୱରହୟ ।
ରଥ ପୀଡ଼ମାନ ସବୁ ପଡ଼ିଲାକ ଛିଡ଼ି
ରଥ ଯୋଦ୍ଧା ଏକ ବେଳେ ପଡ଼ିଲେ କଡ଼ିଡ଼ ।
ଆନ ରଥେ ଜୟଦ୍ରଥ ଆରୋହିଲେ ଯାଇ
ଅଭିମନ୍ୟୁ ଭିତରରେ ପଶେ ରଥବାହି ।
ଗିରିବର ସମାନରେ ଆରୋହଣ ରଥ
ଭିତରେ ପଶିଲା ଯାଇ ସୁଭଦ୍ରାର ସୁତ ।
ବ୍ୟୂହ ଭେଦ ଅଭିମନ୍ୟୁ ବେଗେ ଗଲା ଚଳି
ପାଣ୍ଡବଙ୍କୁ ନ ଦଶିଲା ସେ ରଥ ଧବଳ ।
ସୈନ୍ୟ ଭଗ୍ନ ଦେଖି ଧାଇଁଲେକ ଜନସାର
ଯୁଧିଷ୍ଠି ଅଚ୍ଛନ୍ତ ମଧ୍ୟ ପଛରେ ତାଙ୍କର ।
ଦଶସହସ୍ର ରଥ ଘେନି ପୁଣି ଜୟଦ୍ରଥ
ଆଗେ ଓଗାଳେ ପାଣ୍ଡବ ସାର ସ୍ୱରଭ୍ରାତ ।
ଯୁଧିଷ୍ଠି ବୋଇଲେ ଭୀମ ଶୁଣ ବୃକୋଦର
ରଣ ଜିଣି ଅଭିମନ୍ୟୁ ପଶିଲା ଭିତର ।
ପଞ୍ଚସ୍ତର ସହ ରାଜା ପୁତ୍ର ମୋର ଏକା
ସେମାନଙ୍କ ଦେଖି ମନେ କରୁଥିବ ଶଙ୍କା ।
ଜୟଦ୍ରଥ ଜିଣିକରି ପୁତ୍ର ପଛେ ଯାଅ
ତାହା ଶୁଣି ଉଡ଼ିଲା ପବନ ତନୟ ।
କରେ କାଳବର ଗଦା ଘେନିଣ ମାରୁତି
ବହୁତ ସୈନ୍ୟଙ୍କୁ ମାରିଦେଲେ ଯମକତ ।
ବହୁତ ସମର ଦେଖିଲ ସିନ୍ଧୁ ରାଜା ଭୁଲେ
ଦଶସହସ୍ର ରାଜା ତାଙ୍କୁ ଆବୋରିଣ ଥିଲେ ।
ଭୀମସେନ ସହିତରେ କଲେ ରଣରଙ୍ଗ
ପୁଣି ବେଢ଼ିଲେ ସମସ୍ତେ ହୋଇ ଏକସଙ୍ଗ ।
ଭୀମ ଦୁଇ ମାଦ୍ରୀସୁତ ଏହି ତିନମୂର୍ତ୍ତି
ସମରରେ ନଶୋଧନ କଲେ ବହୁ ରଥୀ ।
ଦଶସହସ୍ର ରାଜନ ହେଲେ ଏକମୁଖ
ଏକ ଯାବୋଡ଼େ ଝାନ୍ଦିଲେ ଘେନିଣ ସାୟକ ।
ଆକାଶ ଅଦୃଶ୍ୟ ହେଲା କରି ଶରବୃଷ୍ଟି
ଭଗ ବନ୍ଧତରେ ସବୁ ବାଣ ଗଲା ଘୋଟି ।
ସାଧୁ ହେ ପାଣ୍ଡବ ବୋଲି ହେଲା ଶୂନ୍ୟବାଣୀ
ଏ ଦୁଃସହ ସମରକୁ ତୁମ୍ଭେ ସାରମଣି ।
ଏହକ ସମର ଦେଖି ପବନ ନନ୍ଦନ
ରଥ ତେଜ୍ୟାକରି କଲେ ପାଦରେ ଗମନ ।

ମନ୍ଦର ପର୍ବତ କିବା ଆସୁଅଛୁ ଉଠି
ଗଦା ବୁଲାଇଣ ତଥା ଭୀମସେନ ଭଟ୍ଟି ।
ଲୌହ ଗିରି ନ ସହଇ ଯାର ଗଦାଘାତ
ସେ ଗଦାଘାତରେ କାହୁଁ ରହିବ ତା ରଥ ।
ହୟ ସାରଥି ଆଦି ଯେ କେହୁ ନ ରହିଲେ
ଭଗନେ କୌରବ ଦଳ ସର୍ବେ ପଳାଇଲେ ।
ଦେବଙ୍କ ଦୁଃସହ ଅଟେ ଭୀମସେନ କୋପ
ଜୟଦ୍ରଥକୁ ଦେଖିଣ ବଢ଼ିଲା ତା ଦର୍ପ ।
ଭୀମସେନ କୋପ ହୋଇ ତାହାକୁ ପୁଚ୍ଛଇ
ଏସନକ ପ୍ରତିଜ୍ଞାରେ ତୋର ଜସପାଇଁ ।
ପାଦଗତ କରି ପୁଣ ଧାମଇଁ ଗାଦନ
କୋପେ ପିଟିଲା ତା ରଥ ଆନ ରଥ ସେନ ।
କୋଟି ମୁନେ ବହୁ ସୈନ୍ୟ ମାଇଲା ନକୁଳ
ପୁଣି ବହୁତ ଶର ଝାନ୍ଦିଲା ପ୍ରବଳ ।
ଆକାଶ ଗର୍ଜିଲା ଭୀମସେନ ଦେଲା ରଡ଼ି
ଯେଉଁପରି ଆକାଶରେ ଶୁଭେ ଘଡ଼ଘଡ଼ି ।
ଭୀମସେନ ମୂର୍ତ୍ତି ଦେଖି ସିନ୍ଧୁ ରାଜସୁତ
ତିନଶତ ରଥୀସହ ଉଠିଲା ତ୍ୱରିତ ।
ପଟ୍ଟିଶ କୁନ୍ତ ନାରାଚ ଖଡ଼ଗ ଲଙ୍କିଆ
ଝିଟିକା ଦଶନ୍ତ ସର୍ବେ ବଜ୍ରକର ନିଆଁ ।
ଏକମୁଖ ହୋଇ ସର୍ବେ ଭୀମକୁ ପ୍ରହାରି
ଶରୀରେ ପଡ଼ି ସେ ଅସ୍ତ୍ର ହୋଇଯାଏ ଚୂର୍ଣ୍ଣ ।
ବେଙ୍ଗକରେ ବେନିଗଦା ଘେନିଣ ମାରୁତି
ଏକା ପ୍ରହାରକେ ମାରେ ପଞ୍ଚବିଂଶ ରଥୀ ।
ପାଦରରେ ଦଳି ଦଳି ହୁଅଇ ମେଦିନୀ
ଝଧା ଗୋଇଠାରେ ମଲେ ବହୁତ ସଇନ ।
ଭୟେ ଯୋଦ୍ଧାମାନେ ଗଲେ ସମରକୁ ଛାଡ଼ି
ସ୍ତବଧ ହୋଇଲେ ସର୍ବେ ଶୁଣି ଭୀମରଡ଼ି ।
ବତିଶ ସହସ୍ର ଯୋଦ୍ଧା ପଡ଼ିଲେ ସମରେ
କବନ୍ଧ ନାଚିଲେ ତିନ ପାଣ୍ଡବ ସମରେ ।
ଦଣ୍ଡଭଗ୍ନ ଦେଖିକରି ଦୁଃଶୀଳାବଲ୍ଲଭ
ରାଗରେ ଡାକିଲେ ଆରେ ଆରେରେ ପାଣ୍ଡବ
ରେ ରେ କାର ଶୁଣିକରି ଭୀମ ମହାବଳ
ଘୃତ ସଂଯୋଗ ହୋଇଲେ ଯେସନେ ଅନଳ ।
ବାଆନ ବାଆନ ଭାର ବେନି ଗଦା ନେଇ
ଜୟଦ୍ରଥ ରଥ ପରେ ପିଟିଲେକ ଯାଇ ।

ଏକ ପ୍ରହାରକେ ଭଗ୍ନ ହୋଇଗଲା ରଥ
ପାଦଗତ ହୋଇକରି ରହେ ଜୟଦ୍ରଥ ।
ଏକ ହସ୍ତରେ କୁଠାର ଅନ୍ୟ ହସ୍ତେ ଶୂଳେ
ଯଥା ଶିବ ଦିଶିଥିଲେ ଅନ୍ଧକ ନିର୍ମୂଳେ ।
ଜୟଦ୍ରଥକୁ ଦେଖିଣ ଧାମେ ବୃକୋଦର
ସହଦେବ ବୋଲେ ତୁମ୍ଭେ ସମର ନ କର ।
ରୁଦ୍ରଅସ୍ତ୍ର ଦେଇଲାଣି ସିନ୍ଧୁ ଅଧିପତି
ଏଣୁ କଷ୍ଟେ ପରାଜିତ ହେବା ତାର କତ ।
ଶୁଣି ଯୁଧିଷ୍ଠି ପୁଚ୍ଛିଲେ ସହଦେବ ପ୍ରତି
ଏଥିର କିସ ଚରିତ କହ ଆମ୍ଭ କତି ।
ଶୁଣି ସହଦେବ କହେ ହେ ନୃପତି ଶୁଣ
ଅଦ୍ଭୁତ ବନର କଥା ଏହୁ ନୁହେଁ ଜାଣ ।
ସହଦେବ ବୋଲେ ସ୍ୱାମୀ ଶୁଣ ମହୀପତେ
ଥିଲାବେଳେ ଆମ୍ଭେମାନେ କୁଣ୍ଡଳୀ ବନସ୍ତେ ।
ପାଞ୍ଚଭାଇ ଗଲୁ ଆମ୍ଭେ ବନେ ମୃଗମାରି
ଆଶ୍ରମରେ ଥିଲେ ଏକା ଦ୍ରୌପଦୀ ସୁନ୍ଦରୀ ।
ଦଶସହସ୍ର ରଥୀ ଘେନ ବିଷ୍ଣୁ ଭଦ୍ରା କୂଳେ
ଦ୍ରୌପଦୀକୁ ସେ ତସ୍କର ହରିନେଲା ବଳେ ।
ଧୌମ୍ୟ ପୁରୋହିତ ତାକୁ ବୁଝାଇଲେ ଯେତେ
ତାଙ୍କ କଥା ନ ଶୁଣିଲା ସେହୁ କର୍ଣ୍ଣପଥେ ।
ରଡଭର ହୋଇ ତହୁଁ ଗଲେ ପୁରୋହିତେ
ଆମ୍ଭଙ୍କୁ କହିଲେ ଯାଇ ନନ୍ଦନ ବନସ୍ତେ ।
ଆମ୍ଭ ଶ୍ୱର ଶ୍ୱବଙ୍କି ଯେ ଆଜ୍ଞାଦେଲେ ରାଇ
ଜୟଦ୍ରଥ ଦୋଷକ୍ଷମ ଦୁଃଶୀଳାର ପାଇଁ ।
ତାକୁ ପ୍ରାଣରେ ନ ମାରି ଦ୍ରୌପଦୀକୁ ଆଣ
ଅପମାନ ଦେଇ ତାର ସାର ଦଣ୍ଡପଣ ।
ତୁମ୍ଭର ଆଜ୍ଞାରେ ଗଲୁଁ ଆମ୍ଭେ ବୃଷସଇ
ସରସ୍ୱତୀ କୂଳେ ଭୀମ ଓଗାଳିଲେ ଯାଇ ।
ସୈନ୍ୟବଳ ଯାହାଥିଲା ମାରିକଲୁ ହତ
ଗଦାଘାତେ ଭୀମସେନ ଭାଙ୍ଗିଦେଲେ ରଥ ।
ଦ୍ରୌପଦୀ ଛାଡ଼ି ପଳାଏ ପାଦଗତ କରି
ବଳହସ୍ତି ଦେଲେ ତାର କେଶକୁ ଓଟାରି ।
ଜାନୁତଳେ ଚଳାଇଲେ ତାକୁ ସାତଥର
ଏଥି ସଙ୍ଗତେ ଅଦ୍ଭୁତ ହୋଇଛି ପ୍ରହାର ।
ତୁମ୍ଭର ଆଜ୍ଞା ପ୍ରମାଣେ ତାକୁ ନ ମାଇଲୁ
ରଡଭରରେ ତାହାକୁ ସାତଦେଶେ କଲୁ ।

ପଞ୍ଚରଣ ତାହାକୁ ଯେ କରାଇଲୁ ସତ୍ୟ
ପ୍ରାଣେ ନ ମାରିବୁ ତୋତେ ଆରେ ଜୟଦ୍ରଥ ।
ସର୍ବଦା ତୁ ବୋଲାଇବୁ ପାଣ୍ଡବଙ୍କ ଭୃତ୍ୟ
ଏସନକ କରାଇଲୁ ଆହେ ଧର୍ମସୁତ ।
ସତ୍ୟକରନ୍ତେ ଛାଡ଼ିଲୁ ପଳା ପ୍ରାଣ ଘେନ
ରାଜ୍ୟକୁ ନ ଗଲା ସେହୁ ହୋଇ ଅଭିମାନୀ ।
ଗୌରୀ ନଦୀକୂଳେ କପିଳାସର କନ୍ଦର
ତହିଁ ବିଜେ କରିଛନ୍ତି ଉମା ମହେଶ୍ୱର ।
ଅନ୍ଧକକୁ ନିବାରଣ ସୁଖେ ଛନ୍ତି ରହି
ପଡ଼େ ଗଙ୍ଗାମାର ତହିଁ ଜଳଧାର ହୋଇ ।
ସେହି ନଦୀକୂଳେ ଯାଇ କରିଲା କୁଟୀର
ତପସ୍ୟା କରିଲା ତହିଁ ସିନ୍ଧୁ ନୃପବର ।
କଷ୍ଟକେ ବସିଲା ଦବାଗ୍ରହେ ନାହିଁ ଶଯ୍ୟା
ଆହାର ବିହାର ସବୁ କରିଦେଲା ତେଜ୍ୟା ।
ଏ ବିଧିରେ ଦଶବର୍ଷ କରିଲାକ ଧ୍ୟାନ
ସିଂହ ଷଷ୍ଠୀରେ କର୍ମିଲା ଶିବଙ୍କ ଆସନ ।
ଚନ୍ଦ୍ରବାର ଯେ ଅଶ୍ଳେଷା ନକ୍ଷତ୍ରର ଭୋଗ
ବାଳବ ନାମେ କରଣ ଅତିଗଣ୍ଡ ଯୋଗ ।
ତିନ ପ୍ରହର ପ୍ରବେଶ ଶୁନ୍ୟ ମଧ୍ୟ ବେଳ
ବୃଷଭ ଆରୋହି ବିଜେ କରିଲେ ସୁଢ଼ଳ ।
ରୁଦ୍ର ବୋଇଲେ ତୁ ବର ମାଗ ସିନ୍ଧୁସୁତ,
ଭକ୍ତ ପ୍ରାଣବନ୍ଧୁ ମୁହିଁ ତ୍ରିଜଗତ ନାଥ ।
ମୁହିଁ ବରଦାତା ସିନା ପରଦୁଃଖେ ଦୁଃଖୀ
ଦାତବ୍ୟ ପୁରୁଷ ମୁହିଁ ସର୍ବଜନ ରକ୍ଷୀ ।
ଜୟଦ୍ରଥ ବୋଲେ ଯେବେ ବିଶ୍ୱନାଥ ତୁହି
ପରମଗତି ଲଭିଲି ତୋର ରୂପ ଦେହି ।
ବାରବର୍ଷ ତପକଲି ଲଭି ବଡ଼ କ୍ଳେଶ
ଦେଖିବି ମୁଁ ନିଜରୂପ କର ତୁ ପ୍ରକାଶ ।
ଜୟଦ୍ରଥ ବାକ୍ୟେ ନିଜ ରୂପ ପରକାଶି
ହରସ୍ୱନ ସ୍ଫଟିକର ରୂପକୁ ପ୍ରକାଶି ।
ତ୍ରିଶୂଳ ଗଦା ଶକତି ଶୋହେ ବେନିକରେ
ଜଟାଜୁଟ ଲମ୍ବି ଅଛି ପଞ୍ଚ ମସ୍ତକରେ ।
ସୋମ ସୂର୍ଯ୍ୟ ଅନଳ ଯେ ହୁଏ ତିନ ନେତ୍ର
ସ୍ରବଣ ମଳ ଜଟାରୁ ବହେ ଅବିରତ ।
ଏ ବିଧିରେ ପଞ୍ଚଦଶ ନୟନ କପୋଳ
ଉରେ ପିନାକ ଡମ୍ବରୁ ଦଶେ ମହୋଜ୍ଜ୍ୱଳ ।

ଗଙ୍ଗା ଯମୁନା ଯେ ସରସ୍ୱତୀଙ୍କର ନୀର
ଶୂନ୍ୟଗାମୀ ହୋଇ ବହୁଅଛି ତିନଧାର ।
ସମୁଦ୍ର ମନ୍ଥନୁ ଉପୁଜିଲା କାଳକୂଟ
ଅତିଶୋଭା ଦିଶଇ ସେ ନୀଳକଣ୍ଠ କଣ୍ଠ ।
ଦ୍ୱାଦଶ ନୟନ ଶୋଭେ ରୁଚିର ତା ତନୁ
ଅନ୍ଧକାରିକ ଯେ ସଦା ପୂଜେ ଶତମନ୍ୟୁ ।
କୋଟିଏ ସହସ୍ର ବଳ ପିନାକ ଯା କରେ
ମୃଗାଙ୍କ ଧାରଣା ନାଥ ଅଚିନ୍ତ୍ୟ ଈଶ୍ୱରେ ।
ଶଙ୍ଖ ମହାପଦ୍ମ ଶ୍ୱେତ କର୍କୋଟ ତକ୍ଷକ
ଶିରେ ଅଷ୍ଟକୁଳ ନାଗ ସଦା ବିରାଜିତ ।
ବିଜେକଲେ ଦିଗମ୍ବର ନିଜ ରୂପ ଧରି
ବଦନ୍ତି ଶାରଳା ଦାସ ଶିବ ସ୍ତୁତି ସ୍ମରି ।
ଶୁଣିଲେ ଯେ ବିଶ୍ୱନାଥ ନାମ ମନହୃଦେ
ପରମଗତି ପାଇବ ତବ ପରସାଦେ ।
ସଙ୍ଗେ ସଙ୍ଗେ ଅଛନ୍ତି ଯେ କାର୍ତ୍ତିକ କୁମର
ବିନାୟକ ଚନ୍ଦ୍ରକ ନନ୍ଦୀ ମହାକାଳ ।
ଭୀମଙ୍କ ଚଣ୍ଡ ପ୍ରଚଣ୍ଡ ମଣିଭଦ୍ର କାଳୀ
ଷୋଳକୋଟି ଶିବଗଣ ଘେନି ବିଜେ ଶୂଳୀ ।
ଚଳ ଚଳ ବୃଷଭରେ ଯାନ୍ତି ଗଣ ଘେନି
ନବଲକ୍ଷ ଡମ୍ବରୁ ଯେ ବାଜେ ଟିନଟିନ ।
ଶିବଗଣେ ଘେନି ବିଜେ କଲେ କୁତୂହଳେ
ଜୟଦ୍ରଥକୁ ସେ ନିଜରୂପ ଦେଖାଇଲେ ।
ନିଜରୂପ ଦେଖି ସିନ୍ଧୁରାଜା ପରଣାମି
ହାହି ହାହି ବୋଲି ଉଚ୍ଚେ କରଇ ବଇନ୍ତି ।
ଈଶ୍ୱର ବୋଇଲେ ବରମାଗ ସିନ୍ଧୁରାଜ
ମୋହର ପ୍ରସନ୍ନେ ତୋର ସିଦ୍ଧହେଉ କାର୍ଯ୍ୟ
ବରମାଗ ଜୟଦ୍ରଥ ବୋଲନ୍ତି ଧୂର୍ଜଟୀ
ମନୋବାଞ୍ଛା ପୂରଇଣ ହୁଅ ତୁହି ତୁଷ୍ଟି ।
କରପଦ ଯୋଡ଼ି ତହୁଁ ବୋଲେ ସିନ୍ଧୁରାଜ
ପାଣ୍ଡବେ ଜିଣିବ ମୋର ଅନ୍ୟେ ନାହିଁ କାର୍ଯ୍ୟ
ଶିବ ବୋଇଲେ ମାଗିଲୁ ନିଦାରୁଣ ବର
ଯାହା ବାଞ୍ଛା କଲୁ ତାହା ଦେବେ ଅଗୋଚର
ନରଚରୂପେ ଅର୍ଜ୍ଜୁନ ବୁଲୁଥିଲା ବନ
ତାହାର ମୋହର ଭେଟ ହେଲା ଏକଦିନ ।
ମୋତେ ବୋଇଲାରେ ତୋର ଘେନିଲେଁ ପ୍ରାଣ
ମୋହର ଏଥିରେ ଜସ ହୋଇବ କାରଣ ।

ଏହା କହି ଧନୁହସ୍ତେ ବୁଲାଇଲା ମୋତେ
ପୁଣି ଦୟାକରି ଛାଡ଼ି ଦେଲାକ ପଶ୍ଚାତେ ।
ପାଶୁପତ ଅକ୍ଷୟ ଯେ ତୂଣ ଭୟେ ଦେଲି
ଶରଣ ପଶିଣ ମୁହିଁ ରକ୍ଷାଗତ ହେଲି ।
ମାହେନ୍ଦ୍ରହରଣେ ମୋତେ ଦେଲେ ଯେ ଅବସ୍ଥା
କହନ୍ତେ ନ ସରଇ ସେ ସମର ବାରତା ।
ଦ୍ୱାରକାରେ ରାମକୃଷ୍ଣ ରଣେ ଜୟ କଲା
ସୁଭଦ୍ରା ଦେଖାଇ ବଳେ ଏକା ହରି ନେଲା ।
ଖାଣ୍ଡବ ଦହନ କାଳେ ଇନ୍ଦ୍ରର ବିବାଦେ
ତେତିଶକୋଟି ଦେବତା ନ ପାରିଲେ ଯୁଦ୍ଧେ
କରିତା ଜଗଜ୍ଜେଠ ସେ ପାର୍ଥ ମହାଯୋଧୀ
ଅଗ୍ନି ଦେବ ଭକ୍ଷକଲା ଲୁ ଦୁରୁଦୁ ବ୍ୟାଧି ।
ରାଜସୂୟ ଯଜ୍ଞକାଳେ ଗଲା ସେ ପାତାଳେ
ନବଦ୍ୱୀପା ପୃଥ୍ୱୀ ଧରେ ତାର ଧନୁହସ୍ତେ ।
ମୁହିଁ ତାକୁ ସରିସମ ନ ହୋଇଲି ରଣେ
ତୁ ଜିଣିବୁ ବର ମାଗୁ କେବଣ କାରଣେ ।
ବରମାଗୁ ପାଣ୍ଡବଙ୍କୁ ରଣେ ଜିଣିବାକୁ
ସମରେ ଜିଣିବୁ ଆନ ସେ ଚାରି ଭାଇଙ୍କୁ ।
ଅର୍ଜ୍ଜୁନ ରଖ ବୋଲିଣ ଡାକିବ ଯେ ଯୋଧୀ
ତାକୁ ମାଇଲେ ଏ ବର ନ ହୋଇବ ସିଦ୍ଧି ।
ପିନାକ ସମାନ ଏକ ଧନୁ ତାକୁ ଦେଲେ
ନୃପତିଙ୍କୁ ଜାଣ ବୋଲି ଶଙ୍କର ବୋଇଲେ ।
ପ୍ରଥମଯୁଦ୍ଧେ ଆମ୍ଭର ପୁତ୍ର ଅଭିମନ୍ୟୁ
ଆପେ ଛେଦନ କରିଲା ଏହା କର ଧନୁ ।
ସେ ଧନୁ ଧରନ୍ତା ଯେବେ ଜୟଦ୍ରଥ ହାତେ
ଅଦ୍ୟାପି ଆମ୍ଭେ ସରବେ ନ ଥାନ୍ତୁ ଜୀଇଁତେ ।
ଏବେ ଆଣିଲା ସେ ଧନୁ ପିନାକର ସମ
ତାକୁ ରଣେ ଜିଣିବାକୁ ହୋଇଲୁ ଅକ୍ଷମ ।
ତ୍ରିଶୂଳ ଖଟ୍ୱାଙ୍ଗ ଆଉ କାଳାନଳ ବାଣ
ଏହା ଥିଲେ ଅଭିମନ୍ୟୁ ନ ଜିଣନ୍ତା ରଣ ।
ସହଦେବଠାରୁ ଶୁଣି ବୀର ଭୀମସେନ
ଯୁଦ୍ଧ ନ କରି ରହିଲା ହୋଇଣ ମଉନ ।
ଜୟ ଜୟ ଜଗନ୍ନାଥ ଅନାଦି ପୁରୁଷ
ଅନନ୍ତ ରୂପେ ପୃଥିବୀ କରିଛ ପ୍ରକାଶ ।
ଏଥିକି ଅନନ୍ତ ନାମ ଜଗତରେ ଖ୍ୟାତ
ଜୟ ନୀଳାଦ୍ରିବାସୀ ଅନାଦି ଅଚ୍ୟୁତ ।

ମୁହିଁ ଘୋର କି କହିବ ତୁମ୍ଭ ଯେଉଁ ଯଶ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା କରନ୍ତି ପ୍ରକାଶ ।
ଚଉଦ ବ୍ରହ୍ମାଣ୍ଡ ମଧ୍ୟେ ଯେତେ ଜୀବାଜୀବ
ସବୁର ଗୁହାର ପ୍ରଭୁ ବୁଝିଅଛ ସର୍ବ ।
ତୁମ୍ଭ ସୃଷ୍ଟିରୁ ମୁହିଁ କି ଅଟଇ ବାହାର
ତେଣୁ ଶୁଣା ଯାଉନାହିଁ ଗୁହାର ମୋହର ।
ପାପୀ ପର ପୀଡ଼ନରେ ହେଉଛି ଅଥୟ
କ୍ଷଣେ ଶାନ୍ତ ନ ମିଳଇ ଆହେ ଦୟାମୟ ।
କଣ୍ଠଳରେ ତୁମ୍ଭ ନାମ କରିବାକୁ ଧ୍ୟାନ
ନାହିଁ ଅବକାଶ ହମେ ଆସୁଛି ଶମନ ।
କି ବୁଦ୍ଧି କରିବ ପ୍ରଭୁ ନ ସ୍ଫୁରଇ କିଛି
ଶାରଳାଦାସ ତୁମ୍ଭର ଆଶ୍ରୟରେ ଅଛି ।

---

## ଅଭିମନ୍ୟୁର ଏକାଦଶଦ୍ୱାର ଭେଦ ଓ ଅଭିମନ୍ୟୁ ବଧ

ପଚାରନ୍ତି ଅଗସ୍ତିଙ୍କୁ ମନୁ ନୃପରାୟ
ପୁଣି କେଉଁ କୃତ୍ୟ ହେଲା କହ ମହାଶୟ ।
ସେହି କଥା ଶୁଣିବାକୁ ମୋହର ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଏଥୁ ଅନ୍ତେ ଶୁଣ ଜଳଧର ବ୍ୟୂହ କଥା
ଗୁହରିଲେ ପାଣ୍ଡବଙ୍କୁ ଆଣିଣ ବାରତା ।
ସ୍ୱାମୀ ଅବଧାନ କର ଦେବ ଯୁଧିଷ୍ଠିର
ଜିଣିଲେ ଅର୍ଜୁନ ଜଳଧର ପଞ୍ଚଦ୍ୱାର ।
ଚୌରାଅଶୀ ଲକ୍ଷ ମ୍ଳେଚ୍ଛ ଯୋଦ୍ଧା ତହିଁ ଥିଲେ
ଛଅଦଣ୍ଡରେ ଚୌଦନ ଲକ୍ଷ ତହିଁ ମଲେ ।
ସହଦନ ଲଗିଅଛି ସେଠାରେ ସଂଗ୍ରାମ
ସଦା ଲଗି ରହିଅଛି ନାହିଁ ଯେ ବିଶ୍ରାମ ।
ମହିଷା ସଙ୍ଗରେ ଥିଲା ଯେହ୍ନେ ଉଗ୍ରବୀର୍ଯ୍ୟ
ମାଇଲେ ସେ ନ ମରଇ ଦୁର୍ବାର ଦନୁଜ ।
ତାହାର ରୁଧିର ଯାଇ ପଡ଼ିଗଲା କ୍ଷିତି
ସେହି ରୁଧିରୁ ଦାନବ ହୁଅଇ ଉତ୍ପତ୍ତି ।
ସେହିପରି ପଡ଼େ ଯହିଁ ଏହାଙ୍କ ରୁଧିର
କୋଟି କୋଟି ହୋଇ ଜାତ ହୁଅନ୍ତି ଅସୁର
ଏବେ ଆସି ହେଲା ଦେଢ଼ ପ୍ରହର ଯେ ବେଳା
ଆଉ ପାଞ୍ଚଦଣ୍ଡ ଯୁଦ୍ଧ କରୁଥାଅ ହେଳା ।

ଜଳଧର ବ୍ୟୂହ ଛେଦ ଆସି ଏହି ସତ
ଚକ୍ରବ୍ୟୂହ ଭେଦକରି ଜିଣିବେ ସବୁନ୍ତ ।
ଏହା ଶୁଣି ପାଣ୍ଡବ ଯେ ହରଷ ହୋଇଲେ
କେତେ ଅଭିମନ୍ୟୁ ବାହୁବଳ ବଖାଣିଲେ ।
ଏବେ ଶୁଣ ଜଳଧର ବ୍ୟୂହର ସମର
ବିଶ୍ରାମ ନାହିଁ କହିଛେ ଉଭୟ ପକ୍ଷର ।
ନବଦ୍ୱାର ଜିଣିଗଲେ କୃଷ୍ଣ ଧନଞ୍ଜୟ
ସେ ଦ୍ୱାର ସମର କଥା ଅଟେ ଅତିଶୟ ।
ବାହାନ୍ତି ଯେ ତୁରଙ୍ଗମ ବେଙ୍କଣାର ବଳା
ରୁଧିର ଜଡ଼ିତ ହୋଇ ନ ଦିଶଇ କଳା ।
ରଥ ବାହି ଧନଞ୍ଜୟ ଭିତରକୁ ଗଲେ
ପାଞ୍ଚଲକ୍ଷ ଯୋଦ୍ଧା ଆସି ତାଙ୍କୁ ଓଗାଳିଲେ ।
ଉଷ୍ଟ ଗର୍ଦ୍ଦଭ ଭଲ୍ଲୁକ ହୋଇଛି ବାହନ
କେହି ବା ବ୍ୟାଘ୍ର ପିଠିରେ କରିଛି ଆସନ ।
କୁଠାର ପଟ୍ଟୁ କୋଦାଳ ଧରିଛନ୍ତି କରେ
କିଏ ସେ ସାହସୀ ହୋଇ ପଶିବ ସମରେ ।
କଡ଼ା ମରଦଳ ବିଜଘୋଷ ଯେ ବାଉଣ୍ଡି
ବାଜେ ବୈଦ୍ୟ ନାଚନ୍ତି ଖେମଟା ନାଟଖଣ୍ଡ ।
ପିଅନ୍ତି ମଦିରା ସର୍ବେ ମଦମତ୍ତେ ଭୋଳ
ଭକ୍ଷନ୍ତି ଆନନ୍ଦେ ଗୋରୁ ମହିଷ ଛାଗଳ ।
କାରଣ ମରଣ କର କେହି ନ ଜାଣନ୍ତି
ଦନ୍ତେ ଚକଟିଣ ହାଡ଼ ମାଂସକୁ ଚୋବାନ୍ତି ।
ଧର୍ମାଧର୍ମ ବୋଲିଯାହା ନ ଜାଣନ୍ତି ବେନି
ଏକ ଯୋଦ୍ଧାକୁ ବେଢ଼ନ୍ତି ଲକ୍ଷେ ଯୋଦ୍ଧା ସେନ
ଧରଧର ମାର ମାର ଡାକ ଅବିରତ
ପାଦଭର ନ ସହଇ ବସୁନ୍ଧରା ମାତ ।
ଏକ ପଡ଼ନ୍ତେ ଆରେକ ଉଠେ ଅବତରି
କଳକଳା ଶବଦରେ କେହି ନୁହେଁ ସରି ।
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ଭଗବାନ
କାହିଁକି ବ୍ୟାକୁଳ ମୋର ହେଉଅଛି ମନ ।
ସଂଗ୍ରାମରେ ପରାଜୟ ହୋଇବ କି ଆଜ
ଏ ବ୍ୟୂହ କୁଟ ପରାୟେ ଦିଶେ ଦେବରାଜ ।
କାକମାନେ ପୁନଃ ପୁନଃ ଘୂରନ୍ତି ବୋବାଳ
କାହିଁକି ହେଉଛି ଏହା ନ ପାରେ ମୁଁ ଭଳ ।
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ମନ୍ଦାର ଗହନେ
ତେଣୁ ରବ କରୁଛନ୍ତି ଏହି କାକମାନେ ।

ଏହା କହି ରଥବାହ ନେଲେ ଅତିବେଗେ
ଯୋଦ୍ଧାଙ୍କୁ ମାରିଲେ ପାର୍ଥ ଯେ ପଡ଼ିଲା ଆଗେ
ଶୁଣ ଚଇତନ ଏବେ କୃଷ୍ଣଙ୍କ କପଟ
ଯେତେ ମାଇଲେ ନ ସରେ ଅସୁରଙ୍କ ଥାଟ ।
ହୃଦୟରେ ଚିନ୍ତିଲେ ଦେବ ପୀତବାସ
ତେଣେ ଅଭିମନ୍ୟୁ ରଣେ ନୋହିଲେ ବିନାଶ
ଏଣେ ଜଳଧର ବ୍ୟୂହ କ୍ଷୟ ହେବ କାହିଁ
ଯେତେ ମାଇଲେ ଅସୁର ଶେଷ ହେବ ନାହିଁ
ଯାହାଙ୍କ ମାୟାକୁ ଜାଣି ନ ପାରନ୍ତି ହର
ସେ ମାୟା ଜାଣିବ କାହିଁ ପାର୍ଥ ଧନୁର୍ଦ୍ଧର ।
ଏହି ମାୟାବଳେ ତହିଁ ହୁଏ ରଣଗୋଳ
ସିନ୍ଧୁ ମନ୍ଥନ ପରାୟେ ଶୁଭଇ ଚହଳ ।
ମନୁ ପଚାରିଲେ ପୁଣି ଅଗସ୍ତି ମୁନିଙ୍କ
ଅଭିମନ୍ୟୁ ଗଲା ତେଣେ କର୍ଣ୍ଣାଦି କଟକ ।
ଯୁଧିଷ୍ଠି ଭୀମ ନକୁଳ ପୁଣି ସହଦେବ
ଏ ଚାରିଙ୍କୁ ଓଗାଳିଲା ସିନ୍ଧୁ ରାଜଦେବ ।
ସେ ତ ନ ଛାଡ଼ିଲା ଏହି ନ ପାରିଲେ ଯାଇ
ଯେଣୁ ଶିବଙ୍କଠାରୁ ସେ ବର ଥିଲା ପାଇ ।
ଏକା ଏକରଥେ ବସି ଗଲା ଅଭିମନ୍ୟୁ
କେମନ୍ତ ହୋଇଲା ଯୁଦ୍ଧ କହ କୁମ୍ଭସୂନୁ ।
କହନ୍ତି ଅଗସ୍ତି ବୈବସ୍ୱତ ମନୁ ଶ୍ରୋତା
ଶୁଣ ଆହେ ମହାରାଜା ଅଭିମନ୍ୟୁ କଥା ।
ସୈନ୍ୟ ମଧ୍ୟେ ଅଭିମନ୍ୟୁ ରଥ ଦେଲା ଗଳ
ଚନ୍ଦ୍ର କିରଣ ପରାୟେ ଦିଶଇ ଧବଳ ।
ଉଭୟଙ୍କର ଚକ୍ରବ୍ୟୂହ ଭେଦିଗଲା ପେଲି
ଲେଉଟିବା ଭେଦ ଜାଣି ନ ପାରିଲା ବଳୀ ।
ରଣ ହାନ୍ଦୋଳ ଲଗାଇ ରଥ ଚଳାଯାନ୍ତେ
ଭାଙ୍ଗିଗଲେ ରଥମାନେ ତା ଗମନ ପଥେ ।
ଅଭିମନ୍ୟୁକୁ ଦେଖିଣ କୃଷ୍ଣବର୍ଣ୍ଣ କାୟେ
ବିଚାରିଲେ ଧନଞ୍ଜୟ କଲେ କି ଉପାୟେ ।
ପଳାନ୍ତେ ସୈନ୍ୟ ଗୋଡ଼ାଇ ମାରେ ଅଭିମନ୍ୟୁ
ଖଣ୍ଡଣ କୋନ୍ତରେ ଛେଦଇ ସବୁଙ୍କର ଧନୁ ।
ପୁଣି ଜାଣିଲେ ନହଇ ଏହି ଫାଲଗୁନ
ଚିହ୍ନ ବନ୍ଧିଲେ ଯୋଦ୍ଧାଏ ଶରମାନ ସେନ ।
ବେନକୋଟି ରଥ ରଥୀ ପାଞ୍ଚକୋଟି ହସ୍ତୀ
ନବକୋଟି ତୁରଙ୍ଗମ ସାଉରେ ପଦାତି ।

ଏତେ ସୈନ୍ୟ ଏକକାଳେ ବେଢ଼ିଲେକ ରଥ
ଅନର୍ଯ୍ୟାପ ଶରମାନ କରନ୍ତ ଆଘାତ ।
ଅଭିମନ୍ୟୁ ଡାକଇଏ ଶୁଣ ହେ କେତନ
ସମ୍ଭାଳି ଥା ଅଶ୍ୱଙ୍କୁ ନ କ୍ଷେପନ୍ତୁ ଗଗନ ।
ସାରଥି ବୋଇଲା ଏ ତ ସମର ଗହନ
ଏଥିରେ ପଶିଲୁ ତୁହି ବାଳୁତ ନନ୍ଦନ ।
ଅଭିମନ୍ୟୁ ବୋଲେ ମୁହିଁ ରଣେ ଜଗଜେତା
ଜାଣୁନାହିଁ କି ସାରଥି ଅର୍ଜ୍ଜୁନ ମୋ ପିତା ।
ତୁ ବୋଇଲୁ ଏହି ରଣ ଅଗମ୍ୟ ଗହନ
ଏହା ଦହିବାକୁ ମୁହିଁ ଅଟେ ହୁତାଶନ ।
ଦେଖ ମୋହର ପ୍ରତିଜ୍ଞା ଆଜି ରଣ ରଙ୍ଗ
ସମ୍ଭାଳି ରଖ ତୁ ରଥ ଆବର ତୁରଙ୍ଗ ।
ଏହା କହି କ୍ଷେପେ କାଣ୍ଡ ବନେ ଅଭିମନ୍ୟୁ
ଏକ ପ୍ରହାରକେ ଛେଦେ ସବୁଙ୍କର ଧନୁ ।
ପୁଣିହିଁ ହାବୋଡ଼ାଶର ବିନ୍ଧେ ତିନକୋଟି
ଯୋଦ୍ଧାଙ୍କର ରଥ ଭାଙ୍ଗି ତଳେ ଗଲା ଲୋଟି ।
ହାକ ରଥମାନେ ଯହୁଁ ହେଲେ ମସିଗୁଣ୍ଡା
ସମରେ ଧାଏଁ ପାଣ୍ଡବକୁଳ ପୁଙ୍ଗ ଷଣ୍ଢା ।
ଏକମୁଖ ହୋଇକରି ଚତୁର୍ଦ୍ଦ ସବୁ ଯୋଧୀ
ଆକର୍ଣ୍ଣ ପୂରଇ ଶର ବିନ୍ଧିଲେକ ସନ୍ଧି ।
ଅଭିମନ୍ୟୁ ସେହି ଶର ଦେଖି ଅର୍ଦ୍ଧପଥେ
ଲକ୍ଷେଶର ମାରି ତାହା ଛେଦିଲା କଣ୍ଠତେ ।
ଏକ ଏକ ଶରକରେ ପଡ଼େ ଏକ ରଥୀ
ଗଜ ଯୋଦ୍ଧା ପଡ଼ିମଲେ ଲୋଟନ୍ତି ପଦାତି ।
ଜମନକ ସମନକ ନାମେ ବେନି ରାୟେ
ଏକଲକ୍ଷ ଯୋଦ୍ଧା ଘେନି ସମରେ ବିଜୟେ ।
ଏକ କାଳେ ନବଲକ୍ଷ ଯୋଦ୍ଧା ଘେନି ଧନୁ
ଶରପୂରରେ ବେଢ଼ିଲେ ଯାଇ ଅଭିମନ୍ୟୁ ।
ପଞ୍ଚଶିଖ ନାଗଟକୁ ରାମ ଦେଇଥିଲେ
ତୂଣୀରୁ ଅଭିମନ୍ୟୁ ଯେ ବେଗରେ କାଢ଼ିଲେ ।
ସେ ଶରକୁ କରେ ଧରି ସୁଭଦ୍ରାର ସୁନୁ
ବସାଇଲା ତାହା ନେଇ ଆପଣାର ଧନୁ ।
ନବଲକ୍ଷ ଯୋଦ୍ଧାଙ୍କୁ ଯେ ନବଲକ୍ଷ ବାଣ
ବିନ୍ଧନ୍ତେଣ ଛଇଗୁଡ଼ି ଫୁଟି ସଜାଗଣ ।
ନବଲକ୍ଷ ଯୋଦ୍ଧା ସଙ୍ଗେ ପଡ଼ିଲେକ ତଳ
ତାଙ୍କ ଉପରେ କେତନ ରଥ ଦେଲା ଗୁଳ ।

ସହସ୍ର ପ୍ରମାଣେ ରଥୀ ଶତସହସ୍ର ହସ୍ତୀ
ପଞ୍ଚସାଗର ତୁରଙ୍ଗ ସାଗରେ ପଦାତି ।
ଏତେକ ମାରିଣ ତହୁଁ ବୋଲେ ଅଭିମନ୍ୟୁ
ଭୁଖସ୍ତ ଦ୍ୱାରେ ରହିଛି ସୂର୍ଯ୍ୟଙ୍କର ସୂନୁ ।
ଷଷ୍ଠି ଦ୍ୱାରର ଘସେଇମଲ୍ଲ ବୀର କର୍ଣ୍ଣ
ଇନ୍ଦ୍ର ଗୋବିନ୍ଦ ସମରେ ଅଟେ ସେ ଭଜନ ।
ତାହାର ସମ୍ମୁଖେ ରଥ ଚଳାଅ ତ୍ୱରିତ
ଅର୍ଜ୍ଜୁନ ପ୍ରାପ୍ୟେ ମଣିଲ୍ଲ ଦ୍ୱଜର ସୂତ ।
ପୁଣି ବସ୍ତ୍ରରଲ ଏ ତ ନୁହଇ ଅର୍ଜ୍ଜୁନ
ଶ୍ରୀକୃଷ୍ଣ ସାରଥି ନାହିଁ ସେ କପିକେତନ ।
ଏମନ୍ତ ବିଚାରୁଛନ୍ତି କର୍ଣ୍ଣ ମହାରଥୀ
ଏକାଳେ ଧବଳରଥ ପ୍ରବେଶିଲ୍ଲ ଜତ ।
ଅଭିମନ୍ୟୁକୁ ଦେଖିଣ କ୍ଷତ୍ରୀକୁଳଶ୍ରେଷ୍ଠ
ବୋଇଲ୍ଲ ରେ ଅଭିମନ୍ୟୁ ଏଡେ ତୁହି ଦୁଷ୍ଟ ।
ଏ ମହାଯୁଦ୍ଧରେ ପଶୁ କ ଭଥା ତୋହର
ଗୋ ଦ୍ୱିଜ ହେଲେହେଁ ଯନ୍ତ୍ରି ଛେଦବୁଏ ଶିର
ବାଳବୃଦ୍ଧ ତରୁଣାଦି ସର୍ବେ ମିଶାମିଶି
ଅବଶ୍ୟ ମରଇ ରଣେ ଯେତୁ ଥାଏ ପଶି ।
ଏ ସମୟେ ପଶିଲୁ ତୁ ହୋଇଣ ନିଃଶଙ୍କା
ଅଶୀ ସହସ୍ର ରଜାଙ୍କୁ ତୁ ବାଳକ ଏକା ।
ଭୀମାର୍ଜ୍ଜୁନ ମାଦ୍ରୀସୁତେ ଆବର ଯୁଧିଷ୍ଠି
ଏମାନଙ୍କଠାରୁ ତୁ କ ଅଟୁରେ ଗରିଷ୍ଠି ।
କେଉଁ ଅଭିମାନୀ ହୋଇ ତୁହି ଆରେ ବାଳ
ମିଛେ କପାଇଁ ସଂଗ୍ରାମେ ପଶିଲୁ ଚଣ୍ଡାଳ ।
କେମନ୍ତେ କୃଷ୍ଣ ତୁହର ଅଟେ ସାହାପକ୍ଷ
ସଙ୍ଗେ ଦେଇ ନାହିଁ ରଥ ରଥୀ ତୋର ପଛ ।
ହସିବା ଖେଳିବା ପ୍ରାପ୍ତ ବୟସରୁ ଅବା
ନାହିଁକ ସମରେ ପଶି ଦ୍ରୋହୀ ହେଲୁ ବାବା ।
ପ୍ରଥମ ଦ୍ୱାରରେ ଥିଲେ ଶସ୍ତ୍ରଗୁରୁ ଦ୍ରୋଣେ
ଏ ମହୀମଣ୍ଡଳେ ତାଙ୍କୁ ଜିଣିବ କେ ରଣେ ।
ସେଦ୍ୱାରକୁ ଜିଣି ତୁହି ଆସିଲୁ କେମନ୍ତେ
ବାଳକ ବୋଲିଣ ଅବା ଛାଡ଼ିଦେଲେ ତୋତେ
ଦ୍ୱିତୀୟ ଦ୍ୱାରରେ ଥିଲା ସିନ୍ଧୁ ନରପତି
ଦେବ ଦାନବଙ୍କୁ ସେହି ନ କରଇ ଖାତି ।
ଈଶ୍ୱର ସେବି ପାଇଛି ସେ ପିନାକ ଧନୁ
ତାଙ୍କୁ କେମନ୍ତ ଜିଣିଲୁ ଆରେ ଅଭିମନ୍ୟୁ ।

ମହାଯୋଦ୍ଧା ହେଲେ ମଧ୍ୟ ଥାଏ ଧର୍ମେ ମତି
ବାଳୁତ ବୋଲିଣ ତୋତେ ଛାଡ଼ିଲା ସେ ରଥୀ
ସମରେ ବାଳୁତ ଯେଣୁ ମାରି ନ ଯୋଗାଇ
ତେଣୁ ଛାଡ଼ିଦେଲା ତୋତେ କିଛିହିଁ ନ କହି ।
ଅଜ୍ଞାନ ବାଳକ ହୋଇ ସମରକୁ ଆସ
ହାରିଲେ ଜିଣିଲେ ତୋତେ ହେବ କେଉଁ ଯଶ
ମୁହିଁ ଏକା ଜଣେ ସିନା ପାଣ୍ଡବକୁଳକୁ
ଆଶ୍ରା କରିଛନ୍ତି ସିନା ତୋହର ବାହାକୁ ।
ବାବୁ ତୋର ସଂକଳ୍ପକୁ ସବୁଙ୍କର ଆଶ
କେଉଁ ଅବଗୁଣେ ତୁହି ରଣେ ଦେଉ ଝାସ ।
କୌରବକୁଳ ରକ୍ଷକ ଲକ୍ଷ୍ମଣ କୁମର
ପାଣ୍ଡବକୁଳକୁ ତୁହି ଅଟୁ ସେ ପ୍ରକାର ।
ଏଡେବଡ଼ କୁଳକୁ ରେ ଅଳ୍ପ ପୁତ୍ର ବେନି
ଜୀଇଁ ରହିଥାଅ ବାବୁ ଦୀର୍ଘଆୟୁ ଯେନି ।
ଛାଡ଼ ମନୁ ବଇରଗ ବାହୁଡ଼ରେ ବାଳ
ଶଲ୍ୟ ଭୂରିଶ୍ରବା ତୋତେ ଦେବେ ଯମଆଳ ।
ମୋହର ବୋଲକୁ ବାବୁ ଦୃଢ଼କରି ଜାଣ
ଏଥୁଠାରୁ ବାହୁଡ଼ କୁ ଯାଅରେ ନନ୍ଦନ ।
ତୋତେ ପଠାଇଲ୍ଲ ପିତା ଅର୍ଜ୍ଜିଣ ବିବାଦ
ଧିକ ତାର ରାଜ୍ୟ ଆଶା ଧିକ ତା ସମ୍ପଦ ।
ଯେବଣ ପ୍ରାଣୀ ବାବୁରେ ବିବାଦେ ପଶିଲ୍ଲ
ଜୀଇଁ ଥାଉଁ ଥାଉଁ ଜାଣ ସେତୁ ହାବେ ମଲ୍ଲ ।
ଅଳମ୍ବୁଷ ବୋଲି ବାବୁ ଯେବଣ ରାକ୍ଷସ
ଦେଖିଲ୍ଲ ମାତ୍ରକେ ମାରି ଭକ୍ଷିବ ତୋ ମାଂସ ।
ସଖା କେହି ସଙ୍ଗତରେ ନାହିଁ ଆରେ ଶିଶୁ
ଜାଣୁ ଜାଣୁ ଅନଳରେ କପା ଆସି ପଶୁ ।
ମୁହିଁ ତୋହର ଆପଦ ଯେବେ ଆରେ ବାଳ
କେମନ୍ତେ ଦେଖିବ ମୁହିଁ ଥାଇ ତୋର କାଳ
ସମରେ ପଶିଲେ ତାକୁ ଅବଶ୍ୟ ଯେ ମାରି
ଧର୍ମ ଅଧର୍ମ ବାବୁରେ କିଛି ନ ବିଚାରି ।
ମତ୍ତଗର୍ବେ ଜଣେ ପଶି ହରାଇବୁ କାର୍ଯ୍ୟ
ବାହୁଡ଼ ଯାଅ ରେ ବାବୁ ନ କର ତୁ ଲଜ ।
ମାତା ପିତାଙ୍କ ଆଗରେ ପୁତ୍ରଙ୍କ ଝିଙ୍କାସ
କେମନ୍ତେ ଦେଖିବ ମୁହିଁ ତୋହର ବିନାଶ ।
ଦୁଇ ମାଦ୍ରୀସୁତ ଭୀମ କୃଷ୍ଣ ଅରଜନ
ଏଥୁ ପଳାଇ ଯାଆନ୍ତୁ ଯେବଣ ଜୀବନ ।

ଏତେଦୂର ଯାଏ ଯେବେ ସେମାନେ ଆସନ୍ତେ
ତାଙ୍କ ଶିର ଛେଦିବ୍ୟନ୍ତି ତୋହର ଦେଖନ୍ତେ
ଗୁରୁନନ୍ଦନଙ୍କ ହିଙ୍ଗାସ ଶୁଣି ଅଭିମନ୍ୟୁ
ଗୁଣକୁ ଟଙ୍କାର କରି ଆମର୍ଷିଲା ଧନୁ ।
କୋପେ ପ୍ରତ୍ୟୁତ୍ତର ଦିଏ ସୁଭଦ୍ରାନନ୍ଦନ
ମିଛେହେଁ କେତେ ପ୍ରତିଜ୍ଞା କରୁଛ ହେ କର୍ଣ୍ଣ ।
ଭୀଷ୍ମ ଏମନ୍ତ ପ୍ରତିଜ୍ଞା କେତେ କରିଥିଲ
ରଣଯଜ୍ଞ କରି ସେହୁ ଶରଶଯ୍ୟା କଲ ।
ଏବେ ତୁମ୍ଭ ଦ୍ରୋଣଗୁରୁ ବାନ୍ଧିଲେ ମୁକୁଟ
ତାଙ୍କ ଦେଖନ୍ତେ ମାଇଲ ମୁହିଁ କେତେ ଥାଟ
ସେହୁ ହାର ଛାଡ଼ି ଯେବେ ନ ଯାନ୍ତେ ପଳାଇ
କଷ୍ଟେଁ ମାରିଥାନ୍ତି ଆଜ ତାହାଙ୍କୁ ଗୋଡ଼ାଇ ।
ଜୟଦ୍ରଥଙ୍କୁ ଈଶ୍ୱର ଯେବେ ଦେଲେ ଧନୁ
ତାହାର ଥାଟ ମନ୍ଥିଲା ଏହି ଅଭିମନ୍ୟୁ ।
ଏବେହେଁ ଶ୍ରୀ ନାଥ କୂଟ ଦେଖନ୍ତେ ତୁମ୍ଭର
ଦଶସହସ୍ର ଯୋଦ୍ଧାଙ୍କୁ କରିଲି ସଂହାର ।
ତୁମ୍ଭ ବୀରପଣ ସବୁ ଜାଣିଅଛି ମୁହିଁ
ମୋହ ଆଗେ ତୁମ୍ଭେ ଆଉ ନ କର ବଡ଼ାଇ ।
ଅର୍ଜ୍ଜୁନ ଥାଆନ୍ତେ ଏତେ ଗର୍ବ କରିଥାନ୍ତ
କେବଣ ପ୍ରତ୍ୟକ୍ଷେ ତୁମ୍ଭେ ଛାମୁରେ ରହନ୍ତ ।
ପଞ୍ଚାଳଦେଶେ ଦ୍ରୁପଦ ନୃପତିଙ୍କ ଘରେ
ଧନୁ ଆମର୍ଷି ନ ପାରି ପଟାର ଉପରେ ।
ଭୀଷ୍ମ ଦ୍ରୋଣ କୃପ ତୁମ୍ଭେ ଭୂରିଶ୍ରବା କୁଳେ
ଲକ୍ଷ ନ ବିନ୍ଧି ଲାଜରେ ବସିଲ ସକଳେ ।
ମୋ ପିତା ଲକ୍ଷ୍ୟବିନ୍ଧିଲେ ଯାଇ ତେତେବେଳେ
ପରଶୀ ନ ଦେଖି ତୁମ୍ଭେ ମାତି ରଣଗୋଳେ
ଲକ୍ଷେ ନୃପତିଙ୍କୁ ଘେନି କଲ ବହୁ ରଣ
କେତେ ଶାସ୍ତି ତୁମ୍ଭଙ୍କୁ ନ ଦେଲେ ଯେ ଅର୍ଜ୍ଜୁନ
ଭୀମ ତୁମ୍ଭଙ୍କୁ ରଥରୁ ଘୋଷାରି ଆଣିଲେ
ଜାନୁତଳେ ପକାଇଣ ଛାଡ଼ି ଦେଇଥିଲେ ।
ଘୋଷଯାତ୍ରା କରି ଗଲ କାମ୍ୟକ କାନନ
ସମ୍ପଦ ଦେଖାଇବାକୁ ଗର୍ବକରି ମନ ।
ଏକରଥେ ଆସି ଚିତ୍ରସେନ ବିଦ୍ୟାଧର
ଦୁର୍ଯ୍ୟୋଧନ କେଶ ଧରି ବାନ୍ଧିଲା ରଥର ।
ରାଜାର ମଇଷ ହୋଇ ଭଣ୍ଡାଇଣ ଖାଅ
ବିପତ୍ତିବେଳେ ରାଜାଙ୍କୁ ଛାଡ଼ିଣ ପଳାଅ ।

ଚିତ୍ରସେନ ଗନ୍ଧର୍ବଙ୍କୁ ପିତା କୋପ କଲା
ଉପ୍ତେ ଦୁର୍ଯ୍ୟୋଧନଙ୍କୁ ଯେ ଆକାଶୁ ଛାଡ଼ିଲା ।
ଶରରେ ପଥ ବାନ୍ଧିଣ ପିତା ଫାଲଗୁନ
ଯୁଧିଷ୍ଠିରଙ୍କ ପାଦତଳେ ପକାଇଲେ ଆଣି ।
ନିର୍ଲ୍ଲଜ ଆତ୍ମା ଯେବଣ ତୁମ୍ଭେ ଅଛ କରିଁ
ସେବେଳେ ପଳାଇଗଲ ପାଇ ବହୁଶାସ୍ତି ।
ସୁଭଦ୍ରା ବିଭାକୁ ଗଲ ବଳରାମ ବୋଲେ
ଏକା ଅର୍ଜ୍ଜୁନ ତୁମ୍ଭଙ୍କୁ କି ଶାସ୍ତି ନ ଦେଲେ ।
ବିରାଟ ରାଜ୍ୟକୁ ଗଲ ଗୋଧନ ହରଣେ
ସବୁଙ୍କୁ ମୋହ କରିଲେ ପୁଣି ଅରଜୁନେ ।
ସବୁରି ଶିରୁ କାଢ଼ିଲେ ମୁକୁଟ ଶ୍ରୀଭୂଷା
ନିର୍ଲ୍ଲଜ ଆତ୍ମାକୁ ପୁଣି ତୁମ୍ଭେ କଲ ଆଶା ।
ଚନ୍ଦ୍ରାବତୀକି ହରିଣ ଯେ ଶାମ୍ବକୁମର
ତାହାପାଇଁ ତୁମ୍ଭେ କେତେ ନ କଲ ସମର ।
ଏକା ମୋ ପିତା ସେବେଳେ ଯା କରିଛି ଜାଣ
ଭୂରିଶ୍ରବା ଧୃଷ୍ଟସହ ତୁମ୍ଭେ କଲ ରଣ ।
ପାଣ୍ଡବେ ଶର ମାରିଣ କଲେ ଖଣ୍ଡ ଖଣ୍ଡ
ନାଶ ନ କରି ମୁଣ୍ଡିଲେ ସବୁଙ୍କର ମୁଣ୍ଡ ।
ମାନେନ୍ଦ୍ରୀ ହରଣେ ଲଭିଅଛ ଯେ ଅବସ୍ଥା
କହିଲେ ନ ସରେ ତୁମ୍ଭମାନଙ୍କର କଥା ।
ତୁମ୍ଭେ କର୍ଣ୍ଣ କେତେ ମୋତେ କରୁଅଛ ସାନ
ମୋର ପିତା ନୁହନ୍ତି କି ପାଣ୍ଡବ ଅର୍ଜ୍ଜୁନ ।
ହରି ବଳରାମ ମୋର ସୋଦର ମଉଳା
ପୂର୍ଣ୍ଣ ଶରଚନ୍ଦ୍ରମୁଖ କି ସୁନ୍ଦର କଳା ।
ଅର୍ଜ୍ଜୁନଙ୍କ ସମାନ ଯେ ଅଟେ ମୋର ବଳ
ମୋ ହାତେ ନିଧନ ହେବେ କଉରବ ଦଳ ।
କ୍ଷତ୍ରୀପୁତ୍ର ହୋଇ ଯିବା ବିଦ୍ୟାଗୁଣ ଥିଲେ
ସାନ ବଡ଼ ଜଣାଯିବ ସମରେ ପଶିଲେ ।
କଣିକ ଅଗ୍ନି ସଂସାର ପୁଣ ଦହିପାରେ
ଲଭିଲେ ବିଷକୁ ରେଣୁସମ ପ୍ରାଣୀ ମରେ ।
ବାସୁଦେବ ସାନ ଜନ୍ମ ଦେବକୀର କୋଳେ
ଅଷ୍ଟମଲ୍ଲ ମାଇଲେ ସେ ଖେଳ କୁତୂହଳେ ।
ସାନ ବୋଲିଣ ନ ବୋଲ ଦେଖ ଯୁଦ୍ଧ ମୋର
ଗରୁଡ଼ ଯେ ଏକା ଜାଣ ହୋଇ ଅବତାର ।
ନାଗବଳ ନିସୂଦନ କଲା ଏକା ହୋଇ
ଆହେ କର୍ଣ୍ଣ ମୁଁ ଗରୁଡ଼ ତୁମ୍ଭେ ଜାଣ ଅହି ।

କେ ଆଜ କଣିକ ରଣେ ସାକ୍ଷାତରେ ଦେଖ
ସାନବଡ଼ ଜଣାଯିବ ଦେଖିଲେ ପ୍ରତ୍ୟକ୍ଷ ।
ଏକନ୍ତେ ଆସନ୍ତ ଯେବେ ଇନ୍ଦୁରନ୍ତୁ ଘେଲେ
ସେହି ଯୁଝି ପାରବେ କି ମାର୍ଜାରର ତୁଲେ ।
ତୁମ୍ଭେ ତ ସେହି ଇନ୍ଦୁର ମୁଁ ଅଟେ ମାର୍ଜାର
ପିମ୍ପୁଡ଼ିକ ମରବନ୍ତ ଯେସନେ ପାଦର ।
ଅଗସ୍ତି ଗଣ୍ଡୁଷକରେ ସିନ୍ଧୁ କଲେ ପାନ
ଆହେ କର୍ଣ୍ଣ ତୁମ୍ଭେ ହେଲ ସାଗର ସମାନ ।
ତୁମ୍ଭେ ସେ ସାଗର ମୁହିଁ ଅଟଇ ଅଗସ୍ତି
ନିମିଷକେ ଗଣ୍ଡୁଷେ ମୁଁ ପିଇବି ସବୃନ୍ତ ।
ଆହେକର୍ଣ୍ଣ ତୁମ୍ଭେ ଅଟ ଯେସନେ ତୁଳବନ
ମୁଁ ବଡ଼ବା ଅଗ୍ନି ଜାଣ ଦହିବ ସକଳ ।
ତୁମ୍ଭେ କର୍ଣ୍ଣ ଆଜ ନଷ୍ଟେଁ ହରାଇବ ବୁଦ୍ଧି
କୋଇଲା ବାକ୍ୟ ନ କର ହରାଇଲ ନିଧି ।
ଏତେବେଳେ ହୋଇଥାନ୍ତ ପାଣ୍ଡବଙ୍କ ଜ୍ୟେଷ୍ଠ
ଲକ୍ଷେ ରାଜାଙ୍କ ଉପରେ ହୋଇଥାନ୍ତ ଶ୍ରେଷ୍ଠ ।
ଶାସ୍ତ୍ର ପଢ଼ିଲେ ନ ଉଠେ ହାରିଲେଣି ଦ୍ରୋଣ
ପଥ ନ ଛାଡ଼ିଲେ ତବ ପ୍ରାଣ ଅକାରଣ ।
ତୁମ୍ଭେ ମୋର ଜ୍ୟେଷ୍ଠ ତାତ ବୋଲିଣ ଶୁଣିଲି
ଗୁରୁବୋଲି ଏତେବେଳଯାଏ ମୁଁ ସହିଲି ।
ଯଦ୍ୟପି ପର୍ବତ ଅଟେ ଅତ୍ୟନ୍ତ କଠିନ
ବଜ୍ର ତାହାକୁ କି କରି ନ ପାରଇ ଚୂର୍ଣ୍ଣ ।
ସେପରି ମୋ ଶର ବଜ୍ର ତୁମ୍ଭେ ପର୍ବତ
ବର୍ଷଣ ତୁମ୍ଭମାନଙ୍କୁ କରିବ ନିପାତ ।
ଆହେ କର୍ଣ୍ଣ ତୁମ୍ଭେ ମୋତେ ମଣ ସାନବୋଲି
ମାହାକ୍ଷକି ଯୁ ରଣରେ ଦେଖ ମେଳୁ ବୋଲି ।
ଅଭିମନ୍ୟୁ ବାକ୍ୟେ କର୍ଣ୍ଣ ଅତ୍ୟନ୍ତ କୋପିଲା
ବାହାନାଦ କରିଣ ସେ ଧନୁ ଆମସ୍ଥିଲା ।
ଆକର୍ଷି ସ୍ପର୍ଶିଲା ପୁଣି ନାରାଚ ପୂରାଇ
ବୋଲେ ତୋତେମାଇଲେ ରେ ପୌରୁଷ ତ ନାହିଁ
ମହାକୋପରେ ରାଧେୟ ଶର କଲା ବୃଷ୍ଟି
ଏକାଥରକେ ନାରାଚ ବନ୍ଧେ ଚଉଷଠି ।
ପଞ୍ଚ ଲକ୍ଷ ଶର ବନ୍ଧି ସୁଭଦ୍ରାନନ୍ଦନ
ସମସ୍ତ ନାରାଚ ତାର ଛେଦିଲା ବହନ ।
ବାଣାଘାତେ କର୍ଣ୍ଣଙ୍କର କୋପେ ପ୍ରଜ୍ୱଳିତ
କ୍ରୋଧରେ ବନ୍ଧିଲା ଆଦ୍ର୍ଧବଳ ଯେ ନାରାଚ ।

ପାଞ୍ଚଶତ ଶର ବନ୍ଧି ଅର୍ଜୁନ କୁମର
କର୍ଣ୍ଣର ନାରାଚମାନ କଲା ଛାରଖାର ।
ପୁଣି ରାଧେୟ ସହସ୍ର ନାରାଚ ପୂରାଇ
ସଜାଇ ବନ୍ଧିଲା ଅତି କୋପଭର ହୋଇ ।
ସେ ଶର ଆସିବା ଅଭିମନ୍ୟୁ ଯେ ଦେଖିଲା
ନିଜେ ପ୍ରତିଶର କରି ତା ସର୍ବ ଛେଦିଲା ।
ତାହା ଦେଖିକରି କର୍ଣ୍ଣ ହୋଇ କ୍ରୋଧଭର
ଶରେକ ମାରି ସମସ୍ତ କଲା ଅନ୍ଧକାର ।
ବରୁଣ ଶରେକ ମାରି ଅର୍ଜୁନ କୁମର
କର୍ଣ୍ଣ ଅନ୍ଧକାର ଶର କରିଦେଲା ଦୂର ।
ସମର ବଅର୍ଥ ଦେଖି କର୍ଣ୍ଣ ମହାରଥୀ
ପଚାଶ ନାରାଚ ଘେନି ବନ୍ଧିଲା ତୁରତ ।
କୋପେ ଅଭିମନ୍ୟୁ ତୀକ୍ଷ୍ଣ ବାଣେକ ମାରିଲା
ନାରାଚ ଛେଦି କର୍ଣ୍ଣର ସେହ୍ଲାକୁ ଭେଦିଲା ।
ଯେସନେ ଯାଇ ବଦନେ ପଶେ କାଳସର୍ପ
ସେରୂପେ ତା ଦେହେ ପଶି ଭାଙ୍ଗିଲା ତା ଦର୍ପ ।
ସାଷ୍ଟାମ ହୋଇଣ କର୍ଣ୍ଣ ଧନୁଶର ଧରି
ତିରିଶ ବାଣ ବନ୍ଧିଲା ଅତି କୋପକରି ।
ପଚିଶ ବାଣ ବନ୍ଧିଲା କୋପେ ଅଭିମନ୍ୟୁ
ତତକ୍ଷଣେ କର୍ଣ୍ଣର ସେ ଛେଦିଲାକ ଧନୁ ।
ପୁଣି ଶତେକବାଣ କୋପେ ତାହାକୁ ପ୍ରହାରି
ହୟ ସାରଥି ରଥକୁ ଛେଦିଲ ତାହାରି ।
ବିରଥ ହୋଇଲା ସେହି ରାଧେୟର ସୁତ
ପୁନଶ୍ଚ ଚଢ଼ିଲା ଯାଇ ଗଜ ମଦମତ୍ତ ।
ବାଛି ବାଛି ଜ୍ୱଳାବଳ ବାଣ ବେଗଭରେ
ସହସ୍ରେକ ବନ୍ଧିଲା ସେ ଅଭିମନ୍ୟୁ ଘରେ ।
ସୁଭଦ୍ରା ନନ୍ଦନ ସେହି ଶର ଆସୁ ଜାଣି
କର୍ଣ୍ଣର ସେ ଶର ସବୁ ପକାଇଲା ହାଣି ।
ହାବୋଡ଼ା ଶର ବର୍ଷଣ ପୁଣି ଅଭିମନ୍ୟୁ
ଗଜ କନ୍ଧୁ ଖସି ତଳେ ପଡ଼େ ସୂର୍ଯ୍ୟସୂନୁ ।
ଧରରେ ଉପେଇମଲ୍ଲ ପଢ଼ିଗଲା ଯାଇ
ଦେଖି ଅଭିମନ୍ୟୁ ଜୟ ଶଙ୍ଖଙ୍କଦ ଭହିଁ ।
ଆକାଶକୁ ଶୁଭିଲା ସେ ଶଙ୍ଖର ଯେ ଧ୍ୱନି
ଜଳଧର ଦ୍ୟହେ ତାହା ଶୁଣି ଚକ୍ରପାଣି ।
ହୃଦ ମଧ୍ୟରେ ଚିନ୍ତିତ ହେଲେ ଦେବରାଜ
ସମରରେ ଅଭିମନ୍ୟୁ ନାଶଯିବ ଆଜ ।

ଏଣୁ ଦୁଃଖ ମନମଧ୍ୟୁ ନ ହୋଇଲା ଦୂର
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦ କଲେ ଚକ୍ରଧର ।
ବାହୁଲେକ ତୁରଙ୍ଗମ ବେଗ ବଇତ୍ୟାଣି
ଯାହାର କୂଟ କପଟ କହିଲେ ନ ସରି ।
ମାୟାରେ କରିଥିବାରୁ ମୋହ ଜନାର୍ଦ୍ଦନ
ଜ୍ଞାନସ୍ଥାନେ ମହାରଣ କଲେକ ଅର୍ଜ୍ଜୁନ ।
କର୍ଣ୍ଣ ମୋହ ହେବା ଦେଖି ସୁଭଦ୍ରାର ବଳା
ସାରଥିକ ବୋଲେ ମୋର ରଥ ବେଗେ ଚଳା ।
କର୍ଣ୍ଣବୀର ପଡ଼ିଅଛି ଚେତନା ହଜାଇ
ଶୂନ୍ୟମାର୍ଗେ ସେ ସାରଥି ରଥ ନେଲା ବାହି ।
ତୃତୀୟ ଦ୍ୱାର ଜିଣିଣ ଅଭିମନ୍ୟୁ ରଥ
ଚତୁର୍ଥ ଦ୍ୱାରେ ମିଳିଲା ଯାଇ ସେ ତ୍ୱରିତ ।
ରଥ ଗଜ ଅଶ୍ୱ ସେନା ଅତ୍ୟନ୍ତ ଗହଳ
ସମୁଦ୍ର ମନ୍ଥନ ପରି ଶୁଭଇ ଚହଳ ।
ପାଞ୍ଚକୋଟି ଯୋଦ୍ଧା ଭଲେ ସପ୍ତ ଗୁରୁ ଶଲ୍ୟ
ଦ୍ୱାର ରୋଧିଲା ଶରଚଳୁକ ମହାମଲ୍ଲ ।
ଏହା ଦେଖି କୁମରର ନ ସ୍ଫୁରଇ କିଛି
ଗୋଟିଏ ମାତ୍ର ସାରଥି ସଖା ହୋଇଅଛି ।
ଦେଖିଲା ଦ୍ୱାରେ ପଞ୍ଚାଶକୋଟି ଛନ୍ତି ରଥୀ
ଏକମୁଖ ହୋଇ ସର୍ବେ ନାରାଚ ଛାଡ଼ନ୍ତି ।
ବରଷା କାଳରେ ଯେହ୍ନେ ବରଷଇ ନୀର
ସେହିପରି ରଥୀମାନେ ବରଷନ୍ତି ଶର ।
କରକା ଗହନେ ଯେହ୍ନେ ପଡ଼େ ନିରନ୍ତର
ତହୁଁ ବଳ ଶତେ ଗୁଣେ ପଡ଼ୁଅଛି ଶର ।
ନାରାଚ ଆସିବା ଦେଖି ବୀର ଅଭିମନ୍ୟୁ
ସାରଥିକୁ କହି କରେ ଧଇଲାକ ଧନୁ ।
ଧନୁରେ ଆରଦ୍ରାବଳ ନାରାଚ ପୂରାଇ
ଛନ୍ଦବାର ଅସ୍ତ୍ର ସବୁ ଦେଲାକ ଉଡ଼ାଇ ।
ସାରଥିକ ବୋଇଲା ସେ ସମ୍ଭାଳ ମୋ ରଥ
ଦୁଃସହ ସଂଗ୍ରାମ ହୋଇବ ଯେ ଅପ୍ରମିତ ।
ସାରଥି ବୋଇଲା ଏ ତ ଅଗୋଚର ଥାଟ
ଭବସ ଅନ୍ଧାର ମୋତେ ନ ଦିଶଇ ବାଟ ।
ସମ୍ଭାଳିଣ ଯୁଦ୍ଧକର ତୁମ୍ଭେ ବାଳବଳି
ଗଗନପଥେ ରଥ ମୁଁ ଧୁଆଇ ନେଉଛି ।
ଅଭିମନ୍ୟୁ ବୋଇଲା ଯା ନୁହଇ ଉଚିତ
କ୍ଷତ୍ରୀକୁଳେ ଜନ୍ମି ଏହା ଉଚିତ ନୋହନ୍ତ ।

ଅଶ୍ୱକୁ ସମ୍ଭାଳି ମୋର ରଥ ବେଗେ ବାହା
ମୂର୍ଚ୍ଛି ମହାକ୍ଷତ୍ରି ମୋତେ ନ କହ ତୁ ଏହା ।
ଏପରି କୁମରର ବାକ୍ୟ ଶୁଣିଣ ସାରଥି
ବାହିଲା ଆକାଶେ ରଥ ଯେହ୍ନେ ସୁରପତି ।
ଏହା ଦେଖି କୃପାଚାର୍ଯ୍ୟ ଶଲ୍ୟଙ୍କୁ ପଚାରି
ଦେଖିଲତ ଅପୂର୍ବକ ଯୁଦ୍ଧ ଯେ ଏହାର ।
ଇନ୍ଦ୍ର ଗୋବିନ୍ଦ କୁବେର ଅବା ଚିତ୍ରସେନ
ଆକାଶୁ ଖସଇ ରଥ ପୁଷ୍ପକ ସମାନ ।
ଶଲ୍ୟ ବୋଇଲେ ନୁହନ୍ତି ଏ ତ ଦେବଗଣ
କୁରୁକ୍ଷେତ୍ର ଯୁଦ୍ଧେ ତାଙ୍କ କିସ ପ୍ରୟୋଜନ ।
କୃଷ୍ଣ କିବା ଅର୍ଜ୍ଜୁନ ଏ ନୁହଇଟି ଜାଣ
ନହେଁ ନନ୍ଦୀଘୋଷ ଚାହିଁ ଯେ କପିକେତନ ।
ନାରାଚ ବାନ୍ଧଇ ଏତୁ ଉପୋଧିକୁ ଗୁଡ଼ି
ବେଗ ବେଗ ହୋଇ ରଥ ଆସୁଅଛି ମାଡ଼ି ।
ଏମନ୍ତ ବଚର କରୁ ସେ ଧବଳ ରଥ
ଶଲ୍ୟଙ୍କ ସନ୍ନିଧେ ଯାଇ ହେଲା ଉପଗତ ।
ଶ୍ରୀକରେ ଯେ ଧନୁ ତାର ନଉସସ୍ର ବଳ
ଗୁଣନାଦେ ଆକାଶରେ କମ୍ପେ ଆଖଣ୍ଡଳ ।
ନାରାଚ ବାନ୍ଧଇ କରି ଅଣଉପରୋଧ
ପଙ୍କତ ଛେଦଇ ଯେଉଁ ଶର ହେଲେ ବଦ୍ଧ ।
ହସ୍ତି ଗଜ ରଥୀ ରଥ ପଦାତି ସଙ୍ଗତେ
ସମସ୍ତେ କ୍ଷତ ହୁଅନ୍ତି ନାରାଚ ପତନେ ।
ଯୋଦ୍ଧାଏ ଅନେକ ବାଣ ଛାଡ଼ନ୍ତି ତାହାକୁ
ନାରାଚ ନ ଭେଦଇ ସେ ରଥ ଧବଳକୁ ।
କେତନ ନାମେ ବସିଛି ଯେବଣ ସାରଥି
କ୍ଷଣେ ରଥ ଶୂନ୍ୟ କରେ କ୍ଷଣେ ଭୂମିଗତି ।
ସ୍ଫଟିକ ରଥରେ ନାନା ରତ୍ନ ଅଛି ଜଡ଼ି
ଚର୍ତ୍ତୁ ଦୁଏ ବଜ୍ରଶକ୍ତି ତହିଁରେ ଯେ ପଡ଼ି ।
ଏକା ପ୍ରହାରକେ ଫୁଟେ ଦଶଦଂଶ ରଥୀ
ଅନିବାର ଶର ତାର ବୃଥା ନ ହୁଅନ୍ତି ।
ସତ୍ୟବର ବୋଲିକରି ତହିଁ ଏକ ଗଦେ
ତାର ତୁଲେ ପାରିଦଣ୍ଡ ବଂଶୋଭର ଶଏ ।
ଗୋକ୍ଷୀର ଶ୍ୱେତ ସମାନ ତାର ଅଶ୍ୱମାନ
ମଣ୍ଡି ହୋଇଛନ୍ତି ନାନା ରତନ ଭୂଷଣ ।
ମଦମତ୍ତ ଗଜ ଆଉ ଅଶ୍ୱ ମହାତେଜା
କୋପଭର ହୋଇଣ ସେ ଆସି ଗଜରାଜ ।

ନବସହସ୍ର ଗଜନ ଛନ୍ତି ତାର ତୁଲେ
ରୋଷରେ ଜାର କରି ଅଭିମନ୍ୟୁଙ୍କୁ ବେଢ଼ିଲେ
ଶରଘାତ ନିରନ୍ତରେ ଯେସନ୍ତେ ବର୍ଷେ ପାଣି
ଝଲକନ୍ତି ସେ ନାରାଚ ବିଦ୍ୟୁତ୍ତେଜ ଜିଣି ।
ଶ୍ରୀଭୁଜେ ଶୋଭଇ ଆଦ୍ରିବଜ୍ର ସମ ଧନୁ
ନବସହସ୍ର ଯୋଦ୍ଧା ତୁଲେ ଯୁଦ୍ଧେ ଅଭିମନ୍ୟୁ ।
କୃତାନ୍ତକ ବୋଲି କରି ଏକଇ ନାରାଚ
ବିନ୍ଧିଲେ ସତ୍ୟବ୍ରତର ହୋଇବ ବହ୍ନିର୍ଯ୍ୟ ।
ଏହି ଶରକୁ ସେ କାଣ୍ଡେ କଲାକ ସନ୍ଧାନ
ଆକର୍ଷି ବିନ୍ଧିଲା ତାହା ସୁଭଦ୍ରା ନନ୍ଦନ ।
ପ୍ରଳୟାଗ୍ନି ସମାନରେ ଉଠିଲା ତା ତେଜ
ଶୁଷ୍କତରୁ ସମ ସବୁ କଲାକ ବହ୍ନିର୍ଯ୍ୟ ।
ଆହେ ମନୁରାଜା ଅଗ୍ନି ସମ ସେହି ଶର
କ୍ଷତ୍ରିଙ୍କ ଉପରେ ପଡ଼ି କଲା ଛାରଖାର ।
ଅଶ୍ୱ ଗଜ ରଥ ରଥୀ ସାରଥି ସହିତେ
ସର୍ବେ ଦହନ ହୋଇଲେ ନାରାଚ ପଡ଼ନ୍ତେ ।
ସର୍ବ ଜୟ କରି ଚଳେ ବୀର ଅଭିମନ୍ୟୁ
ପଞ୍ଚମଦ୍ୱାରେ ଭେଟିଲେ ଗୋଲକର ସୂନୁ ।
କୃପାଚାର୍ଯ୍ୟ ପୁଚ୍ଛିଲେ ଏ ଅଟେ କା କୁମର
ଶଲ୍ୟ ବୋଇଲେ ଏ ନାତି ଅଟଇ ଆମ୍ଭର ।
କୃପ ବୋଇଲେ ଏହାର ବଡ଼ଇ ସାହସ
ବାଳପୁଣ ହୋଇ ଏଡ଼େ ଯୁଦ୍ଧେ ଦେଲା ଝାସ ।
ସୈନ୍ୟଙ୍କ ଭଙ୍ଗ ଦେଖିଣ କୋପକଲେ ଗୁରୁ
ଉଦ୍ବୋଧ ଗ୍ରନ୍ଥି ବିନ୍ଧିଲେ ଅଗ୍ନିବାଣ ଦୁରୁ ।
ବଜ୍ରପ୍ରାୟେ ସେ ନାରାଚ ଦୂରରୁ ଆସିଲା
ବନ ଅନଳ ଜାଣି ତା ତେଜ ପ୍ରକାଶିଲା ।
ମେଘାସ୍ତ୍ର କାଢ଼ି ବିନ୍ଧିଲା ସୁଭଦ୍ରା କୁମର
ବରଷିଲେ ମେଘମାଳ ହୋଇଣ ପ୍ରଚୁର ।
ପ୍ରଳୟ କାଳକୁ ଜଣି ବରଷେ ଗଳଗାଜ
ସହି ନ ପାରି ଯୋଦ୍ଧାଏ ପଳାଇଲେ ଭଜ ।
ଅଗ୍ନିର ତେଜକୁ ଯହୁଁ ଲିଭାଇଲା ଜଳ
ଦେଖିଣ ପ୍ରଶଂସା କଲେ ସର୍ବ ଦିଗପାଳ ।
ପୁଣି କୃପ ସପ୍ତଶିର ନାରାଚକୁ ଧରି
ବିନ୍ଧିଲେ ସେହି ନାରାଚ ମନ୍ତ୍ରକୁ ସୁମରି ।
ସର୍ପର ମୁଖ ଯେସନେ ଦିଶଇ ବିସ୍ତାର
ସେହି ପ୍ରକାରେ ଦିଶଇ ସପ୍ତଶିର ଶର ।
ମହାମେଘ ଜାଣି ସେ ଆସିଲା ଗଳଗାଜ
ଉପରୁ କି ଗିରିଖଣ୍ଡେ ପଡ଼ୁଅଛି ଘେନ ।
ସାରଥି ଦେଖି ବୋଇଲେ ସମ୍ଭାଳ ମୋ ରଥ
ଦେବଅସ୍ତ୍ର ବିନ୍ଧେ କୃପ ହୋଇ କ୍ରୋଧାନ୍ୱିତ ।
କେତନବାକ୍ୟେ କୁମର ହେଲେ କୋପମୂର୍ତ୍ତି
ଧନୁରେ ଯୋଚି ବିନ୍ଧିଲା ଅମୋଘ ଶକତି ।
ଶକତିର ତେଜେ କୃପ ହୋଇ ତେଜୋହୀନ
ପୁଣିହିଁ ବିନ୍ଧିଲେ ବେଗେ ସର୍ପଶର ଘେନ ।
ଗର୍ଜି ଧାଇଁଲେ ପନ୍ନଗେ ବିସ୍ତାରିଣ ଫେନ୍ତ
ଗରୁଡ଼ାସ୍ତ୍ରେ ଅଭିମନ୍ୟୁ ଛେଦିଲେ ତା ଦୁନ୍ତ ।
କୃପ ବୋଇଲେ କୁମର ଜୀବନ ତୋ ଧନ୍ୟ
ଏହା କହିଣ ବିନ୍ଧିଲେ ଅସ୍ତ୍ର ଅପଣନ ।
ଅଶୀ ନାରାଚ ବିନ୍ଧିଲେ ସେହି ବେନରଥୀ
ପଞ୍ଚଶରେ ଅଭିମନ୍ୟୁ ତାହା ଯେ କପାଟି ।
ସହସ୍ରେ ନାରାଚ ଶଲ୍ୟ ବିନ୍ଧିଲେ ତା ସଙ୍ଗେ
ପୁଣି କୃପ ସପ୍ତଶର ବିନ୍ଧିଲେ ସବ୍ୟଗ୍ରେ ।
ଚାରି ଅଶ୍ୱଙ୍କ ଉପରେ ଚାରିସହସ୍ର ଶର
ସାରଥିକ ସହସ୍ରେକ କଲାକ ପ୍ରହାର ।
ବିନ୍ଧିଲେ ଯେ ଅନନ୍ତାର ଶର ବେନିରଥୀ
ଅଭିମନ୍ୟୁ ଉପରକୁ ହୋଇ କୋପମୂର୍ତ୍ତି ।
ରଥ ଘୋଟିଣ ସେ ବାଣେ ଅନ୍ଧକାର ସୃଷ୍ଟି
ଆକାଶମଣ୍ଡଳେ ମହାମେଘ ଯଥା ଘୋଟି ।
ଅଭିମନ୍ୟୁ ବିନ୍ଧିଲେ ଯେ ଅର୍ଦ୍ଧଚନ୍ଦ୍ର ବାଣ
କୃପ ଶଲ୍ୟ ଅସ୍ତ୍ରକୁ ଯେ ଛେଦିଲ ସେ ବାଣ ।
ବିନ୍ଧି ବିମୁଖ ହୋଇଲେ ବେନି ମହାରଥୀ
ପ୍ରତିଶରେ ଅଭିମନ୍ୟୁ ଛେଦିଲ ତା ଧାଡ଼ି ,
ତହୁଁ ବାମ୍ୟକ ବାଣକୁ ବିନ୍ଧି କୃପାଚାର୍ଯ୍ୟ
ଅଭିମନ୍ୟୁ ବିଂଶବାଣେ କଲେ ତା ବହ୍ନିର୍ଯ୍ୟ ।
ତ୍ରିପୁରଶର ଯା ଇନ୍ଦ୍ରଦେବ ଦେଇଥିଲେ
ସେହି ଶର ଅଭିମନ୍ୟୁ ବେଗରେ ବିନ୍ଧିଲେ ।
ନବାଘ ବାଣକୁ ଯହୁଁ ବିନ୍ଧେ ଅଭିମନ୍ୟୁ
ଗଡ଼ି ସେ ଛିଡ଼ିଲା କୃପାଚାର୍ଯ୍ୟଙ୍କର ଧନୁ ।
ଲୁହାର ପଞ୍ଚଶର ଯେ ବିନ୍ଧି ପୁଣିମଣି
କୃପଙ୍କର ସାରଥିକୁ ପକାଇଲେ ହାଣି ।
ମୋହନ ଅସ୍ତ୍ରେକ ପୁଣି ବିନ୍ଧି ଅଭିମନ୍ୟୁ
ବାଣେ ଜର୍ଜ୍ଜରିତ କଲା କୃପଙ୍କର ତନୁ ।

ସମରେ ବିରଥୀ ହେଲେ କୃପ ମହାରଥୀ
ତହୁଁ ଆଗେ ରଣକଲେ ଶଲ୍ୟ ସେନାପତି ।
ପଞ୍ଚଷଠି ବାଣେ ଶଲ୍ୟ କଲେକ ପ୍ରଘାତ
ବେନବାଣେ ଛେଦିଲା ତା ଅର୍ଜ୍ଜୁନର ସୁତ ।
ଅନେକ ଶର ବିନ୍ଧିଲେ ଗର୍ଜ୍ଜି ଶଲ୍ୟଗୁରୁ
ସବୁ ଶରମାନ ଛେଦେ ଅଭିମନ୍ୟୁ ଦୂରୁ ।
ଏହିପରି ସମର ଯେ ହେଲା ଗୁରୁତାଣ
ଶର ଆଘାତରେ ଦେଖା ନ ଗଲା ଗଗନ ।
ପଞ୍ଚାଶର ବିନ୍ଧିଲେ ତହୁଁ ମହାରଥୀ
ଅଭିମନ୍ୟୁ ବଜ୍ରଶରେ ଛେଦିଲା ତୁରିତ ।
ପର୍ଶୁରାମ ଶର ଏକ ପେଷେ ଅଭିମନ୍ୟୁ
ସେହୁ ଫିଟି ଭେଦିଲା ଯେ ଶଲ୍ୟଙ୍କର ତନୁ ।
ଘେମେ ଘେମେ ଭେଦିଲାକ ଯହୁଁ ଖଷ୍‌କୋଣ
ଘାଏ ଅସ ଷ୍ଟମ ତହିଁ ହେଲେ ଶଲ୍ୟଗଣ ।
ରଥରେ ଉତ୍ତାନଶାୟୀ ହୋଇଲେ ଶଲ୍ୟରାୟେ
ଅଭିମନ୍ୟୁ ପଶିଲାକ ହୋଇଣ ନିର୍ଭୟେ ।
ବ୍ୟୂହ ଭେଦ ଜାଣିଲାକ ସୈନ୍ୟ ଏକାରଣ
ତାକୁ ଜିଣିବାକୁ କେହି ନୋହିଲେ ସମର୍ଥ ।
ପଞ୍ଚମ ଦୁଆର ଯୁଦ୍ଧ ଶୁଣ ଆହେ ଶ୍ରୋତା
ଅଶୀସହସ୍ର ରଥୀ ନବସହସ୍ର ଗଜ ମତ୍ତ ।
ଅଶ୍ୱ ଯୋଦ୍ଧା ସହ ଜନ ସାଗର ପଦାତି
ଏକମୁଖ ହୋଇ ସର୍ବେ ନାରାଚ ବିନ୍ଧନ୍ତି ।
କେ ଶତେ କେହୁ ସହସ୍ର ବାଣମାନ ମାରି
କେହୁ କେତେ ଯେ ବିନ୍ଧନ୍ତି ଜାଣିତ ନ ପାରି
ଶୂନ୍ୟେ ଭେଦିଯାଏ ସେହି ବାଣ ଜ୍ୱାଳାବଳୀ
ନାରଚେ ଅଦୃଶ୍ୟ ହେଲେ ଦେବ ଅଂଶୁମାଳୀ
ଅନ୍ଧକାର ଦିଶିଲା ଯେ ସେହି ରଣଭୂଇଁ
ଅନୁକ୍ଷଣେ ବିନ୍ଧିବାରୁ ମେଦିନୀ କମ୍ପଇ ।
ରଣରୋଳେ ଧନ୍ଦୋଳ ଯେ କହି ତ ନ ପାରି
ଶବଦ ହୁଅଇ ଯେହ୍ନେ ସମୁଦ୍ର ଲହରି ।
ବାଜଇ ଯେ ବିଜୟଘୋଷ ଢମକ ନିଶାଣ
ଘୋରନାଦ କରିଣ ଯେ ଗର୍ଜ୍ଜନ୍ତି ବାରଣ ।
ନରଶ୍ରେଷ୍ଠ ଯୋଦ୍ଧା ସେହୁ ବୀର ଅଭିମନ୍ୟୁ
ଶରବିନ୍ଧି ଛେଦିଲେ ସେ ସବୁଙ୍କର ଧନୁ ।
ପୁଣ ପୁଣ ସେ ନାରାଚ କରନ୍ତେଣ ଭେଦ
ରଥୀଙ୍କର ମୁଣ୍ଡ ଛିଡ଼ିପଡ଼େ ରଣମଧ୍ୟ ।

କେୟୂର କଙ୍କଣ ଆଦି ମୁକୁଟ ସ୍ୱର୍ଣ୍ଣଭୂଷା
ରକତ କର୍ଦ୍ଦମରେ ଯେ ହେଲା ମାଟିମିଶା ।
ତହୁଁ ରଥ ଭଗ୍ନହେଲା ମଲେ ବହୁ ହସ୍ତୀ
ଏକର ଉପରେ ପଡ଼ି ଆରେକ ରୁଦନ୍ତି ।
ପଦାତିଙ୍କ ସଂଖ୍ୟା କେହୁ କରିବ ଗଣନା
ଭୂମିରେ ପଡ଼ିଲେ କେତେ ରଥ ହୋଇ ଚୂନା
ଏକା ହୋଇ ଅଭିମନ୍ୟୁ ମନ୍ଥେ ସର୍ବଦଳ
ସମୁଦ୍ର ମନ୍ଥନେ ଯେହ୍ନେ ସ୍ୱଭଇ ଗରଳ ।
ଦେଖି ପ୍ରଶଂସନ୍ତି ଭୂରିଶ୍ରବା ମହାରଥୀ
ସାଧୁ ସାଧୁ ବାହୁଡ଼ି ତୁ ଅଟ ମହାକ୍ଷତ୍ରୀ ।
ଏହିପରି ପ୍ରଶଂସନ୍ତି ବହୁ ବଳବନ୍ତା
ଧନ୍ୟ ଧନ୍ୟ ଅଭିମନ୍ୟୁ ତୋର ପିତାମାତା
କୃଷ୍ଣାର୍ଜ୍ଜୁନ ସମାନରେ ତୋର ବଳବୁଦ୍ଧି
ପର୍ଶୁରାମ ପ୍ରାୟେ କ୍ଷତ୍ରୀ ତୁହି ମହାଯୋଦ୍ଧି ।
ସହଦେବ ସମ ମନ୍ତ୍ରୀ ଗୁଣେ ଗୁଣନିଧି
ଏକା ଜଣକେ ଏ ବ୍ୟୂହ ଅଇଲୁ ଯେ ଭେଦି ।
ବଳବନ୍ତ ପଣରେ ଯେପରି ବୃକୋଦର
ବେଦବନ୍ତ ପଣେ ଯେଉଁପରି ବେଦବର ।
କାଳାନଳ ବହ୍ନି ଯଥା ତେଜୋବନ୍ତ ପଣେ
ତଥା ଦୀପ୍ତି ଅଟେ ତୋର କୁରୁକ୍ଷେତ୍ର ରଣେ
ବିଦ୍ୟାବନ୍ତ ପଣେ ଯେଉଁପରି ବୃହସ୍ପତି
ଇନ୍ଦ୍ରରୂପେ ଯେଉଁପରି ଅଟେ ଶଚୀପତି ।
ନାରାଚ ବୃଷ୍ଟିକି ଅଟୁ ଦ୍ରୋଣମେଘ ପରି
ବଳୀ କୁରୁସୈନ୍ୟଙ୍କୁ ତୁହି ଅଟୁ ଯେ କେଶରୀ ।
ସହିବା ପଣକୁ ତୁହି ଅଟୁ ମହୀ ସମ
ସାଧକପଣେ ତୁ ଅଟୁ ଯେ ଗାଙ୍ଗୁ ସମାନ ।
ଏକାଥରକେ ଜିଣିଲୁ ମହାରଣ ଘୋର
ଏ ବଧିରେ ପ୍ରଶଂସିଲେ ସ୍ୱର୍ଗେ ଦିଗପାଳ ।
ଏତେବଡ଼ ଯୋଦ୍ଧାକୁ ଯେ ସାହା ନାହିଁ ଥାଟ
ଜଣକେ ମୂରୁଛା କଲା ଚକ୍ରବ୍ୟୂହ ବାଟ ।
ଭୂରିଶ୍ରବା ଅଳମ୍ବୁଷ ସୋମ ଭଗଦତ୍ତ
ବାହ୍ଲିକ କେଶୀ ଶବସା ଥିଲେ ରଣଜିତ ।
ଏ ସର୍ବଯୋଦ୍ଧା ସମରେ ଅପସରି ଗଲେ
ପୁଣି ଏକମୁଖେ ସର୍ବେ ବାଣ ଯେ ବିନ୍ଧିଲେ ।
ଶତେ ଶତେ ନାରାଚ ଯେ ଘେନିଛନ୍ତି କରେ
ଜୁଳୁଜୁଳା ପୋକ ପ୍ରାୟେ ଦିଶନ୍ତି ରଣରେ

ଏପରି ବହୁ ନାରାଚ କରନ୍ତେ ଯେ ବୃଷ୍ଟି
ଶତେ ନାରାଚେ ତା ଅଭିମନ୍ୟୁ ହେଲା କାଟି ।
କ୍ଷୁଦ୍ର ହୋଇଲେ ତାହାକୁ ସେ ନ ଗୁଡ଼ାଇ କେଣେ
ଦଶସସ୍ର ଯୋଦ୍ଧାସହ ଯୁଝେ ଏକା ଜଣେ ।
ନକ୍ଷତ୍ର ଭିତରେ ଯେସନ୍ତେ ଚନ୍ଦ୍ରମା ତେଜସ୍ୱୀ
କୁରୁକ୍ଷେତ୍ରେ ଅଭିମନ୍ୟୁ ସେହିପରି ଦିଶି ।
ଅପାର ସୈନ୍ୟବଳ ଯେ ଗହଳ ଧନ୍ଦୋଳ
ଶର ବୃଷ୍ଟିରେ ନ ଦିଶେ ଆକାଶ ମଣ୍ଡଳ ।
ସୈନ୍ୟ ପାଦରେଣୁ ଉଡ଼ି ନ ଦିଶେ ଆକାଶ
ଶର ନିବାରଣେ ଜାତ ସୁଭଦ୍ରାର ଶିଷ୍ୟ ।
ଏକା ହୋଇ କ୍ଷତ୍ରିୟଙ୍କୁ ଦେଲା ବହୁ ଦୁଃଖ
ସମରରେ ଯୋଦ୍ଧାମାନେ ହୋଇଲେ ବିମୁଖ ।
କର୍ଣ୍ଣାଟ ଦେଶ ରାଜନ ଅଟେ ଜାନୁକଣ୍ଠ
ଅର୍ବୁଦେ ଯୋଦ୍ଧା ଘେନିଣ ଉଗାଳିଲେ ବାଟ
ଶତ ଶତ ନାରାଚ ଯେ ଘେନି ତୀକ୍ଷ୍ଣ ମୁନା
ଉରତେ ବିନ୍ଧିଲା ସେହି ଅଭିମନ୍ୟୁ ସେନା ।
ସବୁ ଅନ୍ଧକାର ହେଲା ନ ଦିଶିଲା କିଛି
ରଥୀ ସାରଥି କିଏ ସେ କେଉଁଠାରେ ଅଛି ।
ସାରଥିକି ନ ଶୁଭଇ ଗୁଣଘୋଷ ନାଦ
ରଥୀମାନଙ୍କୁ ନ ଶୁଭେ ସାରଥି ଶବଦ ।
କେତନକୁ ନ ଦିଶଇ ଅର୍ଜ୍ଜୁନ ନନ୍ଦନ
ପୁଣିହିଁ ନ ଦିଶେ ତାକୁ ଧବଳ ସ୍ୟନ୍ଦନ ।
ଧନୁଘୋଷ ନ ଶୁଭନ୍ତେ ବଗ୍ଗରେ ସାରଥି
ରଥପରେ ନାହିଁ କିବା ଅର୍ଜ୍ଜୁନ ସନ୍ତତି ।
ଭାଳଇ ଯେ ଅଭିମନ୍ୟୁ ନ ଚଳଇ ରଥ
କେତନ ସାରଥି କିବା ହେଲା ଅଶକତ ।
ସାରଥି ଦୃଷ୍ଟି ଘୋଡର ନୋହିବାରୁ ଅଶ୍ୱ
ତାହା ଭବ କେତନର ଉଡ଼ିଲା ସାହସ ।
ଅଶ୍ୱ ଅଣ୍ଡାଳିଲା ଚହୁଁ ସାରଥି ବିକଳେ
ତିନଶତ ନାରାଚ ଯେ ପଡ଼େ ତାର ପରେ ।
ଘୋର ଅନ୍ଧାର ଦେଖିଣ ଚାଳିଲା ସାରଥି
ଉଠିଲେ ଅଶ୍ୱ ସକଳ ହେଲେ ନବେଗତି ।
ଅଭିମନ୍ୟୁ ଦେଖିଲା ଯେ ସୂତ ଅଛି ରଥେ
ଆବର ଦେଖିଲା ଅଶ୍ୱ ଚଳନ୍ତି ଉରତେ ।
ବୋଇଲେକ ଅଭିମନ୍ୟୁ ଶୁଣ ହେ କେତନ
ରଣ ଗୁଢ଼ ରଥ କପାଁ ଆଣିଲୁ ଗଗନ ।
କ୍ଷତ୍ରୀ କୁଳରେ ଅଯଶ କଲୁ ମୋରେ ଆଣି
କସ ଯେ ବୋଲିବେ ପିତା ମାମୁଁ ଚକ୍ରପାଣି ।
ସମର କାଳରେ କ୍ଷତ୍ରୀ ଯେବେ ପିଠି ଦିଅନ୍ତି
ଯାବନ୍ତେ ଅକୀର୍ତ୍ତି ମଲେ ହୁଏ ନର୍କଗତି ।
ତୁମର ବଚନେ ରଥ ବାହୁଲା ସାରଥି
ସମର କ୍ଷେତ୍ରରେ ସେ ଯେ ମିଳିଲା ଝଟତି ।
ଭରତେ ହାରେଇମଲ୍ଲ ଅଟେ ଅଭିମନ୍ୟୁ
ଅପାର କୁରୁ-ସାଗର ମନ୍ଥେ ଧରି ଧନୁ ।
ବହୁବଳ ଘେନି ଜାନୁଘଣ୍ଟ ନରପତି
ଅଭିମନ୍ୟୁକୁ ଦେଖିଣ ଧାଇଁ ଶୀଘ୍ରଗତି ।
ଲକ୍ଷେପୁର ଜଣ ଅଭିମନ୍ୟୁକୁ ବେଢ଼ିଲା
ଗଦା ମୁଦ୍‌ଗର ଭୁଷଣ୍ଡି କଠାଇ ମାରିଲା ।
ସୁଭଦ୍ରାନନ୍ଦନ ଅଟେ କଷା ଜଗତ୍‌ଜେଠି
ନନ୍ଦନେଣ ଅଇଭ୍ରତ ଯୋଦ୍ଧା ଗଲେ ଫୁଟି ।
ପୁଣ ପୁଣ ପ୍ରହାର ଯେ କରେ ବୀରମଣି
ପାଶୁପତ ଶରେ ଗଜ ଯୋଦ୍ଧା ଲକ୍ଷେ ହାଣି ।
କୁତ ଜ୍ୟ ଶର ଯାହା ଯମ ଦେଇଥିଲେ
ସେ ଅସ୍ତ୍ର ପେଷନ୍ତେ ତିନସହସ୍ର ରଥୀ ମଲେ ।
ରୁଧିରରେ କରଦମ ହୋଇଲାକ ମହୀ
ଜାନୁଘଣ୍ଟ ସମଦଣ୍ଡ ନ ରହିଲେ କେହି ।
ବାୟୁବ୍ୟ ଅସ୍ତ୍ର ବିନ୍ଧିଲା ସୁଭଦ୍ରାନନ୍ଦନ
ସେ ବାଣରେ ଉଡ଼ିଗଲେ ବହୁତର ସୈନ୍ୟ ।
ରଥ ଯୋଦ୍ଧା ଗଜ ବାଜୀ ଉଡ଼ିଲେ ଗଗନେ
ଅପାର ଦୂରେ ପଡ଼ିଲେ ଯାଇଣ ସେମାନେ ।
ପୁଣି ତୀକ୍ଷ୍ଣଶର କାଢ଼ି ସୁଭଦ୍ରା ନନ୍ଦନ
ଧନୁରେ ଯୋଖି ତାହାଙ୍କୁ ବିନ୍ଧନ୍ତେ ତକ୍ଷଣ ।
ଜାନୁଘଣ୍ଟର ବାହୁରେ ତାହା ଗଲା ଫୁଟି
ରଥ ଉପରୁ ପଡ଼ିଲା ସେହି ମଣ୍ଡଳେଟି ।
ତାର କୁଳେ ରଥୀ ଦୁଇସହସ୍ର ପାରବଣ୍ଡ
ନାରଚ ବଣାତେ ସର୍ବେ ହେଲେ ଖଣ୍ଡ ଖଣ୍ଡ
ପୁନରପି ବହୁ ଯୋଦ୍ଧା ଆବୋରନ୍ତେ ଆସି
ଅଗ୍ନି ଅସ୍ତ୍ର ଅଭିମନ୍ୟୁ ତାହାଙ୍କୁ ବିନାଶି ।
ଜୟୁଷଙ୍ଗ ବଜାଇଣ ପାର୍ଥସୁତ ଚଳେ
ଷଷ୍ଠଦ୍ୱାରେ ଭୂରିଶ୍ରବା ସମ୍ମୁଖରେ ମିଳେ ।
ଅଶୀକୋଟି ଯୋଦ୍ଧା ଘେନି ଭୂରିଶ୍ରବା ରଥୀ
ଷଷ୍ଠଦ୍ୱାରେ ଥିଲେ ଯୁଦ୍ଧେ ଉଠିଲେ ଝଟତି ।

ଦେଖି ଅଭିମନ୍ୟୁ ତାଙ୍କୁ ରଥରେ ପ୍ରଣମି
ବୋଇଲେ ଦୁଆର ଗ୍ରଡ଼ଦଅ ଦେବ ସ୍ୱାମୀ ।
ଅପାର କାଳର ତୁମ୍ଭେ ଅଟ କୁଳବୃଦ୍ଧ
ମୁହିଁ ବାଳୁତ ମୋ ସଙ୍ଗେ ତୁମ୍ଭର କି ଯୁଦ୍ଧ ।
ତୁମ୍ଭେ ମୋ ଗୁରୁଙ୍କ ଗୁରୁ ମୋ ପରମଗୁରୁ
ଆଶ୍ଚର୍ଯ୍ୟ ହୋଇଲା ଏବେ ଧନୁ ଧରିବାରୁ ।
ଏ ଶୁଣି ତା ଭୂରିଶ୍ରବା ଯୋଚି ପଞ୍ଚବାଣ
ଅଭିମନ୍ୟୁକୁ ବିନ୍ଧିଲେ ଗୁଣ ଆମନ୍ତ୍ରଣ ।
ପୁଣି ପଞ୍ଚବିଂଶ ଶର ଧନୁରେ ବସାଇ
ଅଭିମନ୍ୟୁ ଉପରକୁ ବିନ୍ଧିଲେ ନଠାଇ ।
ସାରଥିକ ପଞ୍ଚବିଂଶ ଅଶ୍ୱେ ପଞ୍ଚବିଂଶ
ରଥର ପରେ ବିନ୍ଧିଲେ ପୁଣି ଦୁଇ ବିଂଶ ।
ପାଞ୍ଚଶରେ ଅଭିମନ୍ୟୁ ସେ ଶରକୁ ହାଣି
ପୁଣି ତ୍ରେଷା ପାଞ୍ଚଶର ବିନ୍ଧିଲେ ସେକ୍ଷଣି ।
ସେ ଶର ବେଗେ ଚଳିଲେ ଧରି ଏକ ମୂର୍ତ୍ତି
ଭୂରିଶ୍ରବାର ବଧିଲେ ନବସସ୍ର ରଥୀ ।
ନିର୍ଘାତ ଶରକୁ ପୁଣି କୁମାର ବିନ୍ଧିଲା
କୋଶଳର ତିନସସ୍ର ରାଜାଙ୍କୁ ହାଣିଲା ।
ଭୂରିଶ୍ରବାଙ୍କ ସଙ୍ଗରେ ସମର କରନ୍ତେ
ଦ୍ୱିସସ୍ର ରାଜା ପଡ଼ିଲେ ତାହାର ଦେଖନ୍ତେ ।
ଯାହା କଲା ତହିଁ ସେହି ସୁଭଦ୍ରାର ବଳା
ମାନବରେ ଅଗୋଚର ତାର ଯୁଦ୍ଧଲୀଳା ।
ଲଙ୍କପକ୍ଷ ନାରାଚ ଯେ ଅତି ତୀକ୍ଷ୍ଣମୁନା
ବିନ୍ଧନ୍ତେ ସେ ଫୁଟାଇଲେ ଭୂରିଶ୍ରବା ସେହ୍ଲା
ମେରୁ ଫୁଟି ଗଙ୍ଗା ଯେହ୍ନେ ବହେ ତିନଧାର
ସେପରି ରକ୍ତ ବହିଲା ଫୁଟି ତା ଶରୀର ।
ସେ ଘାଏ ଅଚେତ ହେଲେ କୁରୁକୁଳ ଶ୍ରେଷ୍ଠ
ଭୂରିଶ୍ରବା ପ୍ରସାସ୍ତମେ ସ୍ୱଜଲୋକ ଥାଟ ।
ବଳଙ୍କର କୃତାନ୍ତକ ଏହାଙ୍କର ମୂଳେ
ପଡ଼ିଗଲେ ଯୋଦ୍ଧାମାନେ ଯୁଦ୍ଧ ମହାବେଗେ ।
ଆହେ ମନୁ ଦଣ୍ଡଧର ମରୁତ ରାଜନ
ପଶ୍ଚିମରୁ ଆସିଥିଲେ ଯେତେ ରାଜାଗଣ ।
ଦିବା ଶେଷେ ଦିଶେ ଯଥା ଆକାଶ ସୁରଙ୍ଗ
ରୁଧିରେ ଜର୍ଜର ହୋଇ ଦିଶେ ତଥା ଅଙ୍ଗ ।
ରତ୍ନମଣି କୁଣ୍ଡଳାଦି କାଞ୍ଚୀ ତୋଡ଼ର
ରଙ୍ଗ ଦେଖାଗଲା ରକ୍ତେ ହୋଇ ଜରଜର ।

ପଡ଼ ଉଠେ ବିନ୍ଧୁଛନ୍ତି ଶରମାନ ପୁଣି
ଏକାକେ ସମର କରେ ସେ କୁମର ମଣି ।
ଏରୂପେ ବହୁ ସମର କଲା ଜଣକରେ
ପ୍ରତ୍ୟକ୍ଷେ ଅର୍ଜୁନ କିବା ପଶିଛି ସମରେ ।
ଦଶସହସ୍ର ରାଜନ ପଡ଼ିଲେ ସେଠାରେ
ରୁଧିର ନଦୀ ବହିଲା ମୃତପିଣ୍ଡ ପରେ ।
ଷଷ୍ଠ ଦୁଆରକୁ ଜିଣି ରଥ ବେଗେ ଚଳା
ସପ୍ତମ ଦ୍ୱାରେ ପ୍ରବେଶ ସେ ରଥ ଧଇଲା ।
ସପ୍ତମ ଦ୍ୱାରର ଯୁଦ୍ଧ କଥା ଏବେ ଶୁଣ
ଦୁର୍ଯ୍ୟୋଧନ କୁଳେ ଛନ୍ତି ସହସ୍ର ରାଜନ ।
ବତିଶ ସହସ୍ର ହସ୍ତୀ ନବ ସସ୍ର ରଥୀ
ସକୁରିସସ୍ର ମୁକୁଟ ବନ୍ଧା ସେନାପତି ।
ପଦାତି ନବକ୍ଷଉଣୀ ଶକୁନିର ସହ
ଲକ୍ଷ୍ମଣକୁମର ସଙ୍ଗେ ନବସସ୍ର ରାପ୍ତ ।
ପୁଣି ଦଶସସ୍ର ରାଜା ତହିଁ ରହିଥିଲେ
ଏକମୁଖ ହୋଇ ସର୍ବେ ନାରାଚ ବିନ୍ଧିଲେ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଦୈତ୍ୟ ଅଳମ୍ବୁଷ
ଏମାନେ ମଧ୍ୟ ବିନ୍ଧନ୍ତି ନାରାଚ ବିଶେଷ ।
ଅସଂଖ୍ୟ ସଇନ ତହିଁ ବଢ଼ାଇ ଗହଳ
ସିନ୍ଧୁ ଗରଜନ ପରି ଶୁଭେ ମୁଖଗୋଳ ।
ଯଦ୍ୟପିଷ୍ଟ କଉରବେ ଅଟନ୍ତି ସେ ମଲ୍ଲ
ଅଭିମନ୍ୟୁ ବ୍ୟାଘ୍ର ଆଗେ ସେହି ଛେଳିପଲ ।
ସେବେସେ ନାରାଚ ବିନ୍ଧନ୍ତି କୌରବ ସଇନ
ଅଭିମନ୍ୟୁ ପ୍ରତାପରେ ଯାନ୍ତି ସଂଜମନୀ ।
ଏକ ଗୋଟି ଯୋଦ୍ଧାକୁ ସେ ଦଶସସ୍ର ସପ୍ତ
ବେଢ଼ିଣ ବିନ୍ଧନ୍ତି ବାଣ କାଳାନଳ ପ୍ରାପ୍ତ ।
ଛେଦିଲା ସମସ୍ତଙ୍କର ଫଳା ଖଡ଼୍ଗ ଧନୁ
ଅନୁକ୍ଷଣେ ବାଣ ବିନ୍ଧେ ବୀର ଅଭିମନ୍ୟୁ ।
ପୁଣି ବ୍ୟୋମ ଆଚ୍ଛାଦନ ବିନ୍ଧୁ ତୀକ୍ଷ୍ଣ ବାଣ
ରଥୁଁ ରଥୀ ପଡ଼ିଗଲେ ଗଜୁଁ ରାଜାଗଣ ।
ଗଜ ଯୋଦ୍ଧାଙ୍କ ଉପରେ ତୀକ୍ଷ୍ଣ ବାଣ ପଡ଼ି
ପ୍ରାଣ ହାରିଣ ପଡ଼ିଲେ ଗିରି ସମ ଝଡ଼ି ।
ଅଶ୍ୱମାନ ହତ ହେଲେ ଥିଲେ ତହିଁ ଯେତେ
ପଡ଼ିଲେ ପଦାତି ପ୍ରାଣ ହାରି ଅପ୍ରମିତେ
ରଥୀଙ୍କ ଦେହୁ ରୁଧିର ପଡ଼ଇ ଜଳଜଳ
ରଜରେ କର୍ଦ୍ଦମ ମଝି ନ ରହିଲା ଧୂଳି ।

ଅଭିମନ୍ୟୁ ଯୁଦ୍ଧକଥା ହେବେ ଅଗୋଚର
ଖେଳନ୍ତା ବାଳକ ଯେହ୍ନେ ତରୁଣ ବୟସ ।
ବିଶେଷତଃ ଯୋଦ୍ଧାବଳ ବାଇଶ କ୍ଷଉଣୀ
ଏକା ଜଣକେ ସମର କଲା ସାରମଣି ।
ରଥ ଗଜ ସୈନ୍ୟଙ୍କୁ ସେ ଖଣ୍ଡ ଶର ବନ୍ଧି
ନିମିଷକେ ଶତ ଶତ ସୈନ୍ୟ ଦିଏ ଛେଦି ।
ସେହ୍ନାପୁଙ୍ଖି ବାଣମାନ ଭେଦେ ରୋମେ ରୋମେ
ବେନଖଣ୍ଡ ହୋଇ ବହୁ ପଡନ୍ତି ସଂଗ୍ରାମେ ।
ଅନର୍ଯ୍ୟାପ୍ତ ଶରଘାତେ ସର୍ବେ ହେଲେ ହତ
ସୈନ୍ୟ ସବୁତେ ପଡିଲେ ନୃପତି ବହୁତ ।
ସ୍ୱର୍ଣ୍ଣମୁକୁଟ ବାହୁଟି ଆଉ ଜଗଦ୍‌ବଳା
ରକତ ନଦୀରେ ସବୁ ଭସେ ହୋଇ ଭେଳା ।
ନବସହସ୍ର ଗଜା ଛନସହସ୍ର ପାଶଦଣ୍ଡ
ସଡ଼କରେ ନେହ୍ଲାନ୍ତ ସବୁଙ୍କର ମୁଣ୍ଡ ।
ଯେନନେକ ପଳାବନ୍ତି ବାସଭଗ୍ନ ପକ୍ଷୀ
ସେହିପରି ପଳାଇଲେ ସମର ଉପେକ୍ଷି ।
ଚଳନା ନ ଯାଏ ଛନ୍ତି ଅନର୍ଯ୍ୟାପ୍ତ ବାଣ
କୌରବ ଥାଟକୁ କେହି ନୋହିଲେ ରକ୍ଷଣ ।
ଶକୁନ ଦୁଃଶାସନ ଯେ ଦେଖି ରଣ ଭଗ୍ନ
ଦୁର୍ଜ୍ଜୟ ଦୁର୍ମୁଖ ଦୁରାପଦ ଦୁରାସନ ।
ଦୁସନ୍ତକ ଦୁରାବନ୍ତ ଦୁର୍ମଦ ଦ୍ୱର୍ନାଦ
ଦୁର୍ନକ୍ଷ ଦୁର୍ବ୍ବାର ଆଉ ଦୁରନ୍ତ ଦୁର୍ବ୍ବିନ୍ଦ ।
ଦୁର୍ଯ୍ୟୋଧନର ଏପରି ଅଠାଶୋଇ ଭାଇ
ଅଷ୍ଟମ ଦ୍ୱାରରେ ସର୍ବେ ଓଗାଳିଲେ ଯାଇ ।
ବତିଶ ସହସ୍ର ମ୍ଳେଚ୍ଛଯୋଦ୍ଧା ସଙ୍ଗେ ଘେନି
ଅସଂଖ୍ୟ ନାଗର ସର୍ବେ ବନ୍ଦନ୍ତି ଯେ ଟାଣି ।
ତଣ୍ଡ ଦେଖିଣ ଉସତ ହୋଇ ସାରମଣି
ବନ୍ଧେ ନାଗର ଖେଳନ୍ତା ସିଂହସମ ଜାଣି ।
ମହାବାତେ ଯେଉଁପରି ପଡ଼େ ପକ୍ୱଫଳ
ଶକ୍ର କ୍ଷୁଣ୍ଣାଇ ମଣ୍ଡଳ ପକାଏ ଭୂତଳ ।
କାର ବେନଭୁଜ କାର କଳେବର କାଟି
ମୁଣ୍ଡା ବୃକ୍ଷ ସମ ନାରେ କବନ୍ଧ ଯେ କୋଟି ।
ଦେବେ ପ୍ରଶଂସା କରନ୍ତି ଧନ୍ୟ ଅଭିମନ୍ୟୁ
ପୃଥ୍ୱୀରେ ନବାରଲୁ ଏକା ଧରି ଧନୁ ।
ଆକାଶରୁ ଅଇଲେକ ବହନ୍ତା ପୁରୁଷେ
ଆସି ଅଦୃଶ୍ୟେ ରହିଲେ ଅଭିମନ୍ୟୁ ପାଶେ ।

ଅଭିମନ୍ୟୁ ଅଟଇ ଯେ ନକ୍ଷତ୍ରଙ୍କ ସଙ୍ଗୀ
ଏମାନେ ତା ସଙ୍ଗୀପଣ ଦେଖି ହେଲେ ତୃପ୍ତ
ଅଭିମନ୍ୟୁର ସମର ଦେଖିଣ ଏମନ୍ତ
ବହନ୍ତା ପୁରୁଷମାନେ ହୋଇଲେ ଚକିତ ।
ଅଗସ୍ତିଙ୍କୁ ବୈବସ୍ୱତ ମନୁ ପୁଚ୍ଛାକଲେ
ବହନ୍ତା ପୁରୁଷେ କିପାଁ ସେଠାକୁ ଅଇଲେ ।
କହନ୍ତି ଅଗସ୍ତି ତୁମ୍ଭେ ଶୁଣ ଶୁଦ୍ଧଚେତା
କହିଲେ ନ ସରିବ ଏ ଦ୍ରୋଣପର୍ବ କଥା ।
କବନ୍ଧ ବୋଲିଣ ଦୈତ୍ୟ ଥିଲା ସତ୍ୟଯୁଗେ
ସେହି ଦୈତ୍ୟ ନାଶଗଲା ପ୍ରଜାପତି ରାଗେ ।
ଉଦେକବନ୍ଧ ବୋଲିଣ ତ ହାର ଯେ ପୁତ୍ର
ଆକାଶ ମନ୍ଥିଣ ସେହୁ କରେ ମନକୃତ୍ୟ ।
ଅଭିମନ୍ୟୁ ସତ୍ୟଯୁଗେ ଆନ ନାମ ବହି
ଦେବଙ୍କୁ ତାରିଲେ ସେହି ଦୈତ୍ୟ ପ୍ରାଣ ନେଇ
ଆଦ୍ଧମାତାଙ୍କର ନାମ ଅଟେ ଉଗ୍ରତାସ
ମାତା ଯୋଏ ନବାରନ୍ତି ପୃଥିବୀର ଭାର ।
ଆଦ୍ଧମାତା ଜନମିଲା ନନ୍ଦଗୃହ ଘରେ
କଂସ କଚାଡ଼ିଲା ନେଇ ଶିଳାର ଉପରେ ।
ସେ ମାତା ପୁତ୍ରଙ୍କୁ ବିଷ୍ଣୁ ସତ୍ୟ ଯେ କରାଇ
ବୋଇଲେ ମର୍ତ୍ତ୍ୟେ ଜନମ ହୁଅ ମୋହପାଇଁ ।
ଆଦ୍ଧକ କହିଲେ ଭଦ୍ରାଗର୍ଭ କୁ ଜନ୍ମିବୁ
ତରୁଣ ବରଷ ଯାଏ ସେଠାରେ ରହିବୁ ।
ଆନ ବୋଲେ ସ୍ୱର୍ଗପୁର ମୁହିଁ ରକ୍ଷାକରେ
ମର୍ତ୍ତ୍ୟମଣ୍ଡଳେ ରହିବି କେମନ୍ତ ପ୍ରକାରେ ।
ତୁମ୍ଭର ବଚନ ମୁହିଁ ଲଙ୍ଘି ନ ପାରିବି
ଚୌଦବର୍ଷରୁ ଅଧିକ ମର୍ତ୍ତ୍ୟେ ନ ରହିବି ।
ଚୌଦବର୍ଷୁ ଏକଦିନ ଅଧିକ ହୋ'ଇଲେ
ତୋତେ ଅର୍ଜ୍ଜୁନ ସହିତେ ମାରିବି ବୋଇଲେ
କୃଷ୍ଣ ଯଦ୍ୟପି ହେ ଦେବ ରଖାଇବୁ ମୋତେ
ସେହି ରଣଭୂଇଁରେ ମୁଁ ମାରିବଇଁ ତୋତେ ।
ଏହି କଥା ଯେବେ ଦୃଢ଼ କରିବ ଅନନ୍ତ
ତେବେ ମୋ ମାତାଙ୍କୁ ମୋତେମର୍ତ୍ତ୍ୟେକରଜାତ
ବିଷ୍ଣୁ ବୋଇଲେ ମୁଁ ଯେଉଁଦିନ ହେବି ଜାତ
ତା ଆରଦିନ ହିଁ ଦଣ୍ଡେ ଆସିବେ ତୋ ମାତ ।
ସେ ଭୈରବୀ ଉଗ୍ରତାସ କେଶବ ବଚନେ
ଯଶୋଦା ଗର୍ଭ୍ଭେ ଜନ୍ମିଲେ ନନ୍ଦଙ୍କ ଭୁବନେ ।

କଂସ ଡରେ ବସୁଦେବ ଗୋପପୁରେ ଯାଇ
ନନ୍ଦ ଝିଅକୁ ଆଣିଲା ନିଜ ପୁତ୍ର ଥୋଇ ।
ପୁତ୍ର ଜନ୍ମହେବା ଶୁଣି ଧାଇଁ କଂସରାୟେ
ସେ କନ୍ୟାକୁ କଚାଡ଼ିଲା ପଥର ଶିଳାଏ ।
ତତକ୍ଷଣେ ଉଭୁଭଣ ଗଲା ଭଇରବୀ
ଆକାଶ ମଣ୍ଡଳେ ଯାଇ ବଶ୍ରାମିଲା ଦେବୀ ।
କୃଷ୍ଣେ ଜଳଧର ବ୍ୟୂହ ହର ରଖଇଲେ
ଅର୍ଜୁନଙ୍କୁ ଅଭିମନ୍ୟୁ ଭୟେ ନେଇଗଲେ ।
ଅଭିମନ୍ୟୁ ସମରରେ ପଡ଼ିବା ପର୍ଯ୍ୟନ୍ତେ
ଭୟେ ଅର୍ଜୁନଙ୍କୁ ନ ଛାଡ଼ିଲେ ଜଗନ୍ନାଥେ ।
ପାର୍ଥ ରହିଁ ଥିଲେ ଅଭିମନ୍ୟୁ ନ ପଡ଼ନ୍ତା
କୃଷ୍ଣ ଅର୍ଜୁନଙ୍କୁ ମାରି ସ୍ୱର୍ଗକୁ ଗମନ୍ତା ।
ଉଦେକବନ୍ଧ ଦଇତ ଜବନ୍ଧ ନନ୍ଦନ
ନବବର୍ଷ ହେଲା କଲା ସ୍ୱର୍ଗକୁ ମନ୍ଥନ ।
ସେ ଉଦେକବନ୍ଧ ଡରେ ଦେବ ପୁରନ୍ଦର
ଆସ୍ଥାନେ ବସି ନ ପାରେ ଅମର ସଭାର ।
ଇନ୍ଦ୍ର ସଙ୍କରେ ନ ବର୍ଷୁ ଅନାବୃଷ୍ଟି ହେଲା
କେଉଁ ଦେଶକୁ ସୁଖରେ ପାଳି ନ ପାରିଲା ।
ଧାତା ବୋଲେ ଅଭିମନ୍ୟୁ ସ୍ୱର୍ଗକୁ ଆଇଲେ
ଉଦେକବନ୍ଧ ମରିବ ଯୁକ୍ତି ତାର କଲେ ।
ଇନ୍ଦ୍ର ପେଷିଲା ବହନ୍ତା-ପୁରୁଷଗଣଙ୍କୁ
ସମରେ ନାଶ କରାଅ ସେ ଅଭିମନ୍ୟୁକୁ ।
ନୋହିଲେ ଉଦେକବନ୍ଧ ସ୍ୱର୍ଗକୁ ଧ୍ୱଂସିବ
ଅଭିମନ୍ୟୁ ସ୍ୱର୍ଗେ ଗଲେ ସେ ଦୈତ୍ୟ ମରିବ ।
ଯେବେ ରଣେ ଅଭିମନ୍ୟୁ ବଇତଣ ଯିବେ
ତେବେ କୃଷ୍ଣାର୍ଜୁନ କଷ୍ଟେ ବିନାଶ ହୋଇବେ
ଯାଇ ବୋଲ କୌରବଙ୍କୁ କରି ଉପରୋଧ
ଯେ ଯେତେ କହିଲେ ପାର୍ଥ ନ କରିବ ବଧ ।
ଅଭିମନ୍ୟୁ ମଲେ ପୁତ୍ରକଷ୍ଟେ ଅରଜୁନ
କର୍ଣ୍ଣ ଦୁର୍ଯ୍ୟୋଧନ ବେନି କରିବ ନିଧନ ।
ଅର୍ଜୁନ କୋପିଲେ କୁରୁବଳ ହେବ ନାଶ
ନ ମଲେ କୌରବେ ପୃଥ୍ୱୀ ନ ହେବ ଉଶ୍ୱାସ
ଏପରି କହିଣ ଦେବଲୋକେ ଚଳିଗଲେ
ଉଶ୍ୱାସ ନୋହିବ ଧରା ଅଭିମନ୍ୟୁ ଥିଲେ
ବହନ୍ତା ପୁରୁଷେ କହୁଁ କରିଲେ କପଟ
ଅଭିମନ୍ୟୁ ଶର ହେଲା ଅକାଟ ଅଭୁଟ ।

ପଞ୍ଚଲକ୍ଷ ଯୋଦ୍ଧା ସେନ ଲକ୍ଷ୍ମଣକୁମର
ଅଳମ୍ବୁଷ ଦୁଃଶାସନ ଅଛନ୍ତି ସଙ୍ଗର ।
ଏତେ ଯୋଦ୍ଧାଙ୍କୁ ଘେନି ସେ ଷନୁମଖ ବଳା
ମହା ମତ୍ତନାଗ ପ୍ରାୟେ ତେଜ ଅନର୍ଗଳା ।
ଭଦ୍ରାସୁତ ହୁଡଙ୍କାରେ ଅଟେ ବଳବନ୍ତା
ତ୍ରୈଲୋକ୍ୟ ଏକ ହୋଇଲେ ତାକୁ ନ ଜିଣନ୍ତା
ବ୍ୟୂହ ଜୟ କଲା ଯେହୁ ନବଦ୍ୱାର ଭେଦି
ତିନି ସାଗର ଯୋଦ୍ଧାଙ୍କୁ ପକାଇଲା ଛେଦି ।
ଦଶସହସ୍ର ରାଜା ସାତ-ମର୍ଭୁତ ଯେ ରଥୀ
ନେଉଶତ ପାଉଦଣ୍ଡ ନକ୍ଷୌଣୀ ପଦାତି ।
ଏତେକ ନାଶକଲା ସେ ପଶି ଚକ୍ରବ୍ୟୂହେ
ଅପାର କୃତ୍ୟ କରିଲା ବାଳକ ତନୟେ ।
ନବଦ୍ୱାର ଜିଣି ଜୟଶଙ୍ଖ ବଜାଇଲା
ଦଶମ ଦ୍ୱାରରେ ଯାଇ ପ୍ରବେଶ ହୋଇଲା ।
ବହୁତର ସୈନ୍ୟ ହତ ହୋଇବାର ଦେଖି
ଅଶ୍ୱତ୍ଥାମା ଓଗାଳିଲେ ଉକ୍ରୋଧ ଉପେକ୍ଷି
ଭରଦ୍ୱାଜଙ୍କର ନାତି ଯୁଦ୍ଧେ ବଳବାନ
ଭାରତଯୁଦ୍ଧେ ତା ସଙ୍ଗେ କେ ହେବ ସମାନ ।
ଚନ୍ଦ୍ରଇ ନାରାଚ ବେଗେ ଅର୍ଜୁନର ସୁତ
କଞ୍ଚିତ ଶରେ ତା ଅଶ୍ୱତ୍ଥାମା କରେ ହତ ।
ପୁନରପି ପଞ୍ଚବିଂଶ ପୂରାଇଣ ବାଣ
ଝିଙ୍କିଲା ଧାଡ଼କାରେ ସୁଭଦ୍ରାନନ୍ଦନ ।
ନାରାଚ ଆସିବା ଦୂରୁଁ ଦେଖିକରି ଦ୍ରୋଣୀ
ପ୍ରତିକଚ୍ଛ ପଞ୍ଚବାଣ ପେଷି ତାହା ଜାଣି ।
ସେ ଦୁହେଁ ସମରେ କେହି ନୁହନ୍ତି ଯେ ମାତ
ଅଭିମନ୍ୟୁଙ୍କର ପିତା ଅଟନ୍ତି ବଳସ୍ର ।
ଅଶ୍ୱତ୍ଥାମାଙ୍କର ପିତା ଅଟେ ଦ୍ରୋଣଗୁରୁ
କେଉଁ ବୀର ତାହାଙ୍କର ଆଗେ ଧନୁ ଧରୁ ।
ଅସଂଖ୍ୟ ଶର ବିନ୍ଧନ୍ତି ସେହି ବେନିରଥୀ
ଶର ଗହଣେ ନ ଦିଶେ ସପ୍ତଦ୍ୱୀପ ପୃଥ୍ୱୀ ।
ଅଶ୍ୱତ୍ଥାମା ଲେଖା ଲେଖା ଅସ୍ତ୍ରମାନ ବିନ୍ଧି
ଅଭିମନ୍ୟୁ ତାହା ଦଏ କଞ୍ଚିତରେ ଛେଦି ।
ଏହିପରି ବାଣମାନ ବିନ୍ଧେ ଅଶ୍ୱତ୍ଥାମା
କୃଷ୍ଣେ ଯେଉଁ ଅସ୍ତ୍ର ସବୁ ଦେଇଥିଲେ ଉମା ।
ମହାକାଳ ବାଣେ ତାହା ଛେଦେ ଅଭିମନ୍ୟୁ
ପୁଣି ଦ୍ରୋଣୀ ବିନ୍ଧିଲେକ ଶର ଅଭିମନ୍ୟୁ ।

ସେ ମହା ଘୋର ନାରାଚ ଆସନ୍ତେ ଉଡ଼ନ୍ତ
ତାହା ଛେଦ ପକାଇଲେ ଅର୍ଜ୍ଜୁନଙ୍କ ସୁତ ।
ଶରେ ଶରେ ପଞ୍ଚତାଳ ହୁଅନ୍ତେ ଯେ ବେନି
ଚକ୍ଷୁରୁ ଜାତ ହୋଇଲା ଊର୍ଦ୍ଧ୍ୱମ ବହ୍ନି ।
ପୁଣିହିଁ ଶର ବରଷି ଭରଦ୍ୱାଜ ନାତି
ବନ୍ଧ୍ୟମାଳା ପ୍ରାୟେ ଶର ଆସଇ ତଡ଼ନ୍ତି ।
ପଡ଼ନ୍ତେ ସେ ପଥର ଯେ ସମରେ ଦୁର୍ମୁଖ
ଦେଖିକରି ଅଭିମନ୍ୟୁ ହୋଇଲା ବିମୁଖ ।
ଅଭିମନ୍ୟୁ ବଜ୍ରମନା ନ ସହନ୍ତୁ ଘନ
ବନ୍ଧ୍ୟମାଳା ଶରକୁ ସେ ପକାଇଲା ଛେଦ ।
କୋପେ ଅଶ୍ୱତ୍ଥାମା ବଳେ ଅର୍ଦ୍ଧଚନ୍ଦ୍ର ବାଣ
ସୂର୍ଯ୍ୟବାଣେ ଛେଦିଲା ତା ସୁଭଦ୍ରା ନନ୍ଦନ ।
କୋପଭରେ ଅଶ୍ୱତ୍ଥାମା ଅଗ୍ନି ଶର ପେଷି
ମେଘାଶର ପେଷି ତାହା ଅଭିମନ୍ୟୁ ନାଶି ।
ଏହିପରି କରବାରୁ ଶର ବେନିବାଳ
ସୂର୍ଯ୍ୟତେଜ ନ ଦିଶିଲା ଗଗନ ମଣ୍ଡଳ ।
ଏପରି ରଣ କରନ୍ତେ ହେଲା ବେନିଘଡ଼ି
ଶର ଆଚ୍ଛାଦିତ ଶୂନ୍ୟେ ଯେହ୍ନେ ତଡ଼ତଡ଼ି ।
ମହା ଅନଳ ନାରାଚ ବନ୍ଧିଲା ଚ ଦ୍ରୋଣି
ଅଭିମନ୍ୟୁ ଆବର୍ତ୍ତିକ ଶରେ ତାହା ହାଣି ।
ପୁଣି ନାଗପାଶ ଶର ବସାଇଣ ଧନୁ
ବନ୍ଧିଲା ଅଶ୍ୱତ୍ଥାମାକୁ ପୁଣ ଅଭିମନ୍ୟୁ ।
ଖଗବର ବାଣ ଘେନି ଭରଦ୍ୱାଜ ନାତି
ବଳନ୍ତେ ସର୍ପ ପଳାଇ ଗଲେ ତତକ୍ଷଣାନ୍ତ ।
ଏହିପରି ସମର ଯେ ହେଲା ଦୁହିଙ୍କର
ସ୍ତମ୍ଭକଛ ଶରମାନ ବନ୍ଧିଲେ ଅପାର ।
ଆଦାନ ସନ୍ଧାନ କେହି ଜାଣି ତ ନ ପାରି
ବେନି ବୀର ଅଟନ୍ତି ଯେ ବଳେ ସମସରି ।
ଅଶ୍ୱତ୍ଥାମା ପ୍ରଶଂସଇ ଧନ୍ୟ ଅଭିମନ୍ୟୁ
ତୁ ବାଳକ ହୋଇ ଅସ୍ତ୍ରମାନ ଭଲ ଜାଣୁ ।
ତୁମ୍ଭ ମହା ଧନୁର୍ଦ୍ଧର ଏ ଭାରତ ଯୁଦ୍ଧେ
କେ ରଥୀ ରହିପାରିବ ତୋହର ସନ୍ନିଧେ ।
ଏତେ ଯୋଦ୍ଧା ହୋଇଲୁ ତୁ ହୋଇ ବାଳବସି
ଏ ବ୍ୟୂହେ ପଶିଲୁ ଭୟ ନୋହିଲା ତୋ କଛୁ
ଦ୍ରୋଣ ଜୟଦ୍ରଥ କର୍ଣ୍ଣ ଭୂରିଶ୍ରବା ଶଲ୍ୟ
ଏହାଙ୍କୁ ଜିଣିଲୁ ତୁମ୍ଭ ଅଟୁ ମହାମଲ୍ଲ ।

ପଞ୍ଚଶସ୍ତ୍ର ରାଜାଙ୍କ ପାଞ୍ଚଶତ ମାନ
ଏକା ହୋଇକରି ନେଲୁ ସମସ୍ତଙ୍କ ପ୍ରାଣ ।
ତୁମ୍ଭ ଅଟୁ ଯୋଦ୍ଧାଙ୍କରେ ମହାବଳବନ୍ତା
ଛେଳ ତନ୍ତ୍ର ପ୍ରୟୋଗରେ ଅଟୁ ତୁ ଶକତା ।
ଏହି କୌରବ ସଇନ ଅଟେ ଅକୂପାର
ଏହାଙ୍କୁ ମନ୍ଥନ କଲୁ ହୋଇ ତୁ ମନ୍ଦର ।
ଏ କଉରବ ଅଟନ୍ତି ମହା ନାଗସରି
ଗରୁଡ଼ ହୋଇ ସ୍ୱାଙ୍କର ଦର୍ପ ଦେଲୁ ଧ୍ୱଂସି ।
ଅଭିମନ୍ୟୁ ବୋଲେ ଏବେ ହସ୍ତିକର ବାବା
ଆଜ ଏ କୌରବବଳ ଜଣିବ ମୁଁ ପଦା ।
ପୁଣି ଅୟୁତେ ନାରାଚ କାଣ୍ଡରେ ବସାଇ
ମାରି ଅଶ୍ୱତ୍ଥାମା ରଥ ଘୁଞ୍ଚାଇଲା ନେଇ ।
ମହାବଳବନ୍ତ ସେ ଯେ କଷା ଜଗତ୍ତେଠି
ଅଶ୍ୱତ୍ଥାମା ପଞ୍ଚଦଶ ବାଣେ ସବୁ କାଟି ।
ପୁଣି କୋପେ ବନ୍ଧିଲେ ବାସବର ନାତି
ଅଶ୍ୱତ୍ଥାମା ଉପରକୁ ଅମୋଘ ଶକତି ।
ଅଶ୍ୱତ୍ଥାମା ସେହି ଶକ୍ତି ଛେଦିକରି ଦୂରୁ
ସପ୍ତତସୂର୍ଯ୍ୟ ତନୟକୁ କାଢ଼ି ତୂଣୀରରୁ ।
ସେପରେ ଭୟେ ପଳାଇ କୁରୁଙ୍କ ସଇନ
ଦେଖି ଅଶ୍ୱତ୍ଥାମା ହେଲା ମୁଖେ କଲେ ଧ୍ୱନି ।
ପାଞ୍ଚ ଯୋଜନ ପର୍ଯ୍ୟନ୍ତେ ଯାଇ ପଡ଼ାଇଲେ
ଏକା ଧବଳ ରଥ ଯେ ସେଠରେ ରହିଲେ
ଶୂନ୍ୟପୁରେ ବୃନ୍ଦାରକେ ପାଇଲେକ ବ୍ୟଥା
ବଡ଼ ଅସମ୍ଭବ ବେନି ରଥୀ ଯୁଦ୍ଧ କଥା ।
ଅମୋଘ ଶକତି ତେଜ ସୂର୍ଯ୍ୟସମ ଜାଣ
ଦୁଇଶର ଯୋଗ ହୋ'ନ୍ତେ ବାଜେ ରଣ ଝଣ
ଦୁହେଁ ସମର କରନ୍ତି ନୁହନ୍ତି କେ ଭଙ୍ଗ
ପଥରପ୍ରାୟେ ଅଟଇ ଦୁହିଙ୍କର ଅଙ୍ଗ ।
ଦୁହେଁ ସମର କରନ୍ତି ଅତି ବେଗ ବହି
ଅମରମଣ୍ଡଳ ସ୍ୱର୍ଗେ ନ ପାରନ୍ତି ରହି ।
ମୁନି କହନ୍ତି ଶୁଣ ହେ ବୈବସ୍ୱତ ରାଜା
ରଣ ଦେଖି ଦୁର୍ଯ୍ୟୋଧନ ପାଇଲାକ ଲଜ୍ଜା ।
ଶିବ ଯେ ଅସ୍ତ୍ରକୁ ବନବାସେ ଦେଇଥିଲେ
ସେ ଅସ୍ତ୍ରକୁ ଅଭିମନ୍ୟୁ ମନେ ସୁମରିଲେ ।
ସୁମରନ୍ତେ ସେହି ଅସ୍ତ୍ର ହେଲା ହସ୍ତଗତ
ତାକୁ ଗୁଣରେ ବସାଇ ଧରି ଅଛି ହସ୍ତ ।

ଅଶ୍ୱତ୍ଥାମାର ରଥ ଯେ ଆସେ ବେଗକରି
ଅଭିମନ୍ୟୁ ସତାନନ୍ଦ ଅସ୍ତ୍ର ଅଛି ଧରି ।
ଅଶ୍ୱତ୍ଥାମା ରଥ ଯହୁଁ ନିକଟେ ଅଇଲା
କୋପେ ଅଭିମନ୍ୟୁ ସେହି ଅସ୍ତ୍ରକୁ ମାରିଲା ।
ପଡ଼ିଲେ ଅଶ୍ୱତ୍ଥାମାର ରଥ ଅଶ୍ୱ ଗଜ
ଦେଖିକରି ଅଶ୍ୱତ୍ଥାମା ଉଠେ ଗଳଗାଜ ।
ମହାମନ୍ତ୍ର ନାଗ ଏକ ଆଗେନ୍ତଣ ବେଗେ
ମିଳିଲେକ ଅଶ୍ୱତ୍ଥାମା ଅଭିମନ୍ୟୁ ଆଗେ ।
ଅଭିମନ୍ୟୁଙ୍କୁ ଘାଇଣ ବୋଲେ ଦ୍ରୋଣସୁତ
ସମ୍ଭାଳ ସମ୍ଭାଳ ତୁ ହୋ ଅର୍ଜୁନର ସୁତ ।
ବଜ୍ରସ୍ୱନା ଶରଧାର ଧନୁରେ ବସାଇ
ଅଭିମନ୍ୟୁ ଉପରକୁ ବିନ୍ଧିଲେ ଜଠାଇ ।
ତେକ୍ଷଣ ଅପସରିଲା ସୁଭଦ୍ରାନନ୍ଦନ
ବଜ୍ରବାଣ ସେହି ତାହା କଲାକ ଛେଦନ ।
ଏସନକ ଭଣିବାରୁ ସ୍ୱର୍ଗେ ଦେବତାର
ଆକାଶେ ଅଦୃଶ୍ୟ ହେଲେ ଦେବ ବୃନ୍ଦକର
ବ୍ରହ୍ମଅସ୍ତ୍ର ବାଣେ ତହୁଁ ଅଭିମନ୍ୟୁ ପେଷି
ଦେଖନ୍ତେ ଦ୍ରୋଣ ଉପରେ ପଡ଼ିଲାକ ଆସି ।
ସାଏ ଅସଭତ ହେଲେ ଗୁରୁଙ୍କର ସୁତ
ରଥରେ ଅଚେତ ହୋଇ ପଡ଼ନ୍ତେ ଉଭତ ।
ଧଇଲା ରଥ ଡେଚଡ଼ ସାରଥି ବାହିଲା
ବ୍ୟୂହ ମଧ୍ୟରେ ଯାଇଣ ପରବେଶ ହେଲା ।
ଦେଖିଲା ଉଦ୍ଧତ ସୈନ୍ୟ ରହିଛନ୍ତି ପୁରି
ରଥୀ ହାତୀ ପଦାତିଙ୍କ କେହୁ ଗଣିପାରି ।
ଅନେକ ଦେଶର ତହିଁ ପୂରିଥିଲେ ରାଜା
ଅଭିମନ୍ୟୁ ବାଣେ କେତେ ଜଲେ ପ୍ରାଣତେଜ୍ୟା
ଅନବରତରେ ବାଣ ଛନ୍ଦେ ଅଭିମନ୍ୟୁ
ଅନେକ କ୍ଷତ୍ରିୟଙ୍କର ଛେଦିଲାକ ଧନୁ ।
ଅନେକ ପଦାତି ରଥୀ ହାତୀ ନାଶଗଲା
କେତେ ଯେ ମଲେ ସେଠାରେ କଳନା ନୋହିଲା
ଅମାପ ସୈନ୍ୟ ସେଠାରେ ସମାପତ ଦେଖି
ଦୁର୍ଯ୍ୟୋଧନ ବୋଇଲେକ ହୋଇ ଅତି ଦୁଃଖୀ
ଚକ୍ରବ୍ୟୂହ ବେଢ଼ି ଏତେ ସୈନ୍ୟ ରହିଥିଲେ
ଏକା ଅଭିମନ୍ୟୁ ରଣେ ଏତେକ ପଡ଼ିଲେ ।
ସୈନ୍ୟଭଗ୍ନଦେଖି ହେବେ ସ୍ୱେ ମାନଗୋବିନ୍ଦ
କେମନ୍ତେ ଏତେକ ସୈନ୍ୟଙ୍କୁ କଲା ଏହୁ ଭେଦ

ଦ୍ରୋଣ ଶଲ୍ୟ କୃପାଚାର୍ଯ୍ୟ ଜୟଦ୍ରଥ କର୍ଣ୍ଣ
ବାହ୍ଲୀକ ଭୂରିଶ୍ରବାଦି ଯେତେ ଯୋଦ୍ଧାଗଣ ।
ଏତେ ମହାରଥୀ ମୋର ପଡ଼ିଗଲେ ତେଣେ
ନୋହିଲେ ଭେଦି ଏ ବ୍ୟୂହଟାହୁଁ ଆସେ ଜଣେ
ମହାବାତେ ବୃକ୍ଷ ଯେହ୍ନେ ଭାଜି ପଡ଼ିଥାନ୍ତି
ସେମନ୍ତ ପାଣ୍ଡୁପୋତରେ ସୈନ୍ୟ ପଡ଼ିଛନ୍ତି ।
ଏହାଙ୍କୁ ଗୁହିଁ ମୋ ହର ହଜଯାଏ ଜ୍ଞାନ
ଯେ ବଇବ ସଂସାରରେ ଭୂରି ବଡ ଜଣ ।
କୃଷ୍ଣ ନାହିଁ ପାର୍ଥ ନାହିଁ ନାହିଁ ଭୀମସେନ
ଆବର ନାହିଁ ନକୁଳ ସହଦେବ ଜାଣ ।
ଏକା ସୁତଗୋଟି ଆସି କଲା ଏତେ କୃତ୍ୟ
ତା ଆଗେ ରହିବା ଏହା ଧର୍ଯ୍ୟରେ ଉଚିତ
ମାର ରେ ବେଢ଼ି ଏହାକୁ ପରୁ ଏ କୁମର
ଅଧର୍ମ ବୋଲି ମନରେ ଭାବୁ ନ ହର ।
ଧର୍ମରେ ଜିଣଣ ମୋତେ ହେଲା ବାଳବସ୍ଥା
ଥାଟଯାକ ବିଧ୍ୱଂସିଲା ଧର୍ମ ନାହିଁ ଅଛି ।
ରାଜାର ମୁଖଁ ଏମନ୍ତ ଯହୁଁ ସେ ଶୁଣିଲେ
ଭଳଲକ୍ଷ ଯୋଦ୍ଧା ଆସି କୁନ୍ତ ପ୍ରହାରିଲେ ।
ଦୁର୍ଜ୍ଜୟ ଯେ ଦୁସଶଙ୍କ ରଥ ପଛେ ଥାଇ
ପ୍ରହାରିଲେ ପରଶ ଶକତି ବଲ୍ଲଇ ।
ଅଳମ୍ବୁଷ ଅଳାୟୁଧ ଏହି ଦୁଇଜଣ
ବେଗେ ରୋଷରେ ଛେଦିଲେ ତାର ବେନକୋଣ
ଧନୁରେ ଶର ଯୋଚଣ ସେ ମନ୍ତ୍ରୀ ଶକୁନ
କୁମର ଧନୁରୁ ଗୁଣ ଛଡାଇଲେ ହାଣି ।
ନିଶସ୍ତ୍ର ହୋଇଲା ଯହୁଁ ସୁଭଦ୍ରାର ସୁତ
ଖଡ଼୍ଗ ଘେନି ରଥରୁ ଡେଇଁଲା ତୁରତ ।
ବିକ୍ରମସିଂହ ପରାୟେ ଭର ପାଦଗତ
କ୍ଷଣକେ ଛେଦନ କଲା ଶତଶତ ରଥୀ ।
କୁଟେ ତାକୁ ବେଢ଼ାଇଲା ସୈନ୍ୟ କୁରୁସପ୍ତ
ଅଧର୍ମ ଯୁଦ୍ଧ କଲେକ ଧର୍ମେ ନାହିଁ ଭୟ ।
ବହୁ ସୈନ୍ୟ ବେଢ଼ାଇଛି ରାଜା ଦୁର୍ଯ୍ୟୋଧନ
ଏକା ଯୁଦ୍ଧ କରଇ ସେ ଅର୍ଜୁନ ନନ୍ଦନ ।
ଶୁଣ ବୈବସ୍ୱତ ମନୁ ଦ୍ୱାପରର କଥା
ଭାଇର ପୁତ୍ର ମାରନ୍ତି କରିଣ ଅହଙ୍କା ।
କଏ ସେ ଜେଠୁ ତା କଏ ଖୁଡ଼ୁ ତା ଅଟନ୍ତି
ଏମାନେ ଏକନ୍ଧ ବାଳକୁମରେ ମାରନ୍ତି ।

ଖଡ଼ଗ ଲୁନ୍ତ ଘରଷ ଗୃହ୍ଣଜ ଯେ ଯାଠି
ପ୍ରହାର କଲେକ ସର୍ବେ ଏକାବେଳେ ଉଠି ।
ରଥୀମାନେ ଅଇଲେ ଯେ ଖଡ଼୍ଗଫଳା ଘେନି
ଘାଦଗଡରେ ସଉତେ ଗଲେ ସସ୍ତ୍ର ଛନ୍ନ ।
ଷାଅଲକ୍ଷ ଯୋଦ୍ଧାଏ ଯେ ଏକମୁଖ ହୋଇ
ବେଢ଼ିଲେ ତଉପାଶରେ ନ ଦିଶଇ ଭୂଇଁ ।
ଶସ୍ତ୍ର ପିଟିଲାକ ଯହୁଁ ତାହାକୁ ଦୁର୍ମନ
ଫଳା ପାତି ବଞ୍ଚାଇଲା ଅର୍ଜୁନ ନନ୍ଦନ ।
ଫଳାରେ ବାଜଣ ସେତୁ ହୋନ୍ତେ ମସୀଗୁଣ୍ଡା
ଅଭିମନ୍ୟୁ ଆଉ ହସ୍ତେ ଥିଲା ଏକ ଖଣ୍ଡା ।
ଭୁଲଇ ପିଟିଲା ଯହୁଁ ଦୁର୍ମନ ଉପରେ
ଦୈବେ ସେ ଖଣ୍ଡା ବାଜିଲା ଯାଇଁ ଗୃହ୍ଣଜରେ
ବେନଖଣ୍ଡ ହୋଇ ତାହା ଭଗ୍ନ ହୋଇଗଲା
ଶୂନ୍ୟହସ୍ତେ ଉଭହୋଇ ସୁଭଦ୍ରାର ବଳା ।
ଏପରି ଦେଖି ତାହାକୁ ଗୁଡ଼ିଲା ସାରଥି
ଶୂନ୍ୟହସ୍ତ ଏକା ହେଲା ପଣ୍ଡୁ ଧ୍ଵଜା ନାତି ।
ଶୂନ୍ୟହସ୍ତ ହୋନ୍ତେ କଲା ସେ ମାଲ ବନ୍ଧାଣ
ଧାଇଁଯାଇ ତାର ପଛେ ଦୁଷ୍ଟ ଦୁଃଶାସନ ।
ପଛୁଡ଼ୁ କଷଣ ଗଦା ମାଇଲାକ ଶିରେ
ସେ ଘାତେ ଅର୍ଜୁନସୁତ ପଡ଼ିଲା ମହୀରେ ।
ପୁଣି ଦୁଃଶା ସେତେ ଗଦା ପ୍ରହାରିଲା ତୋଳି
ଅସ୍ଥି ଚର୍ମ ମାଂସ ତାର ହୋଇଗଲା ଧୂଳି ।
ଅଭିମନ୍ୟୁ ମଲା ବୋଲି ପଡ଼ିଲା ତହଲ
ଜୟ ଶଙ୍ଖ ବଜାଇଣ ଗଲେ କୁରୁବଳ ।
ଶୂନ୍ୟେ ଇନ୍ଦ୍ର ଦେଖୁଥିଲେ ବୃନ୍ଦାରକଗଣ
କହିଲେକ ଧିକ ଧିକ ଅଟୁ ଦୁର୍ଯ୍ୟୋଧନ ।
ଇନ୍ଦ୍ର ଆଜ୍ଞାଦେଲେ ତହୁଁ ମାତଳୀକି ସ୍ଵହିଁ
ଆଣିକା ଆଣ ପୁଷ୍ପକ ବିମାନେ ବସାଇ ।
ଚଳିଲା ସାରଥି ତହୁଁ ଦେବରଥ ଘେନି
ଆକାଶରେ ଶୁଭିଲାକ ଜୟ ଜୟ ଧ୍ଵନି ।
ଉଲ୍ଲସିଲେ ପଞ୍ଚଛନ୍ଦ କଲେ ପୁଷ୍ପବୃଷ୍ଟି
ଅମରାଳୟେ ଯାଇ ସେ ସୁରେ କଲେ ଭେଟି
ଅନେକ ସାନନ୍ଦ ହେଲେ ଦେବ ସୁରପତି
କୋଳେ ବସାଇ ଅନେକ ଉତ୍ସବ କରନ୍ତି ।
ଅମରେ ବୋଇଲେ ଭୁବି ଅଟୁ ଏକଜଣ
ଏକେ କବନ୍ଧକୁ ମାରି କରଣ ଭୁ ଋଣ ।

ଉଦେକବନ୍ଧ ନାଶିଲା ଅମର ଭୁବନ
ତୋର ଯୁଦ୍ଧେ ସେହି ନଷ୍ଟେ ହୋଇବ ନିଧନ
ଇନ୍ଦ୍ର ବୋଇଲେ ସରତେ ସବୁ ନିବାରିଲୁ
ସମର କରି ଅନେକ ସୈନ୍ୟ ତୁ ମାଇଲୁ ।
କବନ୍ଧକୁ ମାରି ଭୁବି ମମକାର୍ଯ୍ୟ ଅର୍ଥେ
ତୋହର ଲାଗି ରହିବ ଏ ସ୍ଵର୍ଗ ଜଗତେ ।
ଆଦ ବୋଲେ ମୋ କେତନ ସାରଥି ଯେତାହିଁ
ଆବର ଧବଳ ରଥ ଆସ୍ତ୍ର ସେହି ନେଇ ।
ଏହାଙ୍କୁ ଆଣିଣ ମୋତେ ଦେଲେ ଆଖଣ୍ଡଳ
ନଷ୍ଟେ କୁରୁର ଶତ୍ରୁର ପୂରଇବ କାଳ ।
ଶତବାର ଜନ୍ମ ମୂର୍ତ୍ତି ମହାକାଶ ଅର୍ଥେ
ଜନ୍ମାଅବତାରେ କୃଷ୍ଣ ଘେନଗଲେ ମୋତେ
ସ୍ଵର୍ଗାଗ ସାରଥି ମୋର ରଥେ ହୟ ସ୍ଵର
ଥିଲେ ସେ ଦାନବ ମୁହିଁ ପକାଇବି ମାରି ।
ଇନ୍ଦ୍ର ବୋଇଲେ କେତନ ପିବ ରଥ ଘେନ
କାର୍ତ୍ତ୍ୟା କହି ପଠାଇଲେ କୃଷ୍ଣ ଫାଲଗୁନ ।
ଆଦ ବୋଲେ ସୂତ ଥିଲେ କରିବି ମୁଁ ରଣ
ନମିଷକେ କବନ୍ଧର ଘେନିବ ଜୀବନ ।
ଯହୁଁ ପ୍ରତିଜ୍ଞା କଲା ସେ ଭାରତ ତନୟ
ଶୁଣିକରି ଇନ୍ଦ୍ର ହେଲେ ଆନନ୍ଦ ହୃଦୟ ।
ଶୁଣ ଆହେ ବୈବସ୍ଵତ ମନୁ ନରପତେ
ଏ ଉତ୍ତାରୁ ଯାହା ହେଲା ଶୁଣ ଏକ ଚିତ୍ତେ ।
ଏ ସମୟେ ଦନଜର ପଣ୍ଡି ମହାତ୍ମା
ଯୁଦ୍ଧ ରଥ ଘେନ ସୂତ ପ୍ରବେଶେ ସେକ୍ଷଣି ।
ଧବଳ ରଥ ହୋଇଲା ଶ୍ଵରଗଳ କତ
ରଥୁ ଉତ୍ତରି ସାରଥି ସାକ୍ଷାତ କରନ୍ତି ।
ଯୁଧିଷ୍ଠି ଭୀମ ନକୁଳ ଆଉ ସହଦେବ
ସାରଥିକ ପଚାରିଲେ ସମର ପ୍ରସ୍ତାବ ।
ବ୍ୟାକୁଳ ହୋଇ ବୋଇଲେ ଶୂନ୍ୟରଥ ସ୍ଵହିଁ
ତୁ ଏକା ଅଇଲୁ କାହୁଁ ଅଭିମନ୍ୟୁ କାହିଁ ।
ସାରଥି ବୋଇଲା କୁନ୍ତେ ଶୁଣ ଧର୍ମରାୟ
ସମରେ ନିପାତ ହେଲା କୁନ୍ତିର ତନୟ ।
ଶୁଣି ଶୋକଭରେ କହି ନ ପାରିଲେ କଥା
ମୂର୍ଚ୍ଛିତେ ପଡ଼ିଲେ ସ୍ଵରପାଣ୍ଡବେ ସେ ତଥା ।
ଚେତ ସହଦେବ ବୋଲେ ଶୁଣ ମହୀପତେ
ଶୋକ ସମ୍ବରିଲୁ ଦେବ ଯିବା ଇନ୍ଦ୍ର ପ୍ରସ୍ଥେ ।

ଶୋକ ତେଜଣ ଉଠିଲେ କହନ୍ତି ସୁରଭାଇ
ଶୋକେ ଅବଶ ଶରୀର ନ ପାରନ୍ତି ଯାଇ ।
ପୁତ୍ରର ଗୁଣ ସୁମରି ବାହୁନ କାନ୍ଦନ୍ତି
ସବୁ ବୁଝିହୁଁ ନକୃଷ୍ଣ ଏ ନହିଁ ଯ ବୁଝି ।
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧାରୀ
ସିନ୍ଧୁସୁତା ରମଣାଙ୍କ ହୃଦୟବିହାରୀ ।
ଯୋଗୀଜନଙ୍କର ତୁମ୍ଭେ ଚିନ୍ତାମଣି ଧନ
ସଦା ମୋ ହୃଦେ ପ୍ରକାଶୁ ତବ ସୁଧା ନାମ ।
ସେହି ନାମ ଗୁଣି ଗୁଣି ମୋ ଜୀବନ ଯାଉ
ମୋହଠାରେ ଏହି କୃପାକର ମହାବାହୁ ।
ଏହି ଭିକ୍ଷା ତବପାଦେ ହେ ଜଗତଈଶ
କହଇ ଏ ଦ୍ରୋଣ ପର୍ବେ ଶ୍ରୀ ଶାରଳା ଦାସ ।

---

## ଅଭିମନ୍ୟୁ ବଧରେ ସଞ୍ଜୟ ଧୃତରାଷ୍ଟ୍ରଙ୍କ କଥୋପକଥନ ଓ ଅର୍ଜ୍ଜୁନଙ୍କ ଅଶୁଭ ଦର୍ଶନ

ଏଥୁ ଅନନ୍ତରେ କଥା ଶୁଣ ବୈବସ୍ୱତ
ଅଭିମନ୍ୟୁ ହେଲା ଯହୁଁ ସମରେ ହତ ।
ଜୟଧ୍ୱନି କରିଗଲେ କୌରବଙ୍କ ଥାଟ
ସଞ୍ଜୟ ହକାରି ପୁଚ୍ଛାକଲା ଧୃତରାଷ୍ଟ୍ର ।
ବଢ଼ଇ ଆନନ୍ଦ ଆଜ ଆମର ସଇନ
ଜୟ ଶବଦେ ଉଛୁଳୁ ଅଛଇ ମେଦିନୀ ।
ଜୟ ପତାକା ଉଡ଼ଇ ସବୁରି ରଥରେ
ଭୀମ ପଡ଼ିଲେକି ଆଜ ଆମ୍ଭର ସମରେ ।
ତେଣୁ କି ଆନନ୍ଦ ହେଉଛନ୍ତି ମୋର ଥାଟ
ଭୀମ ନାଶଗଲେ ନଷ୍ଟଜଙ୍କ ପଞ୍ଚରାଷ୍ଟ୍ର ।
ଭୀମ ମଲେ ଦୁର୍ଯ୍ୟୋଧନ ହୋଇବ ନିଶ୍ଚିନ୍ତ
ଜୟଦ୍ରଥ କରିଥିଲା ସେବା ବିଶ୍ୱନାଥ ।
ପାର୍ଥ ଛଡ଼ା ସେ ସବଙ୍କି କରିପାରେ ନାଶ
ଦେଇଥିଲେ ଏହିପରି ବର ତାଙ୍କୁ ଈଶ ।
ଜଳଧର ବ୍ୟୂହେ ହରି ନେଲେ ଅର୍ଜ୍ଜୁନଙ୍କୁ
ଜୟଦ୍ରଥ ନାଶିଲା କି ସବୁ ପାଣ୍ଡବଙ୍କୁ ।
ତେଣୁ ଜୟଦ୍ରଥ ନାମେ ଶୁଭେ ଜୟବାଣୀ
ସାଧ୍ୱୀ ପୁଣ୍ୟବତୀ ମୋର ଦୁଃଶୀଳା ଦୁଲଣୀ ।
ଶୁଭଯୋଗେ ଜୟଦ୍ରଥେ ଦେଲି ମୁଁ କୁମାରୀ
ଅସମୟେ ହୋଇଲା ସେ ମୋର ହତକାରୀ ।

ସଞ୍ଜୟ ବୋଲେ ନରନାଥ ଧୈର୍ଯ୍ୟସକୁ ଶୁଣ
ଚକ୍ରବ୍ୟୂହ କଲେ ଭରଦ୍ୱାଜଙ୍କ ନନ୍ଦନ ।
ଅର୍ଜ୍ଜୁନଙ୍କୁ ଘେନିଗଲେ ହରି ଜଳଧରେ
ଅଭିମନ୍ୟୁ ସେନାପତି ଆବର ସମରେ ।
ପ୍ରଥମଦ୍ୱାରେ ଜିଣିଲା ଦ୍ରୋଣଗୁରୁ ସେହି
ବୀର ପାଣ୍ଡବ ଗଲେ ସେ ଯୁଦ୍ଧ କରି ତହିଁ ।
ଦ୍ୱିତୀୟ ଦ୍ୱାରେ ତୁମ୍ଭର ଜୟଦ୍ରଥ ଥିଲା
ଏହି ବୀରଙ୍କର ସଙ୍ଗେ ଦ୍ୱନ୍ଦ୍ୱ ଆରମ୍ଭିଲା ।
ଶିବଙ୍କ ବରେ ଜିଣିଲା ସେ ବୀର ଭାଇଙ୍କୁ
ସେ ବୀରହେଁ ଛାଡ଼ିଗଲେ ଭୟକରି ତାକୁ ।
ସେହି ଦ୍ୱାର ଜିଣିଯାଇ ପାର୍ଥର ନନ୍ଦନ
ରଥର ନାମ ଧଇଲା ସୂତ ତା ଚେତନ ।
ଶଙ୍ଖ ଶ୍ୱେତ ପଦ୍ମ ମହାପଦ୍ମ ହୟ ବୀର
କର୍ଣ୍ଣର ଭୁଲେ ହୋଇଲା ସେହି ଦ୍ୱନ୍ଦ୍ୱକାରୀ ।
କର୍ଣ୍ଣଙ୍କୁ ଜିଣି ତୃତୀୟ ଦ୍ୱାରେ ଭେଦ ପଶି
ଶଲ୍ୟ କୃପଙ୍କୁ ଚତୁର୍ଥ ଦ୍ୱାରରେ ବିଧ୍ୱଂସି ।
ଭୂରିଶ୍ରବା ଅଶ୍ୱତ୍ଥାମା ଜିଣିଲା ପଞ୍ଚମେ
ଏହଙ୍କ ସମସ୍ତ ସୈନ୍ୟ ମାରିଲା ପ୍ରାଣେ ।
ଶତସହସ୍ର ଗଜନ ଅଶୀସହସ୍ର ହସ୍ତୀ
ଚଉସହସ୍ର ତୁରଙ୍ଗମ ଅସଂଖ୍ୟ ପଦାତି ।
ପଦକାର ବାଦ୍ୟକାର ପଡ଼ିଲେ କେତୋଟି
ଏତେକ ଧ୍ୱଂସିଲା ଏକା ସେ କୁମର ଗୋଟି ।
ଜିଣି ନ ପାରିଲେ ତାକୁ ଯୁଝିଣ ସମରେ
କପଟ ଯୁଦ୍ଧେ ମାଇଲେ ସେ ବାଳକୁମରେ ।
ବୀର ପାଣ୍ଡବଙ୍କୁ ଥାନ୍ତେ ଆଜ ଯେବେ ମାରି
ପଞ୍ଚକଟକରେ ହୋଇଥାନ୍ତେ ଅଧିକାରୀ ।
ପୁନଶ୍ଚ ବୋଇଲା ଶୁଣ ଆହେ ଧୃତରାଷ୍ଟ୍ର
ଅଭିମନ୍ୟୁ ଯୋଗେ ହେବ ତୋତେ ପୁତ୍ରକଷ୍ଟ ।
ଅନେକ ବାର ଜିଣିଛି ପାର୍ଥ ତୋ ପୁଅଙ୍କୁ
ପ୍ରାଣେ ନ ମାରେ ଉପରୋଧ କରଇ ଯେ ତାଙ୍କୁ
କେବଳ ମୋହେ ପକାଏ ନ ମାରଇ ପାର୍ଥ
ଭାବେ ଯାଙ୍କ ବିନା ଅନ୍ଧ ହୋଇବେ ଅନାଥ ।
ଏବେ ଉପରୋଧ ଆଉ କେବେ ନ କରିବ
ଏଥିକି ଦେଖିବୁ ତୋର ପୁତ୍ର କଷ୍ଟ ହେବ ।
ଆଜୁ ସ୍ନେହ ଛାଡ଼ିଲା ସେ ତା ପୁତ୍ର ବଧିଲେ
ଆଜୁ ଅପୁତ୍ରିକ ହେଲୁ ଜାଣ ତୋର ମନେ ।

ଏ ସର୍ବ ଉପଦ୍ରବ ମୋତେ ଭଲ ନ ଦିଶଇ
ଦୁଃଖର କାରଣ ହେଲା ଆଉ ଫଳ ନାହିଁ ।
ନିରପେକ୍ଷ ମନ୍ତ୍ରୀବାକ୍ୟ ଶୁଣି ଧୃତରାଷ୍ଟ୍ର
ଭାବିଲା ଏ ଶିଶୁ ବଧେ ହେଲା ପୁତ୍ରକଷ୍ଟ ।
ଅଭିମନ୍ୟୁ ବଧେ ପାଣ୍ଡୁକୁଳ ହିଁ ବୁଡ଼ିଲା
ଲକ୍ଷ୍ମଣକୁମର ଆଉ କେଉଁ କି ଭାବିଲା ।
ମଣିଥିଲା ରାମ ବିନା ହୋଇଲା ନିଧନ
ଧିକ କରିବେ ଭୁମ୍ଭେ ଅତ୍ୟନ୍ତ ଅଜ୍ଞାନ ।
ଅନ୍ତଃପୁରେ ଶୁଭିଲା ଯେ ଉଚେ ଶୋକବାଣୀ
ଧୃତରାଷ୍ଟ୍ର ବିଷାଦିତ ହେଲା ତାହା ଶୁଣି ।
ଏହା କହି ଧୃତରାଷ୍ଟ୍ର ହୋଇଲା ମଉନ
ଭୂମିରେ ବସି ତଳକୁ ପେ ଭଲା ଆନନ ।
ହସ୍ତିନାପୁରେ ପ୍ରଚୁର ହେଲା ଏ ବାରତା
ଶୁଣ ସାବଧାନେ ଏବେ ପାଣ୍ଡବଙ୍କ କଥା ।
ପୁତ୍ର ବଧ ହେଉବାରୁ ଗଲେ ସୁରରାଇ
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହୋଇଲେକ ଯାଇ ।
ମୁନି କହନ୍ତେକ ଶୁଣ ଆହେ ନରମଣି
ଜଳଧର ବ୍ୟୂହେ ଥିଲେ କୃଷ୍ଣ ଫାଲଗୁନି ।
ଅଭିମନ୍ୟୁ ବଧ ହେବା ଜାଣି ଦେବବର
ସଙ୍କଟରେ ଜଳଧର ବ୍ୟୂହ ଦେଲେ ସାର ।
ତିନିଶତ ନବସାଗର ଯେ ଅଟେ ଯୋଦ୍ଧୀ
ପାଞ୍ଚକ୍ଷୌହିଣୀ ବଳ ଏକା ଅର୍ଜୁନ ନିରୋଧି ।
ଅର୍ଜୁନକୁ ଶ୍ରୀହରି ମାୟା କରିଥିଲେ
ଉକ୍ତସର୍ଯ୍ୟ ପ୍ରଯୁ ସୈନ୍ୟ ମାରୁ ନ ସକିଲେ ।
ହୋଇଲାକ ଅଭିମନ୍ୟୁ ବଧ ଯେତେବେଳେ
ଜଳଧର ବ୍ୟୂହ ହରି ନାଶକରି ଦେଲେ ।
ଜୟ ଶଙ୍ଖ ବଜାଇଲେ ପ୍ରଭୁ ଆଦିମୂଳ
ବାହୁଡ଼ା ବିଜୟ କଲେ ହୋଇ କୁତୂହଳ ।
ଜୟ ତୁ ଜଗଦୀଶ୍ୱର ଜଗଜ୍ଜନଈଶ
ମାୟାଧର ସ୍ୱରୂପ ନ ଜାଣୁ ଦେବ ଈଶ ।
ନିର୍ମଳ ଜଳେ କ୍ରୀଡ଼ନ୍ତି ଯେସନ୍ତେ ହଂସପନ୍ତି
ତଥା ମୋ ହୃଦେ ବିଳସେ ଶ୍ରୀକୃଷ୍ଣ ଭାରତୀ ।
ବୁଡ଼ିଲା ମୋ ସର୍ବମୋହ କୃଷ୍ଣଭକ୍ତି ଯୋଗେ
ବାଗ୍‌ଦେବୀ ଜିହ୍ୱାରେ ବିଳସଇ ମନରଙ୍ଗେ ।
ସଂସାର ସାଗର ଅଟେ ଜନ କାଳଫାଶୀ
ଜଗଦ୍‌ବନ୍ଧୁ ନାଥ ମୋତେ ତବ ପୁର ଦେସି ।

ମାୟାର ଭଣ୍ଡାର ଯେହୁ ମାୟାଧର ନାମ
ଶ୍ରୀକୃଷ୍ଣ ଚରଣେ ମୋର ଶତେକ ପ୍ରଣାମ ।
ଅଗାଧ ସାଗରେ ମୁଁ ଯେ ଦେଖିଲି ଅମିତ
ଚରାଚରଙ୍କର ଦେବ ତୁ ପରମ ଗତି ।
ଯୋଗେ କରନ୍ତି ତୁମ୍ଭଙ୍କୁ ଋଷି ସଦା ଚିନ୍ତା
ନାଶକର ତନ୍ତ୍ରରୁ ଯେ ଭୂତ ଉଦ୍ଧାରନ୍ତା ।
ମନ ବଚନ କର୍ମେବ୍ୟେ ସଦା ମୁଁ ଭାବଇ
ସଂସାରସାଗରୁ ମୋତେ ତାର ରମାସାଇଁ ।
ନ ପଢ଼ିଲି ନ ଦେଖିଲି ନ ଜାଣେ ମୁଁ କିଛି
ତବଚରସାଦେ ଶବ୍ଦ ମାତ୍ରା ମୁଁ ଶୁଣିଛି ।
ହୃଦବିଲୁ ଅଳଙ୍କାର ତବ ନାମ ଗୋଟି
ତୁମ୍ଭେ ଦୟା କଲେ ଭବମୋହ ଯିବ ତୁଟି ।
ମାନ ସୁନ୍ଦର ନାମରେ ହେଉଁ ମଣ୍ଡିଧର
କରନ୍ତୁ ବାସ ଯାଇଁ ଚିତ୍ତର ଉପର ।
ସର୍ବଜନ ଚିନ୍ତାମଣି ଶ୍ରୀପୁରୁଷୋତ୍ତମ
ହୃଦଗତେ ଭାବଇ ମୁଁ ଶ୍ରୀରାମ ଶ୍ରୀରାମ ।
ତୁଳସୀ ବଲ୍ଲଭଙ୍କର କମଳାଚରଣେ
ଶୂଦ୍ର ମୂର୍ଖ ଶାରଳା ଯେ ଚିନ୍ତା କରେ ମନେ ।
କହନ୍ତି ଅଗସ୍ତି ଶୁଣ ବୈବସ୍ୱତମନୁ
ସାତ୍ୟକିକୁ ଗଇଲେ ଯେ ଦେବ ଧର୍ମସୂନୁ ।
ତୁ ମୋର ବଚନ ଏବେ ଶୁଣସିରେ ବାବୁ
ଜଳଧର ବ୍ୟୂହରୁ ଏ ଏହିକ୍ଷଣି ଯିବୁ ।
ନିଃଶଙ୍କରେ ଯୁଦ୍ଧକରେ ତହିଁ ଅରଜୁନ
ଚକ୍ରବ୍ୟୂହେ ଅଭିମନ୍ୟୁ ହେବାର ନିଧନ ।
ଯେବେ କି ତହିଁ ବାରତା ପାଏ ଅରଜୁନ
ପୁତ୍ରଶୋକେ ହରାଇ ନ ଦେଏ ନିଜ ପ୍ରାଣ ।
ପୁତ୍ରର ନିଧନ ହେବା ଯେବେହିଁ ଶୁଣିବ
ନ ପୁଣ ଇନ୍ଦ୍ରପ୍ରସ୍ଥକୁ ବାହୁଡ଼ିଣ ଯିବ ।
ହେ ଧର୍ମ ନ କହୁ କେହି ଏହା ପାର୍ଥଆଗେ
ଶୁଣିଲେ ରଣକୁ ଯିବ ସେହିକ୍ଷଣି ବେଗେ ।
ଏହା କହି ଶୋକାକୁଳ ହେଲେ ଯୁଧିଷ୍ଠିର
ସେହିକ୍ଷଣି ସାତ୍ୟକି ଯେ ହୋଇଲା ବାହାର ।
ସାତ୍ୟକି ଯାଆନ୍ତେ ଶୋକେ ଧର୍ମ ମହୀପତି
ଆହାରେ ନନ୍ଦନ କହି ପଡ଼ିଗଲେ କ୍ଷିତି ।
ଋଷିମାନଙ୍କ ଯତନେ ପୁଣି ଲଭି ଜ୍ଞାନ
ବିକଳେ କାନ୍ଦନ୍ତି ଭାଳି ପୁତ୍ର ଗୁଣମାନ ।

ବୁ ଗୁଣବନ୍ତ ନନ୍ଦନ ପ୍ରାଣ ପଞ୍ଚଭୂତ
କୁଳମଣ୍ଡନ ମୋହର କୃଷ୍ଣ ଆରେ ସୁତ ।
ସୋମବଂଶ ଉଦ୍ଧରଣ ଅଟୁ ବଳବନ୍ତା
ବୁଡ଼ିଲା ସୋମବଂଶକୁ କୃଷ୍ଣ ଉଦ୍ଧାରନ୍ତା ।
ପୁନଃପୁନଃ ଯୁଧିଷ୍ଠିର କାନ୍ଦି ମହୀଲୋଟି
କେ ମୋହର ଲଭିଇଲା କୁଳରୁ ପଞ୍ଚଟି ।
ଯୁଧିଷ୍ଠିରଙ୍କ କୋଳେ ଧରି କାନ୍ଦେ ଭୀମସେନ
କାହିଁଗଲୁ ଅଭିମନ୍ୟୁ କୁଳର ମଣ୍ଡନ ।
ଶାରଦର ସୁନ୍ଦର ତୁ କଥା ଜଗତ୍ରେଠି
ଏପରି ଜନ୍ମ ପାଷାଣେ ଶିର ଦେଲା ପିଟି ।
କର୍ଲ୍ଲିଜ ଆତ୍ମା ମୋହର ରହିଛି କପାଇଁ
ନଷ୍ଟେ ବିଷ ଖାଇ ମୁହିଁ ପ୍ରାଣ ତେଜିବଇଁ ।
ପୋଡ଼ୁ ପୋଡ଼ୁ ଏ ଜୀବନ ଏହିକ୍ଷଣି ଯାଉ
ହାଇର ଅସିବାଯ ଏ ଯେସନେ ନ ଥାଉ ।
ବାଳପୁତ୍ର ନାଶଗଲା ମୋହର ଦେଖନ୍ତେ
କସ ବୋଲିବ ଅର୍ଜୁନ ଆସିକରି ମୋତେ ।
କାନ୍ଦଇ ଭୀମସେନ ଯେ ଭୂମିପରେ ପଡ଼ି
ଯାଉପ୍ରାଣ ବୋଲି କନ୍ଧ ଶରେ ମୁଣ୍ଡକୋଡ଼ି ।
ଆମ୍ଭର ଜୀବନ କାଳ ନିକଟ ହୋଇଲା
ତୋତେ ମରାଇବାକୁ ଏ ପ୍ରାଣ ଯା ରହିଲା ।
କପାଇଁ ନ ଫୁଟିଗଲା ମେ ର ବେନ ଆଖି
ମୁହିଁ ଯା ବଞ୍ଚି ରହିଲି ତୋ ମରଣ ଦେଖି ।
ଲୋକେ ଯେ କଥବୋଲିବେ ସାଂସାରିକ ଧର୍ମେ
ପାଣ୍ଡବେ ଦେଖନ୍ତେ ପୁତ୍ର ପଡ଼ିଲା ସଂଗ୍ରାମେ ।
କୁପୁତ୍ରକେ ଗାଇବେବେ ଏ ଅଖ୍ୟାତି ବାଣୀ
ଆମ୍ଭ ଦେହ ସହିବ କି ଏହି କଥା ଶୁଣି ।
କପାଇଁ ରହିଛି ପିଣ୍ଡେ ଏ କର୍ଲ୍ଲିଜ ଆତ୍ମା
କ ବୋଲି ବୋଲିବ ପାର୍ଥ ଶ୍ରୀକୃଷ୍ଣ ମହାତ୍ମା ।
ଉଭୟ କୁଳକୁ ଥିଲା ଏହି ପୁତ୍ର ଗୋଟି
ଭୀମର ରୋଦନ ଶୁଣି ନକୁଳ ଯେ ଉଠି ।
ପଥର ବେନ ଆପଣା ଉର ପରେ ତାଡ଼ି
ଡାକଲେ କାନ୍ଦିଲା ସେହି ଦେଇ ଗୋଇରଡ଼ି ।
ଆହାରେ ନନ୍ଦନ ତୁହି ସୋହଡ଼ ସୁନ୍ଦର
ଆମ୍ଭଙ୍କୁ ଛାଡ଼ିଣ ଗଲୁ ଶମନ ନଗର ।
ତୋତେ ସଙ୍ଗେ ନେଇଗଲୁ କରିବାକୁ ରଣ
ଯମକୁ ଦେଇ ଅଇଲୁ ଆମ୍ଭେ ସ୍ୱରଜଣ ।

ତୋ ବିନା ସବୁ ଦିଶଇ ଆମ୍ଭଙ୍କୁ ଅନ୍ଧାର
ତୋ ସମ ପୁତ୍ର ହରାଇ ରହିଛୁ ଶରୀର ।
ଜନଙ୍କ ମୁଖେ ପାଇବୁ ଆମ୍ଭେ ବଡ଼ ଲାଜ
କ୍ଷତ୍ରୀକୁଳକୁ ଦୁଷଣ ଗାବନ୍ତେ କି କାର୍ଯ୍ୟ ।
ଶୋକ ବକଲେ ପଡ଼ନ୍ତି ଭୂମିର ଉପରେ
ମହାବୃକ୍ଷ ପଡ଼େ ଯେହ୍ନେ ବାତ ଆଘାତରେ ।
ସହଦେବ କହିଥିଲେ ବୋଳ ଯୁଧିଷ୍ଠିଙ୍କି
କହଲେ କାହୁଁ ପାଇବା ଆଉ ତାକୁ ନକ ।
କାହେ ସାସ୍ତାମେ କହନ୍ତ ମନେ ଗୃହସ୍ଥବ୍ୟଥା
କହିଲେ ଯେ ନ ସଶିବ ଯୁଧିଷ୍ଠି ଅବସ୍ଥା ।
ମିଛେ ବନ୍ଧ୍ୱରେ ପଶିଲୁ ରାଜ୍ୟ ପୋଡ଼ୁ ପୋଡ଼
ସ୍ୱପୁତ୍ର ହରାଇ ଆରେ ପ୍ରାଣ ଯା ନ ଛାଡ଼ୁ ।
ବକଲେ ଯୁଧିଷ୍ଠିଙ୍କର ଦେହେ ଘଞ୍ଚ ଆତ୍ମା
ପୁଣି ଭୂମିରେ ପଡ଼ିଲେ ବକଲେ ମହାତ୍ମା ।
ଅଭିମନ୍ୟୁ ସମରେ ପଡ଼େ ଯେତେବେଳେ
ଶୂନ୍ୟଭୁବନ ଛାଡ଼ିଣ ଗଲେ ଦିଗପାଳେ ।
ଷଡ଼ଦଣ୍ଡ ଦିବା ଥାଉଁ ସୂର୍ଯ୍ୟ ଅସ୍ତଗଲା
ମେଦିନୀ ଟଳଟଳିତ ଅନ୍ଧାର ଦିଶିଲା ।
ଆକାଶରୁ ପଡ଼ିଲା କି ଖସି ନକ୍ଷାପତ
ଦିଶିଲା ଯୁଗଅନ୍ତକ ପ୍ରାୟ ବସୁମତୀ ।
ସୋମବଂଶ ଉଦ୍ଧାରଣ ଯେଉଁ ପୁତ୍ରଗୋଟି
ତାହାର ନିଧନେ ଲେଉଟିଲା ନବସୃଷ୍ଟି ।
ପୃଥିବୀର ଅଧିପତି ଯନ୍ତ୍ର ନାଶଗଲା
ଉଲ୍‌କାପାତ ପ୍ରାୟ ତଉବଗ ଯେ ଦିଶିଲା ।
ତେବେଣେ ଅନ୍ଧାର ଦେଖିଣ ପୁଚ୍ଛେ ଫାଲ୍‌ଗୁନ
ଚନ୍ଦ୍ରପ୍ରାୟ କପା ବୁଲୁଅଛି ପୁର ଭନ ।
ଆଜ ଯେ ମକର ଶୁକ୍ଳ ତ୍ରୟୋଦଶୀ ତିଥି
କପାଇଁ ସତେଜ ବଶୁନାହିଁ ଛାୟାପତି ।
ଏତେବେଳ ଥାଉଁ ଥାଉଁ କପା ଅଂଶୁମାଳୀ
ତେଜୋହୀନ ହୋଇକରି ଦିଶଇ ଏଭଳି ।
ଗୋବିନ୍ଦ ବୋଇଲେ ପାର୍ଥ ସମର ଗହନେ
ପୁତ୍ର କି ବାଟନ୍ତି ରେଣୁ ଉଡ଼ ଦିଗମାନେ ।
ବଦ୍ଧ ବ୍ରାହ୍ମଣ ଚଣ୍ଡାଳ ରଣେ ହେଲେ ନାଶ
ତାହାଙ୍କ ଆତ୍ମା ସବଂଶ କରଇ ବିନାଶ ।
ଯେଣୁକରି ଜୀବଆତ୍ମା ଅଟେ ଅନାବୃଷ୍ଟି
ତେଣୁ ଉତପାତ ଦିଶୁଅଛି ସର୍ବ ସୃଷ୍ଟି ।

କୃଷ୍ଣ ବାକ୍ୟେ ଭ୍ରାନ୍ତ ଗଡ଼ ସୁଭଦ୍ରାର ନାଥ
ବୋଇଲେ କୁରୁକ୍ଷେତ୍ରକୁ ରଥ ମୋର ବାହ
ଅର୍ଜୁନ ବଚନ ଶୁଣି ଦେବ ମଧୁହାସ
ରଣଭୂମିରେ ପ୍ରବେଶ ଗଲେ ଦଣ୍ଡ ଚାର ।
ଦେଖିଲେକ ଅଶ୍ୱ ଗଜ ପଦାତିକ ପିଣ୍ଡ
ଛିଡ଼ିଛନ୍ତି ପଡ଼ିଅଛି ହୋଇ ଖଣ୍ଡ ଖଣ୍ଡ ।
ପାଞ୍ଚଯୋଜନ ପର୍ଯ୍ୟନ୍ତେ ବହେ ରକ୍ତ ମାଂସ
ପଡ଼ନ୍ତି ନିଶାଚରୀ ଆବର ରାକ୍ଷସ ।
ବ୍ୟାଘ୍ର ଭଲ୍ଲୁକ ଆବର ଶୃଗାଳ ଏ ଆଦି
ଆନନ୍ଦେ ପିଅନ୍ତି ରକ୍ତ ମାଂସ ଖାଆନ୍ତି ଖେଦି ।
ଚାମୁଣ୍ଡା ଡାକିନୀ ଭୈରବୀ ମେଳ ହୋଇ
ଯୋଗିନୀ ବେତାଳଗଣ ସଙ୍ଗତରେ ନେଇ ।
ବିବସନା ବିକଟାଳୀ କେଶ ସେ ମୁକୁଳା
ମେଦ ମାଂସ ଖାଆନ୍ତି ହୋଇଣ କୁତୂହଳା ।
କ୍ଷଣେ ଜମ୍ଭେ ପୃଥ୍ୱୀ ଲହଜିହ୍ୱା ମରୁଆଳୀ
କ୍ଷେପି ନାଚନ୍ତି ଗାବନ୍ତି ଦଂଷ୍ଟ୍ର ହୁଳହୁଳି ।
ଦେଖିକରି ଆନନ୍ଦିତ ହେଲେ ଧନଞ୍ଜୟ
ବୋଇଲେ ଭୀମ ଏ ସବୁ କରିଛନ୍ତି କ୍ଷୟ ।
ଦେଖି ଆସୁ ଆସୁ ପାର୍ଥ ବୋଲନ୍ତି ଏପରି
ଇନ୍ଦ୍ରପ୍ରସ୍ଥ ଗଲେ ଏହା ବୁଝିବା ପଚାରି ।
ଏ ସମସ୍ତେ ଫେରାଇଲେ ରଥ ଦେବସ୍ୱାମୀ
ଛାଡ଼ିଲେକ ଯହିଁ କୃଷ୍ଣ ପାର୍ଥ ରଣଭୂମି ।
ଆସୁ ଆସୁ ଶ୍ରୀକୃଷ୍ଣଙ୍କୁ ପୁଚ୍ଛନ୍ତି ଅର୍ଜୁନ
ଘନ ଘନ ସ୍ଫୁରେ କିପାଁ ମୋ ବାମ ନୟନ ।
ହୃଦୟ ବିକଳ ଆଜ ବହେ ପଞ୍ଚଭୂତେ
ମଙ୍ଗଳ ତ ନ ଦିଶଇ ମୋତେ ଏ ଜଗତେ ।
ବାମଭାଗେ ଶବ୍ଦନ୍ତି ବହୁତ ଉଲ୍ଲୁକ
ଆଗେ ବିକଟାଳ ରାବ ଛାଡ଼ନ୍ତି ଜମ୍ବୁକ ।
ଅଦ୍ଭୁତେ ନୟନୁ ମୋର ବହେ ଅଶ୍ରୁବାରି
ଶୋକରେ ଗାଣ୍ଡିବ ଧନୁ ନ ପାରଇ ଧରି ।
ପ୍ରମାଦ ଦିଶଇ ବଇକୁଣ୍ଠ ପରମାତ୍ମା
କି ବିପଦ ଘଟିଲା କି କହ ହେ ମହାତ୍ମା ।
କେଉଁଗୋଟି ଭାଇ ମୋର ପଡ଼ିଲେ କି ରଣେ
ଚକ୍ରବ୍ୟୂହେ କି କପଟ କଲେ ଗୁରୁଦ୍ରୋଣେ ।
ହେ ହରି ଶୁଖିଲା ତାଳେ ବସି ସବେ କାକ
ସମ୍ମୁଖରେ ବିକଟାଳେ ଦେଉଅଛି ଡାକ ।

ଗୋବିନ୍ଦ ବୋଇଲେ ପୁଣ ଦ୍ୱନ୍ଦ୍ୱରେ ପଶିଲେ
ଜୟ କି ଅଜୟ ହେଉ ଏକ ହୁଏ ଭଲେ ।
ପୁଣି ବୋଇଲେ ଯଦ୍ୟପି ବ୍ରହ୍ମା ଇନ୍ଦ୍ର ରୁଦ୍ର
ତୋ ଭାଇଙ୍କୁ ନ ପାରିବେ ଦେଇ ସେ ବିପଦ ।
ଉତପାତ କାଳ ଯେବେ ହୁଅଇଟି ପାର୍ଥ
ଲୋକଙ୍କୁ ଦେଖାଯାଏ ତ ଏପରି ବହୁତ ।
ଆଉ ଯେତେ ଅମଙ୍ଗଳ ଦେଖେ ଫାଲଗୁନ
କୂଟେ ବଞ୍ଚାଇ ଶ୍ରୀକୃଷ୍ଣ ଆସନ୍ତି ଯେ ଘେନ ।
ସାତ୍ୟକି ଡାକଇ ମହାବଳ ପର୍ବତରେ
ପାଣ୍ଡବ ବିଜୟୀ କୃଷ୍ଣ ଆସ ହେ ହରିରେ ।
ଏହି ପରସ୍ପେ ସଙ୍କେତ କୃଷ୍ଣେ କହିଗଲେ
ଇଥେ ଥାଇ ଅର୍ଜୁନ ଜାଣି ନ ପାରିଲା ।
ଏ ସମସ୍ତେ ଇନ୍ଦ୍ରପ୍ରସ୍ଥେ ପ୍ରବେଶିଲେ ଯାଇ
ଦେଖିଲେକ ଶ୍ରୀହୀନ ଭୁବନ ଦିଶଇ ।
ସ୍ୱାମୀ ଭଗ୍ନିନ ପରସ୍ପେ ନାସାଏ ଦେଖନ୍ତି
ଗତଆତ୍ମା ପରି ସର୍ବଜନ ବସିଛନ୍ତି ।
ଯେତେକ ଜନମାନଙ୍କୁ ଦେଖେ ସବ୍ୟସାଚୀ
ଲେଶମାତ୍ର କାର ମୁଖେ ହର୍ଷ ନାହିଁ କିଛି ।
ସର୍ବଜନ ଚିନ୍ତାମଣି ପୁରୁଷ ଉତ୍ତମ
ମୋହଠାରେ କୃପା କର ହେ ଚକ୍ରନୟନ ।
କୃଷ୍ଣସାରଥିର ପାଦଯୁଗ କରି ଆଶ
ଦ୍ରୋଣପର୍ବ ଲେଖଇ ଯେ ଶ୍ରୀଶାରଳାଦାସ ।
ଜୟ ଜୟ ଦାକ୍ଷାୟଣୀ ଚରଣେ ଶରଣ
ପ୍ରାର୍ଥନା କରଇ ମାତ ହୁଅ ସୁପ୍ରସନ୍ନ ।

---

## ପାଣ୍ଡବ ଆଦିଙ୍କ କ୍ରନ୍ଦନ

ମୁନିରପି ପୃଚ୍ଛା କଲେ ମନୁ ଦଣ୍ଡଧର
ପୁରଦ୍ୱାରେ ପ୍ରବେଶିଲେ ପାର୍ଥ ଚକ୍ରଧର ।
ତତପରେ ଯେଉଁ କଥା ହେଲା କହ ମୋତେ
ଶୁଣିବାକୁ ଶ୍ରଦ୍ଧା ମୋର ହେଉଅଛି ଚିତ୍ତେ ।
କହନ୍ତି ଅଗସ୍ତ୍ୟ ମୁନି କର ଅବଧାନ
ଯାହା ପଚାରିଲ ରାଜା ମନଦେଇ ଶୁଣ ।
ରଥୁ ଓହ୍ଲାଇଣ ଗଲେ ପାର୍ଥ ଯଦୁନାଥ
ଦେଖିଲେ ବାହ୍ୟମନ୍ଦିରେ ବସେ ଧର୍ମସୁତ ।
ଯୁଧିଷ୍ଠିରଙ୍କୁ ପ୍ରଣାମ କରିଣ ସେକ୍ଷଣି
ମନ ମଧ୍ୟରୁ ଛାଡ଼ିଲେ ଭ୍ରାନ୍ତି ଫାଲଗୁନ ।

ମସ୍ତକରେ ହସ୍ତଦେଇ ପୁଚ୍ଛନ୍ତି ଧନଞ୍ଜୟ
ଚକ୍ରବ୍ୟୂହ ଜୟ କଲେ କରି କି ଉପାୟ ।
ଅପାର ପ୍ରତିଜ୍ଞା କରୁଥିଲେ ଗୁରୁଦ୍ରୋଣେ
ସଂଗ୍ରାମରେ ପଡ଼ିଲେକ କେଉଁ ରାଜାମାନେ ।
ଚକ୍ରବ୍ୟୂହ କେଉଁପରି ପାରିଲ ଯେ ଭେଦି
ରଣସ୍ଥଳେ ପଡ଼ିଛନ୍ତି ବହୁତର ଯୋଧୀ ।
ଏହିପରି ପୁଣି ପୁଣି ପୁଚ୍ଛେ ଧନଞ୍ଜୟ
ଶୋକଭରେ ନ ପାରନ୍ତି କହି ଧର୍ମରାୟ ।
ପୁଣି ଅର୍ଜୁନ ବୋଇଲେ ପ୍ରଥମ ଦୁଆରେ
ଦ୍ରୋଣଗୁରୁ ଜଗିଥିଲେକ ତାଙ୍କ ସମ୍ମୁଖରେ ।
ଭଗ୍ନ ହୋଇ ରଣଗୋଳ କରି କେଉଁଜନ
ତାହାଙ୍କୁ ଜିଣିଲା ଏହା କହନ୍ତୁ ଆପଣ ।
ଦ୍ୱିତୀୟ ଦ୍ୱାର ଜଗିଣ ଥିଲା ଜୟଦ୍ରଥ
ପାଣ୍ଡବେ ଜିଣିବା ବର ଦେଲେ ବିଶ୍ୱନାଥ ।
କେହୁ ସମର୍ଥ ହୋଇଲା ତାକୁ ଜିଣିବାକୁ
ସେ ସମର୍ଥ ଭୂରିଶ୍ରବା ଆବର ଶଲ୍ୟକୁ ।
ଭୀମସେନ ବୋଇଲେକ ଶୁଣ ସବ୍ୟସାଚି
ଚକ୍ରବ୍ୟୂହ ଭେଦ ଆମ୍ଭେ ନ ଜାଣୁ ଯେ କିଛି ।
ଅଭିମନ୍ୟୁ ବୋଇଲା ମୁଁ ଏହା ପାରେ ଭେଦ
ବାହୁଡ଼ିବାବେଳେ ତୁମ୍ଭେ କରିବଟି ବୁଦ୍ଧି ।
ଆମ୍ଭେ ପଶିଲୁ ଚାଲି ଯିବା ଏହାବେଳେ
କୃଷ୍ଣାର୍ଜୁନ ପ୍ରବେଶିବେ ବାହୁଡ଼ା ଭାବେ ।
ପ୍ରଥମ ଦ୍ୱାରେ ସେ ଏକା ନାରାଚେକ ବିନ୍ଧି
ଦ୍ରୋଣଙ୍କ ରଥ ସାରଥି ହୟବର ଛେଦି ।
ହାବୋଡ଼ା ଶରେ ପଡ଼ିଲେ ଯହୁଁ ଦ୍ରୋଣଗୁରୁ
ଅନେକ ଯୋଦ୍ଧାଙ୍କୁ ପୁଣ ମାଇଲା ଭିତରୁ ।
ଦ୍ୱିତୀୟ ଦ୍ୱାର ଜଗିଣ ଜୟଦ୍ରଥ ଥିଲେ
ପ୍ରହରଣେ ତିନସହସ୍ର ରାଜନ ପଡ଼ିଲେ ।
ଭୟଙ୍କର ଜୟଦ୍ରଥ ଦ୍ୱାର ଛାଡ଼ିଦେଲା
ପୁଣି ଜୟଦ୍ରଥ ଭୟେ ତେଜିଣ ଉଠିଲା ।
ଭିତରକୁ ଅଭିମନ୍ୟୁ ଝସାଇ ପଶିଲା
ଛାଡ଼ ନ ଦେଇ ଆମ୍ଭଙ୍କୁ ରଥ ଓଗାଳିଲା ।
ଏକା କୁମର ଭିତରେ ଗଲା ରଥ ବାହି
ତୃତୀୟ ଦ୍ୱାରେ ଜଗିଣ କର୍ଣ୍ଣ ଥିଲା ରହି ।
ଅନେକ ଯୁଦ୍ଧ କଲାକ କର୍ଣ୍ଣ ତାହା ତୁଲେ
ଅଭିମନ୍ୟୁ ଶରଘାତେ ବହୁସୈନ୍ୟ ମଲେ ।
କର୍ଣ୍ଣକୁ ବିରଥ କରି ଗଲା ଅଭିମନ୍ୟୁ
ଶଲ୍ୟ କୃପଙ୍କୁ ଜିଣିଲା ତୋହର ସେ ସୂନୁ ।
ଭୂରିଶ୍ରବା ଅଲମ୍ବୁଷ କାଶୀ କଉଶିକ
ଦଶସହସ୍ର ରାଜା କୁଳେ ସଇନ୍ୟ ଅନେକ ।
ଏକ ଏକ ଶରେ ସର୍ବେ ପଡ଼ନ୍ତେ ଧରଣୀ
ଅଧର୍ମ ଯୁଦ୍ଧ ଆରମ୍ଭ କଲା କୁରୁମଣି ।
ପାଞ୍ଚ ସହସ୍ର ରାଜାଙ୍କୁ ଘେନ କୁରୁରାୟ
ବେଢ଼ିଣ ମାରିଲେ ବାଳୁ ତୋହର ତନୟ ।
ଜୟଦ୍ରଥ ଦେହକୁ ପୃଷ୍ଠ ପଡ଼ିଲା ଉପରେ
ଅଭିମନ୍ୟୁ ପ୍ରାଣତ୍ୟାଗ ହୋଇଲାକ ହାବେ ।
ଭୀମସେନ ମୁଖୁଁ ଏହି ବଚନକୁ ଶୁଣି
ପଡ଼ିଲା ସେ ଧନଞ୍ଜୟ ବଜ୍ରଘାତ ଗଣି ।
ଅସାକ୍ଷ୍ମମ ହୋଇ ଯହୁଁ ପଡ଼ିଲା ଢଭିଗ୍ରୀ
ଯାଇ କୋଳରେ ଧଇଲେ ତାହାକୁ ଶ୍ରୀହରି
ଜଳବେନ ତା ମୁଖରେ ସିଞ୍ଚିଲେ ଅଚ୍ୟୁତ ।
ଚେତା ପାଇ ପାର୍ଥ ଶୋକ କଲେକ ବହୁତ ।
କେଣେ ଛାଡ଼ିଗଲୁ ଆରେ ମୋ ପିଣ୍ଡ ପରାଣ
ମେ ନେହପିତୁଳା କୃଷ୍ଣ ଅନ୍ତରେ ନନ୍ଦନ
କେବଣ ଘାତକ ମୁହିଁ କରିଥିଲି ପୂର୍ବେ
ତହିଁକି ଏ ଶାସ୍ତି ବିଧି ବିହିଲାକ ଏବେ ।
ମୁହିଁ ନଉଚ୍ଛୁଣା କପାଁ ହୋଇଲି ବିନାଶ
ବଂଶ ଉଦ୍ଧାରିବୁ ବୋଲି କରିଥିଲି ଆଶ ।
ଏବେ ମୁହିଁ ଜୀଇଁଥିବୁ ଚାଲିଗଲୁ ତୁହି
ଆଉ ଥରେ ଆସି ଯାଅ ମୋତେ ଦେଖାଦେଇ
ପୁଣ ପୁଣ ଶୋକେ ପାର୍ଥ ପଡ଼ଇ ଭୂମିରେ
ବାତାଘାତେ ରମ୍ଭାବୃକ୍ଷ ପଡ଼ିଲା ପ୍ରକାରେ ।
ଅର୍ଜୁନର ଶୋକ ଦେଖି ହରି ଶୋକ କଲେ
ଆରେ ଅଭିମନ୍ୟୁ କାହିଁଗଲୁ ବୁ ବୋଇଲେ
ଯଦୁକୁଳ ନନ୍ଦନ ମୋ କେହ୍ନୁ ନେଲା ହରି
କେବଣ ବାପୁଡ଼ା ମୋର ହୋଇଲା ବଇରି ।
ଅକାଳ ବାରତା ଆସି ଶୁଣା ହେଲା ମୋତେ
ପୁତ୍ର ବିନାଶ ହୋଇଲା ପିଅର ଦେଖନ୍ତେ ।
ନନ୍ଦ ଯଶୋଦାଙ୍କ ମୁଖ ଚାହିଁବି କେମନ୍ତେ
ଅନେକ ଶୋକ କରନ୍ତି ଦେବ ଜଗନ୍ନାଥେ ।
ଯେ ପ୍ରଭୁ ମାୟାରେ ବଶ ହୋଇଛି ସଂସାର
ସେ ବାହ୍ୟେ କରନ୍ତି ଶୋକ ଆନନ୍ଦ ଭିତର ।

ଅର୍ଜୁନର ଶୋକକଥା କହିଲେ ନ ସରେ
ପୃଥ୍ୱୀ ଫାଟେ ପୁଣି ପୁଣି ପଡ଼ଇ ମୋହରେ ।
ଶୂରବନ୍ତ ସୁନ୍ଦରରେ କଥା ଜଗତ୍ତେଠି
ତୋ ନାମ ଧଇଲେ ସ୍ୱର୍ଗେ ଚମକଣ ଉଠି ।
ଆରେ ବାବୁ ବଡ଼ଦୁଃଖ ପଡ଼ିଲାକ ମୋତେ
ତେଣୁ ବୁଦ୍ଧି ନାଶଗଲା ମୋହର ଦେଖନ୍ତେ ।
ପିଣ୍ଡର କାରଣ ତୁହି ଆଦରର ଧନ
ତୋ ବିନା କପରେ ମୁହିଁ ଧରିବି ଜୀବନ ।
କେବଣ ପାତକ ମୁହିଁ କରିଥିଲି ପୂର୍ବେ
ତହିଁପାଇଁ ଏତେ ଶାସ୍ତି ଧାତା ଦେଲା ଏବେ ।
ବାବୁ ଶରଦଚନ୍ଦ୍ରକୁ ଜିଣେ ତୋ ଆନନ
ତ୍ରିଲୋକରେ ନାହିଁ କେହି ତୋ ରୂପେ ସମାନ
କୁଞ୍ଚିତ କେଶ ତୋହର ଚକ୍‌କଣ କାଳିଆ ।
ଓଷ୍ଠ ଦିଶେ ବିମ୍ବଫଳ ପଚିଏ ନାଲିଆ ।
ଶୋଭା ଦିଶୁଥିଲା ତୋର କର୍ଣ୍ଣର କୁଣ୍ଡଳ
ତାହାଦେଖି ହେଉଥିଲା ମୋ ନେତ୍ର ସଫଳ ।
କୁନ୍ଦନ ପଟସ୍ପେ ଦିଶେ ବକ୍ଷସ୍ଥଳ ତୋର
ସିଂହନସିଂହ ସମାନ ଗଣ୍ଡ କଳେବର ।
ମୃଣାଳ୍ପ ବଳ ସୁନ୍ଦର ତୋର ବେନି ବାହା
ଅବ୍ଧୁଲ୍ଲଭ ପୃଷ୍ଠ ତୋତେ ଶୁଝାଇବ ତାହା ।
ଗଜକର କୁମ୍ଭ ପ୍ରାୟ ତୋ କର ପାପୁଲି
ସ୍ମର୍ଣ୍ଣ ପୋଏଳା ପ୍ରାୟେ ତୋହର ଅଙ୍ଗୁଳି ।
ନାଇ ପାଖୁଡ଼ା ପରସ୍ତେ ତୋର ନଖମାନ
ଏବେ ସ୍ୱରୂପ ଦେଖିବା ହୋଇଲା ସ୍ୱପନ ।
ଆକର୍ଷଣ ବୃତ୍ତୀଶିଣ୍ଡି ବପୁଳ ବକ୍ଷସ୍ଥଳ
ଗଜଶୁଣ୍ଡ ପ୍ରାୟ କଟି ଦିଶଇ ସୁତଳ ।
ଗମ୍ଭୀର ନାଭି ସିଂହର ପ୍ରାୟ ମଝାଗୋଟି
ବର୍ତ୍ତୁଳ ପୀଡ଼ ସୁନ୍ଦର ଦିଶେ ତୋର ପିଠି ।
ଖେଳନ୍ତା ସିଂହ ପରସ୍ତେ ଜଗଜନ ମୋହ୍ନ
ତୋତେ ଝୁରୁ ମୋର ତନୁ ରହିବ କି ଆଉ ।
ଉଲଟ ରମ୍ଭା ପରସ୍ତେ ଦିଶେ ବେନି ଜାନୁ
ତୋ ଆପଦ ନୋହିଲାରେ ମୋତେ ଅଭିମନ୍ୟୁ
ତୋ ପାଦତଳପା ରକ୍ତ କୁମୁଦ ସମାନ
ଶୁଣିଲେ ପୃଥ୍ୱୀ ଦିଶଇ ଅତି ଶୋଭାବନ ।
ହସ୍ତେ ପଦ୍ମନିଧି ଥିଲେ ଶୋଭେ ଶୁଦ୍ଧମଣି
ଏବେ ଲକ୍ଷଣକୁ ଧାତା ଏହା କଲା ଆଣି ।

ତଉଦଲକ୍ଷ ଗୁଣେ ତୁ ସୁନ୍ଦର ରେ ସବୁ
ବପ୍ନାର ସାଗର କର୍ମସିଦ୍ଧ ଅଟୁ ବାବୁ ।
ଚୌତିଂଶ ଲକ୍ଷଣ ସଞ୍ଚକଣ ଗୁଣବନ୍ତା
ଷନ୍ଦିବର ଷୋଡ଼ଷରେ ପ୍ରାକମେ ଶକତା
ଉପୁଜିଲୁ ଏତେ ଗୁଣ ସେନ ଆରେ ବାଳ
ଆସିଥିଲୁ ଭାଙ୍ଗିବାକୁ ମୋ ତଣ୍ଡି ତଣ୍ଡାଳ ।
ବାଳକାଳୁ ବହୁଯତ୍ନେ ତୋତେ ପାଳିଥିଲି
ଚୌଦବର୍ଷେ ତୋ ପ୍ରତିଜ୍ଞା ଦେଖି ନ ପାରିଲି ।
କାହିଁ ଫାଲଗୁନ କେଶବାସ ଅସମ୍ଭାଳ
ଗ୍ରୀମକୁ ଗୁହିଁ କହିଲେ ହୋଇଣ ବିକଳ ।
ତୋ ସାରଥିର ପ୍ରତିଜ୍ଞା ଶୁଣେ ମହାସ୍ଥଳେ
ଯମ ଡରେ ତୋର କୋପ ମୁରତ ଦେଖିଲେ
ତ୍ରିଲୋକ ଶକତ ତୁହି ଧଇଲୁ ଗଦାକୁ
କପରେ ଗୁଡ଼ ଅଇଲୁ ତୁହି ବାଳକକୁ ।
ହେ ନକୁଳ କରିଥିଲୁ ତୁହି ଗଳାଗଣ୍ଡି
କେମନ୍ତେ ଗୁଡ଼ ଅଇଲୁ ସେହି ପୃଷ୍ଠଗୋଟି ।
ସହଦେବ ତୁ ତ ଭୂତ ଭବିଷ୍ୟତ ଜାଣୁ
ଅଭିମନ୍ୟୁ ମୃତ୍ୟୁକିପାଁ ଆଗୁ ନ ବଖାଣୁ ।
କୃଷ୍ଣି କହିଥାନ୍ତୁ ଯେବେ ଆଗୁ ମୋର ଆଗେ
କପାଁ ପଥକୁ ଗୁଡ଼ନ୍ତୁ ଯୁଦ୍ଧକୁ ଅଯୋଗେ ।
କେଉଁ ଦ୍ରୋହ ଅଭିମନ୍ୟୁ କଲା ବାବୁ ତୋତେ
ତାକୁ ଗୁଡ଼ିବାକୁ ସତ ବଳିଲା କେମନ୍ତେ ।
କାହାକୁ ଉକତ ଅଛା ନୋହେ ମୋ ଦୁଲାଳ
କପରେ ସତ ବଳିଲା ତାହାକୁ ଗୁଡ଼ିଲ ।
ପୁଣ ଜୀବାକ୍ଷି କୁହିଁଣ ଯୁଧିଷ୍ଠିରଙ୍କ ମୁଖ
ଉପ୍ରନେ ପଡ଼ିଲା ପାର୍ଥ ଧର୍ମଙ୍କର ପାଖ ।
କୋଳ କରିଣ ଧଇଲେ ତାକୁ ଯୁଧିଷ୍ଠିର
ସାସ୍ତ୍ନାମେ ପୁଚ୍ଛନ୍ତେ ସୂତକୁ ଅରଜୁନ ବୀର ।
କହରେ ସାରଥି ମୋତେ ତୁ ସତ୍ୟବଚନ
କପରେ ଜିଣିଲା ସୈନ୍ୟ ମୋହର ନନ୍ଦନ ।
ତୁ ଯେ ବାହୁଥିଲୁ ରଥ ମୋର ପୁତ୍ର ତୁଲେ
ସତ୍ୟକରି କହ କିଏ କେମନ୍ତେ ମାଇଲେ ।
ସାରଥି କହିଲା ଶୁଣ ଯା କହୁଛି ସତ୍ୟ
ଅଗୋଚର କଥା ସେହି କହି ନୁହଇତ ।
ଥିଲେ ଦ୍ରୋଣି ଜୟଦ୍ରଥ ଆଉ କୃପ କର୍ଣ୍ଣ
ଏକ ଏକ ଶରେ ହତକଲେ ତାଙ୍କ ସୈନ୍ୟ ।

ତ୍ରୈଲୋକ୍ୟ ଦୁର୍ଲ୍ଲଭ କୃଷ୍ଣ ପୁତ୍ର ଷଣ୍ଢୀପଣ
ଦେଖି ପ୍ରଶଂସା କରିଲେ ଶଚୀର ରମଣ ।
ଲକ୍ଷଲକ୍ଷ ଯୋଦ୍ଧା ଯହୁଁ ନୋହିଲେକ ସରି
ବହୁ ସୈନ୍ୟ ଘେନି ଆସି କୁରୁଦଣ୍ଡଧାରୀ ।
ଘୋରଯୁଦ୍ଧ ଆରମ୍ଭ ତ କଲେ ତହିଁ ପୁଣି
ସେ ଯୋଧେ କାଟିଲେ ଅଭିମନ୍ୟୁ ଧନକ୍ଷୋଣି
ଶୂନ୍ୟହସ୍ତ ହୋଇ ପୁଣ ମଲ୍ଲଯୁଦ୍ଧ କରି
ଶତସହସ୍ର ଯୋଦ୍ଧାଙ୍କୁ ସେ ପକାଇଲା ମାରି ।
ଅଧର୍ମ ଯୁଦ୍ଧ କଲେକ ସେହୁ ଯୋଧମାନେ
ତେବେ ଅଭିମନ୍ୟୁ ବହୁ ସୈନ୍ୟ ପ୍ରାଣ ନେଲେ
ବିଷାଦ କରି ଭଣିଲା ତହୁଁ କୁରୁରାୟ
ବହୁ ସୈନ୍ୟ ନାଶକଲା ହୋଇ ବାଳପୁଅ ।
ପୃଥ୍ୱୀହିଁ ଅନେକ ରାଜା ଆସିଣ ବେଢ଼ିଲେ
ତାହାର ଖଡ୍ଗଫଳା କାଟି ପକାଇଲେ ।
ଖଡ୍ଗଫଳା ଯାଆନ୍ତେ ପୁଣ ମୁଥଘାତେ
ଦଶସହସ୍ର ରାଜାଙ୍କୁ ମାଇଲେ ଯୁକତେ ।
ମୂର୍ଚ୍ଛି ରଥ ଘେନି ତାଙ୍କ ପଛଭାଗେ ଥିଲା
ସମର କରି ବହୁତ ସୈନ୍ୟଙ୍କୁ ମାଇଲା ।
ବିକ୍ରମସିଂହ ସମାନ କରି ସାଦଘାତ
କ୍ଷଣକେ ନପାତ କଲା ଛନସହସ୍ର ରଥୀ ।
ଅଶୀସହସ୍ର କୁଞ୍ଜରର ଏକାବେଳେ ଉଠି
ଯାକଡେ଼ ପ୍ରହାର କଲେ ତାକୁ ଶର ଯଠି ।
ସେ ଆଘାତେ ଅସ୍ଥିମାଂସ ତାର ହେଲା ଧୂଳି
ଛତ୍ରବର୍ଣ୍ଣ ନ ରହିଲା ନୋହିଲାକ କଳି ।
ସଙ୍କେପି ସାରଥି ଯହୁଁ କହିଲା ବୁଝାଇ
ତଳେ ପଡ଼ି ମୋହ ଗଲେ ତହିଁ କୃଷ୍ଣଭାଇ ।
ଚେତାପାଇ ପାର୍ଥ ପୁଣି ବହୁତ କାନ୍ଦିଲେ
ପୁତ୍ର କି ତୋ ମୁଖ ଆଉ ଦେଖିବି ବୋଇଲେ
କାହିଁ ମରଣ କାଳୁରେ ନୋହିଲାକ ମୋତେ
ଶୋକଜଳେ ବୁଡ଼ାଇ ତୁ ଗଲୁ ନିଷ୍ଠୁରେ ।
ନା ଆଗେ କହିବ ମୋର ମନର ସନ୍ତାପ
ଷୋଡ଼ଶ ସୁନ୍ଦର କୃଷ୍ଣ ପରଶ ସ୍ୱରୂପ ।
ସମର ଉଦ୍ଧାରେ ତୁ ସୈନ୍ୟ ଆବୋରିଣ
ଏକାକେ ସମର କଲୁ ଧନ୍ୟ ବୀରପଣ ।
ସାରଦର ସୁନ୍ଦରରେ ମୋହର ନନ୍ଦନ
ବୀରପଣେ ମୋ ଥାଟକୁ ଥିଲୁ ଆବୋରିଣ ।

ମହାବଳବନ୍ତ ବୁଦ୍ଧି ସମରେ ବିଜୟୀ
ପୃଥିବୀରେ ତୋ ସମାନ ନ ଥିଲାଟି କେହି ।
କତ୍ରକତ୍ର ବୋଧଭର ହୋଇ ସରମଣି
କେ ମାଇଲା ମୋ ପୁତ୍ରକୁ କହ ଏବେକ୍ଷଣି ।
ଯଦ୍ୟପି ଇନ୍ଦ୍ର କୁବେର ହରି ଆଉ ଧାତା
ପ୍ରଭାତ ନୋହୁ ନାଶିବ ଭଣି କେ ଶକତା ।
ଭୀମସେନ କୋଳକରି ତାଙ୍କୁ ଧରିଥିଲା
କହେ ଜୟଦ୍ରଥ ହେତୁ ତୋର ପୁତ୍ରମଲା ।
ସେ ଯେବେ ଆମ୍ଭଙ୍କୁ ରଣେ ନ ଥାନ୍ତା ଓଗାଳି
କି ଲୋକରେ କେ ଯୁକତି ଥିଲା ଆସ୍ଥାଭଳି ।
ଏକା ଜୟଦ୍ରଥ ଯୋଗୁ ତୋର ପୁତ୍ରମଲା
ସେହି ସେ ପାଣ୍ଡବ କୁଳ ଶିରୀ ନାଶକଲା ।
ଭୀମସେନ ବାକ୍ୟେ ଅସାଷ୍ଟମ ଫାଲଗୁନ
ବୋଲେ ହୃଦୁ ପ୍ରାଣକୁ ମୋ କେତ୍ର ଗଲା ଘେନି
ହରି ବୋଇଲେ ଏସନ୍ତି କର । ପାର୍ଥ ହେଉ
ଜ୍ଞାନୀ ହୋଇ ନ ଜାଣିବା ଲୋକପର କଥ ।
ଅନେକ ପୁଣ୍ୟ ଯେ କରେ ସ୍ୱର୍ଗକୁ ସେ ଯାଇ
ପୁଣ୍ୟକ୍ଷୟ ହେଲେ ପୁଣ ସେଠାରୁ ଖସଇ ।
ସେ ଲଭନ୍ତି ସେ ସ୍ଥାନକୁ କାହିଁ ଏହା କଥ
ଧାର୍ମିକ ଜ୍ଞାନୀ ବିବେକ ସେହୁ ମହାବାହୁ ।
ମାତାପିତା ପିତାମାର୍ଯ୍ୟେ ସଙ୍ଗମ ଯେ କାଳେ
ଜୀବ ଘେନି ବ୍ରହ୍ମା ମହିଁ ଗର୍ଭର ଭିତରେ ।
ଅନେକ କଷ୍ଟ ପାଇଣ ଗର୍ଭେ ଧରେ ମାତ
ନବମେ ଦଶମେ ଏକାଦଶେ ପୁତ୍ର ଜାତ ।
ଶୁଭବେଳେ ସାର୍ଯ୍ୟ ଯେବେ ଦେଇଥାଏ ପିତ
ନ ଛୁହେଁ ଅକାଳେ ତାକୁ ଶମନ ଦେବତା
ଅଶୁଭ ବେଳରେ ଯେବେ ସାର୍ଯ୍ୟ ପଡ଼ିଥା
ସେ ପୁତ୍ର ଅଯୋଗ୍ୟ ହୋଇ ଅଳ୍ପ ଯୁ ହୁଅ
ପୂର୍ଣ୍ଣିମୀ ପଞ୍ଚମୀ ଦଶମୀ ଏ ତିନତିଥି
ଏଥି ସାର୍ଯ୍ୟଦେଲେ ପୁତ୍ର କେବେ ନ ବଞ୍ଚ
ପ୍ରତିପଦା ଚତୁର୍ଦ୍ଦଶୀ ଏକାଦଶୀ ଦିନ
ଏଥି ସାର୍ଯ୍ୟଦେଲେ ରୋଗୀ ହୁଅଇ ନନ୍ଦନ ।
ମଙ୍ଗଳରେ ନ ମାନଇ ଏହା ହେ ପୁରୁଷ
ମଙ୍ଗଳରେ ନାଶଯାଏ ପୁତ୍ର ହୁଏ ଅଳ୍ପାୟୁଷ
ଦ୍ୱିତୀୟା ଦ୍ୱାଦଶୀ ତ୍ରୟୋଦଶୀ ତିନଦିନ
ଏଥି ସାର୍ଯ୍ୟଦେଲେ ପୁତ୍ର ହୁଏ କର୍ମହୀନ ।

ସଙ୍କରାନ୍ତି ଅମାବାସ୍ୟା ଗ୍ରହଣ ଏ ତିନ
ଖଣ୍ଡିଆ କୁବୁଜା ଖଞ୍ଜି ହୁଅନ୍ତି ଜନମି ।
ଆପଣା କଥା ନ ଜାଣି ପରେ ଦେଉ ଦୋଷ
ତୋ କପାଳେ ଏହା ଥିଲା ଭ୍ରାତେ କରୁ ରୋଷ
ଏ ମର୍ତ୍ତ୍ୟ ମଣ୍ଡଳେ ଯେତେ ଜନମ ହୁଅଇ
କାଳବଳେ ମୃତ୍ୟୁ ତାକୁ ଅବଶ୍ୟ ଘଟଇ ।
ପାପପୁଣ୍ୟ ଯୋଗେ ମରେ କେତେ ଆଗ ପଛ
ଏଥକୁ ସନ୍ତାପ କପାଁ କରନ୍ତୁ ବତ୍ସ ।
ଏଥି ଜନମ ହୋଇଲେ ଛଇ ନୋହେ କାୟ
ମୂର୍ଖ ଏହା ମଣଇ ଯେ ପଥିକର ପ୍ରାୟ ।
ଅଇଲକ ଅବଧୂତେ ଗଲା ଅବଧୂତେ
ସ୍ନେହ ଲଗାଇଲା କେତେ ଧନର ନିମନ୍ତେ ।
ପାଣିରେ ଫୋଟକା ସମ ଅଟେ ଏ ଶରୀର
ନ ଜାଣିଣ ସର୍ବେ କହୁଥାନ୍ତି ମୋର ମୋର ।
ପଥିକ ଯେପରି ତରୁମୂଳେ ବିଶ୍ରାମନ୍ତି
ତାହାର କେ ନୁହେ ଯେଝା କାର୍ଯ୍ୟରେ ଗମନ୍ତି
କେ ଅଟେ କାହା କୁମର କେ କାହା ପିଅର
ଏହି ସଂସାର ଅଟଇ ମାୟାର ଭଣ୍ଡାର ।
ଚୂତବୃକ୍ଷେ ଫଳ ଫଳେ ତାହା ସଂଖ୍ୟା ନାହିଁ
କେତେକ ବୃକ୍ଷରେ ଥାଇ କେତେକ ଝଡ଼ଇ ।
ଯେ ଝଡ଼େ ତାହା ସଙ୍ଗେ କି ଯାଏ ତରୁବର
ସେହି ପରକାରେ ପାର୍ଥ ସଂସାର ବେଭାର ।
ତନ୍ତୀ ତନ୍ତେ ମୃତ୍ତିକାର ଭାଣ୍ଡ ଗଢ଼ୁଥାଏ
କେତେ ଭାଣ୍ଡ ତଳେ ପଡ଼ି ଭାଙ୍ଗିଣ ଯେ ଯାଏ
କେତେକ ଭାଣ୍ଡ ପୋଡ଼ିବା ବେଳରେ ଭାଙ୍ଗଇ
ଭାଙ୍ଗି ଯିବା ଭାଣ୍ଡ ସଙ୍ଗେ କୁମ୍ଭାର କି ଯାଇ ।
ହାଟେ ବଣିକ ପସରା ଘେନି ବସିଥାନ୍ତି
ଆଇ ପ୍ରାଣ୍ୟେ ସର୍ବେ ବିକାକଣା କରୁଥାନ୍ତି ।
ଯାର ଦ୍ରବ୍ୟ ଶେଷ ହୁଏ ସେହି ଚାଲିଯାଏ
ଯାହାର ସରି ନ ଥାଏ ସେହି ରହିଥାଏ ।
ହେ ଅର୍ଜୁନ ତା ବେପାର ହୋଇଲାକ ଶେଷ
ତେଣୁ ଚାଲିଗଲା ତୁମ୍ଭେ କପାଁ କରୁ ରୋଷ ।
ବୃଷ୍ଟିକାଳେ ନଦୀ ପୂରି ଜଳ ଯେ ବହଇ
ଜଳେ ପଡ଼ି କାଠମାନ ଭସାଇ ନିଅଇ ।
ଦୁଇଖଣ୍ଡ ଯୋଡ଼ି ହୋଇ ଯାଉଥାଏ ଭାସି
ଖଣ୍ଡକୁ ଲତା ଯେବେଟି ଧରଇ ଆକର୍ଷି ।

ସେ ଖଣ୍ଡକ ତହିଁ ରହେ ଆରଖଣ୍ଡ ଯାଏ
ଏହିପରି ସବୁ କଥା ଶୁଣ ଧନଞ୍ଜୟେ ।
ଆମ୍ଭେ ଆସିଅଛୁ ଏକା ଯିବୁ ଏକା ହୋଇ
ମିଛେ ମିଛେ ତୁ ରୋଦନ କରୁ କାହିଁପାଇଁ ।
ଲୋଭ ମୋହ ଅହଙ୍କାର ହିଂସା ଅପବାଦେ
ସଂସାର ସାଗରେ ପଡ଼ି ଭାସୁଥାଏ ଜୀବେ ।
ହିଂସା ଅହଙ୍କାରେ ମାତି କୁବିଦ୍ୟା କରଇ
ସେ ହେତୁରୁ ନାନା ପାପେ ଆୟୁ କ୍ଷୀଣହୋଇ
ଆପଣା ଦୋଷେ ମରନ୍ତି ନ ଜାଣନ୍ତି ଆନ
ଚିନ୍ତା କରିବା ତହିଁରେ ନାହିଁ ପ୍ରୟୋଜନ ।
ଅର୍ଜୁନ ବୋଇଲେ ହରି ଅଭିମନ୍ୟୁ ମୋର
ନିର୍ଦ୍ଦୋଷେ ଲକ୍ଷଣବନ୍ତ ଆବର ସୁନ୍ଦର ।
ଭାଗ୍ୟବନ୍ତ ବିଦ୍ୟାବନ୍ତ ପରଦୁଃଖେ ଦୁଃଖୀ
ଅହିଂସାରେ କାର୍ଯ୍ୟ କରେ ଧର୍ମେ କରି ସାକ୍ଷୀ
ଗୋବିନ୍ଦ ବୋଇଲେ ଏହି ସଂସାର ଅନିତ୍ୟ
ଜନ୍ମ ହୋଇ ନିସ୍ତାରୀ କେ ନର ଅଛି ଏଥ ।
ପାପଆତ୍ମା ରହିଅଛି ସବୁରି ଶରୀରେ
ନିସ୍ତାରୀ ହୋଇଣ କେହି ନାହିଁ ଏ ମହୀରେ ।
ଏହି ସଂସାର ଅଟଇ ପରୀକ୍ଷାର ସ୍ଥଳ
ଧାର୍ମିକ ପ୍ରାଣୀ ବଞ୍ଚଇ ବହୁତର କାଳ ।
ଯମର ଅଧୀନ ଅଟେ ନଶ୍ୱର ଶରୀର
ଏହି କଥା ନ ଜାଣଇ ଯେତେ ମୂର୍ଖ ନର ।
କେ କାହାର ପିତା କେହୁ କାହାର କୁମର
ମନ୍ଦପଣ କରିଣ ସେ ଯାଏ ଯମଘର ।
କେ କାହାର ସୋଦର ଯେ କେ କାହାର ବନ୍ଧୁ
କ୍ଷମା ହୋଇ ପାର୍ଥ କପାଁ ଧର୍ମପଥ ନିନ୍ଦୁ ।
ହଜିଲା ମାଲକୁ ପାର୍ଥ କପାଁ ବାଟ ଚାହୁଁ
ଭସ୍ମ କାହୁଁ ଅଙ୍କୁରିବ କାନ୍ଦିଲେ ତୁ ଆଜ ।
ତୁ କପାଇଁ ମଲା ବୋଲି କାନ୍ଦୁ ଅକାରଣେ
କ୍ଷତ୍ରୀ ପୁଣ କ୍ଷତ୍ରୀପଣେ ପଡ଼ିଲାକ ରଣେ ।
କ୍ଷତ୍ରୀହୋଇ ମରଇ ଯେ କରେ ଶସ୍ତ୍ର ଧରି
ନିଶ୍ଚୟ କରି ଜାଣ ସେ ବସେ ସ୍ୱର୍ଗପୁରୀ ।
ରଣ ଯାଗ କରେ ଯେବେ ବଂଶରୁ ଗୋଟିଏ
ଇହ ପରଲୋକ ତାର ସ୍ୱର୍ଗକୁ ସେ ଯାଏ ।
ଭାଗ୍ୟବନ୍ତ ପୁରୁଷକୁ ଦିଶେ ସ୍ୱର୍ଗବାଟ
ହୀନଜନଙ୍କୁ ଦିଶଇ ସେ ପଥ ଶଙ୍କଟ ।

ସ୍ନେହ ମୋହେ ବନ୍ଧୁଥାନ୍ତି ମୋର ମୋରବୋଲି
କେ ଆଗପଛେ କେ ଅବା ଯିବେ ଆଜକାଲି
ଷଳର କଥାକୁ ମନେ ନ କର ଶୋଚନା
ସଂସାର ସାଗର ଦେଖ ଦଇବ ରଚନା ।
ବୋଲଇ ଅର୍ଜୁନ ଶୁଣ ଦେବ ଦଇତ୍ୟାରି
ମୋ ପୁତ୍ରକୁ ମରାଇଲେ ମୋର ଭାଇ ସବୁ ।
ପୁତ୍ରକୁ ସଙ୍ଗରେ ନେଲେ ଚକ୍ରବ୍ୟୂହ ଯୁଦ୍ଧେ
କର୍ଣ୍ଣ ଦ୍ରୋଣ ଅପସରି ଗଲେ ରଣମଧ୍ୟେ ।
ଯାର ଶ୍ୟାମମୂର୍ତ୍ତି ଦେଖି ଯମ କରେ ଶଙ୍କା
ତାକୁ ଓଗାଳିଲା ଦୁଷ୍ଟ ଜୟଦ୍ରଥ ଏକା ।
ହେଳାକରି ମରାଇଲେ ମୋର ପୁତ୍ରଗୋଟି
ସବୁଙ୍କ ଶିର କମଳ ପକାଇବି କାଟି ।
ଶୁଣି ହରି ବସ୍ତରନ୍ତି ପାର୍ଥ ଆଜ କ୍ରୋଧେ
ନ ପୁଣ ଭାଇମାନଙ୍କୁ ନାଶେ ବୃଥାଯୁଦ୍ଧେ ।
ଯ୍ୟା ଭଲ ବୋଇଲେ ହରି କାରି ନାହିଁ ଦୋଷ
ସ୍ୱର୍ଗେ ଜୁର କଲା ଭଦେକବନ୍ଧ ରାକ୍ଷସ ।
ତାର ଭୟେ ଦେବତାଏ ରହି ନ ପାରିଲେ
ସ୍ୱର୍ଗପୁର ଛାଡ଼ିକରି ପଳାଇଣ ଗଲେ ।
ଅନେକ ସମର କଲେ ମରୁତା ବରୁଣ
କୁବେର ଯେ ମହେଶ୍ୱର ଆବର ପବନ ।
ଏମାନେ ଯୁଦ୍ଧେ ହାରିଣ ପଳାଇଣ ଗଲେ
ବ୍ରହ୍ମା ଇନ୍ଦ୍ରଙ୍କ ପାଶରେ ସକଳ କହିଲେ ।
ଶୁଣି ବୋଇଲେ ଅଣାଅ ପାର୍ଥର କୁମର
ତାହା ହସ୍ତରେ ମରିବ ଅସୁର ପାମର ।
ପିତାମହଙ୍କ ବଚନ ଶୁଣି ସୁରପତି
ପୁଷ୍ପକେ ବସାଇ ନେଲେ ତୋହର ସନ୍ତତି ।
ବସ୍ତ୍ର ରତ୍ନ ଅଳଙ୍କାର ତାକୁ ପିନ୍ଧାଇଲେ
ଏବେ ସେ ଯୁଦ୍ଧ କରଇ କବନ୍ଧର କୁଳେ
ପାର୍ଥ ବୋଲେ ନ ଦେଖିଲେ ନ ଯାଏ ଘରତେ
ବ୍ରହ୍ମ ଅସୁର ନାଶିବ ଦେଖିବ କେମନ୍ତେ ।
ସେ ଅସୁର ନାଶଯିବ ଅଭିମନ୍ୟୁ ହସ୍ତେ
ମୋ ପୁତ୍ରକୁ ଦେଖାଅ ହେ ହରି ଆଜ ମୋତେ
ଶୁଣି କେଶବ ପୁଷ୍ପକ ବିମାନ ଆସେନ୍ତି
ଶୂନ୍ୟ ଭେଦିଗଲେ ପାର୍ଥ ସଙ୍ଗତରେ ନେଇ ।
ଦେଖିଲେ ଆକାଶେ ହୁଏ ରଣ ଗୁରୁତର
ଅଭିମନ୍ୟୁ ସଙ୍ଗେ ରଣ କରେ ସେ ଅସୁର ।

ଅନୁକ୍ଷଣେ ବାଣ ଯେ ବର୍ଷଇ ଅଭିମନ୍ୟୁ
ଦୂରେ ଥାଇଣ ଦେଖନ୍ତି କୃଷ୍ଣ ଇନ୍ଦ୍ରସୂନୁ ।
ଜଟୀ ବଟଛନେ କୃଷ୍ଣାର୍ଜୁନେ ହୋଇ ଲକ୍ଷ
ଦେଖନ୍ତି ଶର ଆଘାତେ କମ୍ପେ ସୁର ଦେବା ।
ଆକାଶେ ହାସ କରନ୍ତି ରବି ଦେବବ୍ରହ୍ମା
ଅଭିମନ୍ୟୁ ବୋଲେ ପାର୍ଥ ଯାଅ ହେ ମହାତ୍ମା
ଅନୁକ୍ଷଣେ ଶରମାନ ହେଉଅଛି ବୃଷ୍ଟି
ପ୍ରାଣେ ନାଶଯିବ ତୁମ୍ଭେ ନର ଦୁଇ ଗୋଷ୍ଠି ।
ହତ ହେବାର ପୁତ୍ରକୁ ଦେଖି ସେହିକ୍ଷଣି
କୋଳରେ ଧରିବା ପାଇଁ ମେଲେ ଫାଲଗୁଣି
କହନ୍ତି ଶ୍ରୀହରି ପାର୍ଥ ନୁହଇ ଏମନ୍ତ
ସେ ତୋତେ ତ ନ ଚିହ୍ନିଲା ତୁ କା ତାରତାତ
ଅର୍ଜୁନ ବୋଇଲେ ହରି କହଇ ତୁମ୍ଭଙ୍କୁ
ବାଳକାଳୁ ପାଳିଥିଲି ମୁହିଁ ଯେ ଏହାକୁ ।
ମୁହିଁ ଯେ ଏହାର ତାତ ଏ ମୋହର ସୁତ
ବନେ ଅନ୍ତର ହେଲାକୁ ନ ଚିହ୍ନେ ଆସୁନ୍ତ ।
ହରି ବୋଇଲେ ବୋଇଲୁ ତୁ ଯେ ମୋର ବାଳ
ମାୟା ମୋହେ ହୋଇଛନ୍ତି ସକଳେ ବାକୁଳ
ପାର୍ଥ ବୋଲେ ଏ ବସ୍ତୁର ଯେବେ ଅଛି ସ୍ୱର୍ଗେ
ଏ କଶାଚର ଭୁବନୁ ଚାଲି ଯିବା ବେଗେ ।
ଶୁଣ ହେ ମନୁ ରାଜନ ମାୟା କୃଷ୍ଣଙ୍କର
ମୋହ ଛାଡ଼ିଲା ପାର୍ଥର ଆସିଲା ସତ୍ତ୍ୱର ।
ହରି ଅର୍ଜୁନଙ୍କୁ ଦେଖି ଦ୍ରୌପଦୀ ଯେ କୁନ୍ତୀ
ଆବର ସୁଭଦ୍ରା ଶୋକେ କାତର ହୁଅନ୍ତି ।
କୁନ୍ତୀ ବୋଇଲେକ ତୁମ୍ଭେ ଶୁଣ ଜନାର୍ଦ୍ଦନ
କରାଇଲ ପାଣ୍ଡବଙ୍କ କୁଳ ନିଶୋଧନ ।
ତୋତେ ଆଶ୍ରା କରି ମୋର ବଞ୍ଚିଛନ୍ତି ପୁତ୍ରେ
ଶେଷେ ବୁଡ଼ିଲେ ସେମାନେ ଶୋକଜଳ ସ୍ରୋତେ
ଅନ୍ଧାଳ ତ ଅଭିମନ୍ୟୁ ସବୁ ପଳାଗଣ୍ଠି
ତୁମ୍ଭେ ତ ଅଇଲ ତାକୁ ଛାଡ଼ିଣ କେଉଁଠି ।
ଆହେ ଜଗନ୍ନାଥ ମନ ମୋହର ପ୍ରତୀକ
ଏଥି ତୋର ଦୋଷ ନାହିଁ ଧାତା ଲଟସୂତ୍ର ।
ବାବୁ ଯେବେ ପଡ଼ିଥାନ୍ତୁ ବନେ ପାଞ୍ଚଜଣ
କନ୍ଦମୂଳ ଖାଇ ସୁଖେ ହରୁଥାନ୍ତୁ ଦିନ ।
ଦୁଷ୍ଟ ଶଖାନ୍ତେ ଯେ କଲେ ରାଜ୍ୟଧନେ ଆଶ
ବଂଶ ବୁଡ଼ାଇ ସେମାନେ ହୋଇଲେ ନିରାଶ ।

ଅନବରତରେ ଧାର ବହେ ବେନି ଆଖି
ଦ୍ରୌପଦୀ ଦେବୀ କାନ୍ଦନ୍ତି ହୋଇଣ ନର୍ମଖୀ ।
ଅଭିମନ୍ୟୁ ଅଭିମନ୍ୟୁ ଉଚ୍ଚସ୍ୱରେ ଡାକି
ଧବଳ ରଥରେ ଯାଉ କି ଯୁଦ୍ଧ ଭୂମିକି ।
ଆସ୍ଥାନେ ବସି ଖେଳୁ ଛୁ କି ଉଦ୍ୟୋଗମାନ
କି ଅବା ଗଜ ଅଶ୍ୱଙ୍କୁ କରୁ ସମ୍ମାର୍ଜ୍ଜନ ।
କି ଅବା ଯମୁନା ଜଳେ କରୁଅଛୁ ସ୍ନାନ
ବେଦ ଜପେ ଭକ୍ତିକରି ଦେଉ ଅବା ଦାନ ।
କି ଅବା ଆସ୍ଥାନେ ବସି ପାଳୁ ଜନପ୍ରଜା
କି ଅବା ଟିକେ ଚନାଏ ଖେଳନ୍ତୁ ସଜା ।
ଏବା ହେଉଅଛୁ ଜନପ୍ରଜା ଦୁଃଖେ ଦୁଃଖୀ
କିପା ଶୋକ କରୁଅଛୁ ପରଦୁଃଖ ଦେଖି ।
ଦୁଃଖୀ ସୋଦର କୁ ଜଗଜ୍ଜନ ହିତକାଂକ୍ଷୀ
ସର୍ବଦା ଶୁଣୁ ତୁ ଦୁଃଖୀଜନଙ୍କ ଗୁହାରି ।
ଶସ୍ତ୍ରହୀନ ଯୋଦ୍ଧାକୁ ତୁ ନ କରୁ ନିଧନ
ଆମ୍ବାର୍ତ୍ତ ଅଧିକେ ରଖୁ ଯେ ପଶେ ଶରଣ ।
ଲକ୍ଷ ଲକ୍ଷ ଯୋଦ୍ଧା ମଧ୍ୟେ ପଡ଼େ ତୋର ନାମ
ପୃଥ୍ୱୀରେ କରନ୍ତି ତୋତେ ସର୍ବେ ଧନ୍ୟ ଧନ୍ୟ
ସବୁରୂପେ ଥିଲୁ ମୋର କୁଳକୁ ଭୂଷଣ
ତୋ ବିନା କିପରି ମୋର ରହିବରେ ପ୍ରାଣ ।
କୃଷ୍ଣଙ୍କ ମୁଖକୁ ଚାହିଁ କାନ୍ଦଇ ପାଞ୍ଚାଳୀ
ଅଭିମନ୍ୟୁକୁ କାହାକୁ ଦେଲ ବନମାଳୀ ।
ସଂସାରେ ବୋଲନ୍ତି ତାକୁ କୃଷ୍ଣଙ୍କ ଭଣଜା
ଯଦୁ ଭୋଜ ବୃଷ୍ଣି ବଂଶକୁ ଏ ହେଲା ଲଜ୍ଜା ।
ଉଚ୍ଚସ୍ୱରେ କାନ୍ଦକରି କହେ ଯାଜ୍ଞସେନୀ
ଧନ୍ୟରେ କୌରବ ତୁମ୍ଭେ ଅଟ ବୀରମଣି ।
ଅର୍ଜ୍ଜୁନ ଯା ପିତା ମାମୁଁ ହରି ବଳରାମେ
ତାକୁ ମାରିବାକୁ ଶକ୍ୟ ହୋଇଲେ ସଂଗ୍ରାମେ
ଦ୍ରୌପଦୀ ରୋଦନ କଥା କହିଲେ ନ ସରେ
ଶୁଣି ବସୁଦେବ ସୁତା ପଡ଼ିଲେ ମୋହରେ ।
ଅଜ୍ଞାନ ହୋଇ ପଡ଼ିଲା ଯହୁଁ ସେ ଭୂମିରେ
କୁନ୍ତୀ ଦ୍ରୌପଦୀ ଧଇଲେ ତାହାକୁ କୋଳରେ
ଥର ଥର କଳେବର ନ ସ୍ଫୁରେ ବଚନ
କେଶ ବାସ ଅସମ୍ଭାଳ ନ ଫିଟେ ନୟନ ।
ମୁଖେ ଜଳ ସିଞ୍ଚି ପଙ୍ଖା ଖେନଣ ଝପନ୍ତି
କ୍ଷଣକେ ଚେତନା ପାଇ ଉଠିଲା ସୁବକ୍ଷା ।

ବାତୁଳୀ ପ୍ରାୟ ହୋଇଣ ଦଶଣ୍ଡିର ଝିଡ
କାହିଁ ବସିଛୁ ରେ ମୋର ମଦନ ନୃପତି ।
ମୁହିଁ ତୋତେ ଧରିଥିଲି ଗର୍ଭେ ଦଶମାସ
ବାଳଭାବ ଛାଡ଼ି ହେଲା ତୋ ଷୋଳ ବୟସ ।
ଅକଳଙ୍କ ଚନ୍ଦ୍ର ପ୍ରାୟେ ତୋର ମୁଖଗୋଟି
ମନ୍ମଥ ଦେଖିଲେ ତୋତେ ସ୍ୱଦାନ୍ତ ଲେଉଟି ।
ଅଚମ୍ଭିତ ଯେ ଦେଖଇ ତୋ ରୂପ ମାଧୁରୀ
ସେହି ମଧ୍ୟ ବୃଦ୍ଧୁଁ ଥାଏ ନେତ୍ରେ ଫେରି ଫେରି
ସବୁକ ଫଳଦାୟକ ସଜ୍ଜନ ବାନ୍ଧବ
ଯୋଗୀଜନ ପୂଜାକରୁ ବହି ନମ୍ର ଭାବ ।
ବଡ଼ଆଶ କରୁଥିଲେ ପାର୍ଥକୁ ଦେବାକୁ
ସାନଭାଇ ବଡ଼ ଦେଲେ ବଂଶ ରଖିବାକୁ ।
ସୋମବଂଶ ରଖିବାକୁ ତୁହି ଥିଲୁ ମୂଳ
ତୁହି ଉଦେ କରିଥାନ୍ତୁ ସୋମବଂଶ କୁଳ ।
ଏହା ବିଚାରି ପାଣ୍ଡବେ ମୋତେ ଦେଲେ ଭାର
ସର୍ବେ ଏକଠେ ଥଇଲ ଅଭିମନ୍ୟୁ କାହିଁ ।
କିବା ଅର୍ଜ୍ଜୁନ କୃଷ୍ଣଙ୍କୁ ସମରେ ଜିଣିଲା
ସେ ସବୁରୁ ବଡ଼ ମୋର ଅଭିମନ୍ୟୁ ମଲା ।
ତ୍ରିଭୁବନରେ ଅତୁଳ୍ୟ ମୋର ପୁତ୍ରଗୋଟି
ଦୁଃଖୀର ସଙ୍ଗାତ ମୋର ଗଳାହାର ଗଣ୍ଠି ।
ଅଭିମନ୍ୟୁ ମାତା ବୋଲି ସର୍ବେ ମୋତେ ଡାକି
ହେ ଭାଇ ଦଇବ ଯୋଗେ ହୋଇଲି ନସଶୀ ।
ମୋତେ ମରଣ କପାଇଁ ନୋହିଲା ତା ଆଗେ
କିପରି ପ୍ରାଣ ଧରିବ ତାହାର ବିୟୋଗେ ।
ଏହା କହି କୋଳେ ବସୁଦେବର ଦୁଲଣୀ
କେଶ ବାସ ଅସମ୍ଭାଳ ଲୋଟଇ ଧରଣୀ ।
କପଟରେ ଜଳଧର ବ୍ୟୂହ ଗୋଟି ରଚି
ମୋ ପୁତ୍ରକୁ ମାରଇଲ ଏବା ସେ ଶ୍ରୀବତ୍ସି ।
ଏହା ଆଗରେ ମରିବ ମୁହିଁ ଉଷ୍ଣି କାଟି
ଯେଣୁ ମାରିଲା ମୋର ବାଳପୁତ୍ର ଗୋଟି ।
ଆହାରେ ନନ୍ଦନ ତୁହି କୁଳଶ୍ରେଷ୍ଠ ସାର
କେମନ୍ତେ ସମରେ ତୁହି ହେଲୁ ଅପହାର ।
ବସ୍ତୁ ସମାନ ଅଟଇ ତୋ ଦେହର ତେଜ
ବନମସିଂହ ସମାନେ ତୋହର ପଙ୍କଜ ।
ଯଦୁବଂଶ ମଧ୍ୟେ ତୁହି ଥିଲୁ ରେ ସୁନ୍ଦର
କିପରି ଦେହ ଧରିବ ବାପରେ ତୋହର ।

ମେରୁ ସ୍ଖଳିବାକୁ କେହୁ ହେଲା ସାମରଥ
ଇନ୍ଦ୍ରମାନଙ୍କୁ ପକାଇ କେ ପାତିଲା ମାଥ ।
ବ୍ରହ୍ମାଙ୍କୁ ଜିଣିବାକୁ କେ ସମର୍ଥ ହୋଇଲା
କେ ସମର୍ଥ ହେଲା ମୋର ପୁତ୍ରକୁ ମାଇଲା ।
ଆଦିତ୍ୟଙ୍କୁ ଜଗାଇଲା ଉଦୟ ପଶ୍ଚିମେ
କେ ସମର୍ଥ ହେଲା କାଳକୂଟର ଭକ୍ଷଣେ ।
ଅମରାସନେ ବସି କେ ହେଲା ସାମରଥା
କ୍ଷୀରୋଦ ମନ୍ଥିବାକୁ କେ ହୋଇଲା ଶକତା ।
କିଏ ସେ ପୁତ୍ରକୁ ମୋର ଜିଣିଲାକ ରଣେ
ଏକପାଦେ ମାପିଲା କେ ପୃଥ୍ୱୀକୁ ପ୍ରସ୍ଥାଣେ ।
ଏତେବଡ଼ ବଳ କିଏ ଜନ୍ମିଛି ସଂସାରେ
ରଣକର ମୋ ପୁତ୍ରକୁ ମାଇଲା ପ୍ରାଣରେ ।
ତୋପରି ନ ଥିଲା ମଲ୍ଲ ପୃଥିବୀ ଭିତର
ରିପୁ ଚଣ୍ଡୀପାରୁ ହସ୍ତେ ଥିଲେ ଧନୁଶର ।
ସର୍ବଗୁଣେ ସୁନ୍ଦର ତୁ ଅଟୁ ଗୁଣନିଧି
ବୃହସ୍ପତି ସମ ବିଦ୍ୟା ଧାର୍ମିକ ସୁବୁଦ୍ଧି ।
ପଶୁରାମଠାରୁ ବଡ଼ ଗାରିମା ତୋହର
ସମୁଦ୍ର ପରି ଅଟଇ ତୋ ହୃଦ ଗମ୍ଭୀର ।
ଚନ୍ଦନ କର୍ପୂରକୁ କି ସରି ଗନ୍ଧରାଜ
ବାଳଅର୍କ ପ୍ରାୟ ତୋର ବିରାଜଇ ତେଜ ।
ନାନା ପୁଷ୍ପରେ ଭୂଷିତ ହୁଏ ତୋର ଅଙ୍ଗ
ଏବେ ରକତରେ ବସୁଥିବୁ ତୁ ସୁରଙ୍ଗ ।
ହଂସତୂଳି ତୂଳୀ ଉପରେ ପୁଷ୍ପର ସୁପାତି
ତହିଁରେ ତୋତେ ଯେ ନିଦ୍ରା ନ ମାଡ଼ଇ ରାତି
ସହସ୍ରେକ ପରିବାର ସେବୁଥାନ୍ତି ତୋତେ
ଏବେ ଭୂମିଶଯ୍ୟାରେ ତୁ ଶୋଇଲୁ କେମନ୍ତେ
ଆଲଟ ଚାମର ଧରି ଖଟୁଥାନ୍ତି ବାଳୀ
ଏବେ ଖଟୁଥିବେ ତୋତେ ଶାଗୁଣା ଶୃଗାଳ ।
କୌତୁକ ହୀନ୍ତା କରିବୁ ରେ କୁମରମଣି
ଭୂତ ପ୍ରେତଙ୍କ ସଙ୍ଗରେ ଆଜର ରଜନୀ ।
ବହୁତ ଶୋକ ସନ୍ତାପ ଗଲୁ ମୋତେ ଦେଇ
ଶ୍ମଶାନେ ଶୋଇଲୁ ବାଳା ତୁ ନିଶ୍ଚିନ୍ତ ହୋଇ ।
କଲ୍ଲି ଜ ଆତ୍ମା ମୋହର ଯାଉ କିନା ଜଳ
ତାହାକୁ ବହିଁକ ପୁତ୍ର ମୁହିଁ ମୁଖତୋଳ ।
ସେ ଦୈବପୁରୁଷ କୁହ ଅଟୁ ବଡ଼ ନଷ୍ଟ
ପ୍ରାଣ ନ ନେଇ କପାଇଁ ଦେଲୁ ପୁତ୍ର କଷ୍ଟ ।

ଅଭିମନ୍ୟୁ ଅଭିମନ୍ୟୁ ଡାକ ଉଚ୍ଚସ୍ୱରେ
ଚେତନା ହରାଇ ପଡ଼ିଲା ସେକ୍ଷଣି ଭୂମିରେ ।
କ୍ଷଣକେ ଚେତନା ପାଇ ଉଠିଣ ବସିଲା
ପୁତ୍ର ପୁତ୍ର କହି ଉଚ୍ଚସ୍ୱରରେ କାନ୍ଦିଲା ।
ପୂର୍ବେ କାହେ ଆଶାଦେଇ କଲଇଁ ନିରାଶ
ତେଣୁକରି ନ ପାଇଲି ପୁତ୍ର ତୋର ଆଶ ।
କେହୁ ମାଗନ୍ତେ ତାହାକୁ ନାସ୍ତି କରିଥିଲି
ତାହା ପୃଷ୍ଠଘରେ ମୁହିଁ ଯୁଇ ଲଗାଇଲି ।
କେବଣ ଗୁରୁଜନର ପଡ଼ିଲାକ ଶାପ
ତେଣୁକରି ଛାଡ଼ିଗଲୁ ମୋତେ ଆରେ ବାପ ।
ଗଇଣ ଦୁହୁରି ଦେଇ ସେବୁଥିଲି ହରି
କପାଇଁ ଖୋଳନ୍ତରେ ମଲା ମୋ କୁମର ।
ନାଟ ଖେଳୁଅଛୁ ପୁତ୍ର ବସି କେଉଁଠାରେ
ନ ବସୁ କପାଇଁ ଆସି ମୋହର କୋଳରେ ।
ଜାଖରେ ବସାଇ ତୋତେ ବୁଲେ କିନା ବାଣ୍ଡ
ପୂରୁ ମୋର ମନୋବାଞ୍ଛା ଅଣ୍ଡା ହେଉ ପିଣ୍ଡ ।
ବଂଶ ବୁଡ଼ିଲା ମୋହର ତୋହର ଅଭାବେ
ପରାଣ ଧରି ରହିବେ କେମନ୍ତେ ପାଣ୍ଡବେ ।
ସେବକନ୍ତେ ସୁଭଦ୍ରା ବିରା ଦିଶିଲା ଅନ୍ଧାର
ଆଉ ତୋ ସମ ପୁତ୍ର କି ଧରିବ ଗର୍ଭର ।
କାନ୍ଦଇ ଉତ୍ତରା ଘଟେ ମାରି ବେକକର
ବଜ୍ରଘାତ ହେଲା ପ୍ରାୟ ପଡ଼ିଲା ମଥାର ।
ପୁଣ ଉଠି ବରେ କରି ମାରଣ କାନ୍ଦିଲା
ଆହା ପ୍ରାଣନାଥ କହି ଭୂମିରେ ପଡ଼ିଲା ।
ମୂଳ କଟିଗଲେ ବୃକ୍ଷ ଯେପରି ପଡ଼ଇ
ତେହ୍ନେ ଉତ୍ତରା ପଡ଼ିଲା ଭଦ୍ରାମୁଖୀ ସ୍ୱହିଁ ।
କୋଳକରିଣ ଅନେକ ଯୁବତୀ ତୋଳିଲେ
ମୁଖରେ ପାଣି ସିଞ୍ଚିଣ ସଚେତ କରିଲେ ।
ଚେତି ଉତ୍ତରା କାନ୍ଦଇ ଶିରେ ମାରି କର
କାହିଁ ଛାଡ଼ିଗଲ ମୋତେ ହେ ପ୍ରାଣ ଈଶ୍ୱର ।
ହେ ସ୍ୱାମୀ ଗୁଣସାଗର କ୍ଷଣେହିଁ ନ ଛାଡ଼ୁ
ଜଳୁଛି ମୋହର ଆତ୍ମା କର୍ମ ମୋର ପୋଡ଼ୁ ।
ମୋଠାରୁ ପାପିନୀ ଆଉ ନ ଥିବ କେ ନାରୀ
ଏ ବୟସେ ବିଧବା ମୁଁ ହେଲି ହତଶିରୀ ।
ବାଳଭବ ଛାଡ଼ି ନାଥ ହେଲ ନବଯୁବା
ମୋତେ ଏକାକରି ନାଥ କେଉଁଣେ ଗଲ ଅବା

ଏପରି କହି ସନ୍ତାପ ଉତ୍ତରା କରଇ
ଏ ଯୁବାବୟସେ ମୋତେ ଛାଡ଼ିଗଲ କାହିଁ ।
ପ୍ରାଣହୁଁ ଅଧିକ ନାଥ କରିଥିଲ ମୋତେ
କେମନ୍ତେ ମନୁ ମୂର୍ଚ୍ଛିବ କୃଷ୍ଣ ଗୁଣ ଯେତେ ।
କେଉଁଦିନେ ସ୍ୱପ୍ନେ ସ୍ୱନ ହେବା ଅନ୍ତଃପୁରେ
ଭୂମିରେ ନ ବସାଉଣ ଧରି ହୃଦଗତେ ।
ହାସ ପରିହାସ କ୍ରୀଡ଼ା କଉତୁକରଙ୍ଗେ
ରଜନୀ ନ ଜାଣେ ନାଥ ଥିଲେ ତୁମ୍ଭ ସଙ୍ଗେ ।
ଶରଣ ସୋଦର ନାଥ ଅଟ ଗୁଣନିଧି
ତୁମ୍ଭ ମୁଖକୁ ଜିଣିନ ପୂର୍ଣ୍ଣ କଳାନିଧି ।
ତୁମ୍ଭ ସମ ଧନୁର୍ଦ୍ଧର କେ ଅଛି ଜଗତେ
ଧୃଷ୍ଟ ଦ୍ରୋଣଙ୍କୁ ଜିଣିଲ ଏ ମହାଭାରତେ ।
କାମିନୀ ମଦନମୋହନ ତୁମ୍ଭ ରୂପଜ୍ୟୋତି
କାହିଁ ଲୁଚିଲା ଏବେ ସେ ଲାବଣ୍ୟ ମୂର୍ତ୍ତି ।
ସ୍ୱାମି ନବଦ୍ୱୀପେ ଯୋଦ୍ଧା ଅଛନ୍ତି ଯେତେ
ତୁମ୍ଭେ ଧନୁ ଧରୁ ଭୟ କରନ୍ତି ସମସ୍ତେ ।
ମୁହିଁ ଶୁଣିଅଛି ନାଥ ତୁମ୍ଭର ମହିମା
ସୈନ୍ୟଙ୍କ ସମ୍ମୁଖେ ଜିଣିଅଛ କୃପବର୍ମା ।
ଇନ୍ଦ୍ର କୁବେର ବରୁଣ ଚନ୍ଦ୍ର ସୂର୍ଯ୍ୟ ଆଦି
ଏମାନେ ହାରିବେ ହେଲେ ତୁମ୍ଭର ବିବାଦୀ ।
ଧନୁ ଗଦା ଅସିଫଳ ଥିଲେ ତୁମ୍ଭ ହସ୍ତେ
ଯୁଦ୍ଧେ ରହି ନ ପାରେ କେ ତୁମ୍ଭର ସାକ୍ଷାତେ
କି ଅପରାଧେ ତୁମ୍ଭଙ୍କୁ ସୈନ୍ୟଗଣ ଯମ
ସୁନ୍ଦର ଦେଖି ତୁମ୍ଭଙ୍କୁ ହେଲା ହୋଇ ବାମ ।
କାହାକୁ ମୁଁ ଦୋଷ ଦେବି ପୋଡ଼ ମୋର କର୍ମ
ମୋହର କପାଳେ ଏହା ଲେଖିଥିଲା ଧର୍ମ ।
ଅଳପ ବୟସେ ମୁହିଁ ହୋଇଲଇଁ ରାଣ୍ଡ
ଆଦି ଦେବତାଙ୍କୁ କି ନ ଦେଲି କ୍ଷୀରଖଣ୍ଡ ।
କାହାର ଯଜ୍ଞକୁଣ୍ଡ ମୁଁ ଅନ୍ୟାୟେ ନାଶିଲି
କି ଅବା ପୂଜିତ ଶମ୍ଭୁଲିଙ୍ଗ ଭଗ୍ନକଲି ।
କେଉଁ ଗୁରୁଜନ ମୋତେ ଦେଲେ ଏଡ଼େ ଶାପ
ଜୀବ ଥିବାଯାଏ ଅର୍ଜିଲି ଏ ସନ୍ତାପ ।
ପୁଣ୍ୟକୁଳେ ଜାତହୋଇ ମୁଁ ମହାପାପିନୀ
ବିଧବା ଯନ୍ତ୍ରଣା ଭୋଗକଲି ନଳକ୍ଷଣି ।
ମୁହିଁ ମୂଢ଼ୀ କରି ନାହିଁ କିଛି ବ୍ରତ ଉପା
ତେଣୁକରି ସ୍ୱାମୀରେ ମୁଁ ହୋଇଲି ନିରାଶା ।
ହେ ଦଇବ ସ୍ତ୍ରୀଜନ୍ମ ଦେଲୁ କାହିଁପାଇଁ
ସ୍ୱାମୀ ବିନା ସ୍ତ୍ରୀଙ୍କର ଅନ୍ୟଗତି ନାହିଁ ।
ପୁରୁଷ ସ୍ତ୍ରୀ ଦୁଇଟି କରିଅଛୁ ଜାତ
ପରପୁଅ ସଙ୍କ୍ଷିପ୍ତ କରୁ ଘଟସୂତ୍ର ।
ଏହର କଣ୍ଠ ଲଗାଇ ଅଛୁ ମୋହମାନ
ସୁଖୀ ହେଉ ଦୁଃଖୀ ହେଉ କାଟୁଥାନ୍ତି ଦିନ ।
ଅଭେଦ ପ୍ରାଣପିରୁତି ମୋହର ଭଙ୍ଗିଲୁ
ସୁଖୀଲୋକେ ଦୁଃଖ ଦେଇ କନ୍ଦର୍ପେ ଗଞ୍ଜିଲୁ ।
ବସନ୍ତ କୁମାସ ଯେନ ଦର୍ପଣ ସ୍ୱକରେ
ଅଲକ୍ଷଣ ଚିହ୍ନମାନ ଦେଖିଲା କାୟାରେ ।
ବସ୍ତ୍ର ଅଳଙ୍କାର ଶୋଭା ନ ଦିଶେ ଦେହକୁ
ସ୍ୱାମୀ ଅଳଙ୍କାର ଏକା ନାରୀ ଶରୀରକୁ ।
ଏତେ ଅଳଙ୍କାର ମୋର ବର୍ଜଇ କାୟେ
ସବୁ ଦିଶଇ କନ୍ଦର୍ପ ଭଗ୍ନ ହେଲା ପ୍ରାୟେ ।
ହେ ସ୍ୱାମୀ ଛାଡ଼ିଣ ମୋତେ ଗଲ ଏକା ତୁମ୍ଭେ
ମୋଠାରୁ ସୁହୃଦ ତୋର ନ ଥିଲା ଯେ କେହି
ସ୍ୱାମି ତୋହର ମୋହର ରତିରଙ୍ଗବେଳେ
ଅଳଙ୍କାରମାନ ନ ଥାଇ ମୋ ବକ୍ଷସ୍ଥଳେ ।
ହୃଦୟକୁ ହୃଦୟ ନ ଲାଗେ ନାଥ ବୋଲି
ପରିହରି ବସନକୁ ପକାଅ ଯେ ପେଲି ।
ଥିଲା ମୋର ଯେତେ ସ୍ନେହ କାହାକୁ ଦାବେଇ
ମରି ଶୋଇଲ ଯାଇଣ ଏବେ ରଣଭୂଇଁ ।
ଗଜଦନ୍ତ ପଲଙ୍କରେ ତୂଳିକାର ଶେଯ
ତାପରେ ଯେ ପିଷ୍ଟ ଥିଲ କର୍ପୂରର ରଜ ।
ଆଲଟ ଚାମର ଧରି ଥିଲେ ଯେ ନାୟିକା
ଏହା ଛାଡ଼ି କେଉଁପରି ଶୋଇଲ ହେ ଏକା ।
ସ୍ୱାମି ତୁମ୍ଭ ଗୁଣ ଯେତେ କହିବଇଁ କେସ
ବଦନ ଦିଶେ ଶରତ ଚନ୍ଦ୍ରମା ସଦୃଶ ।
ହୀରା କଣିକା ସମାନ ଦିଶେ ଦନ୍ତପନ୍ତି
ବସନ୍ତ କୋକିଳ ଜିଣି ତୁମ୍ଭର ଭାରତୀ ।
ଅଳପ ବୟସେ ତୁମ୍ଭେ ମହାଯୋଦ୍ଧା ବୀର
ସମାନ ଯୁଦ୍ଧେ ତୁମ୍ଭଙ୍କୁ ମହୀରେ କେ ବୀର ।
ଦିନେ ମୋହ ପ୍ରତି କ୍ରୋଧ ହୋଇନାହଁ ଦେବ
ତୁମ୍ଭ ଗୁଣମାନ ସ୍ୱାମି କେ କହି ପାରିବ ।
ହା ହା ନାଥ ବୋଲିଣ ଯେ ପଡ଼ିଲା ଭୂମିରେ
ନାଥ ନାଥ ବୋଲି କର ମାରେ କପାଳରେ ।

ଗତ ଗୁଣମାନ କେତେ କହିବ ବାହୁନ
ବେଉଳେ ଚଢ଼ାଇ ବାଢ଼ିଦେଲ କେ ଲକ୍ଷଣୀ ।
ଅନାଥର ନାଥ ମୋର ଅନ୍ଧର ଲଉଡ଼ି
ଭିକ୍ଷାପାତ୍ର ଗୋଟି ମୋର କେହୁ ନେଲ କାଢ଼ି
ସ୍ୱାମୀର ମରଣେ ପ୍ରାଣ ଛାଡ଼ୁ ମୋ ଶରୀରୁ
କରିବ ସଙ୍ଗର କାର୍ଯ୍ୟ ଶୋକ ମୋର ସରୁ ।
ଯେଉଁ ସ୍ତ୍ରୀ ସ୍ୱାମୀ ସଙ୍ଗେ ନ ହୁଅନ୍ତି ଝାସ
ଜୀବନ୍ତେ ହୀନ ହୁଅନ୍ତି ମଲେ ନର୍କେ ବାସ ।
ଯେଉଁ ସ୍ତ୍ରୀ ସ୍ୱାମୀ ସଙ୍ଗେ ନାଶ ହୋଇଥାନ୍ତି
ସ୍ୱାମୀକୁଳ ପିତାକୁଳ ଉଦ୍ଧାର କରନ୍ତି ।
ଆହେ ଗୁରୁ କହ ଯାଇ ମୋ ପିତାଙ୍କ ଆଗ
ସ୍ୱାମୀ ଯେ ମୋହର ମଲେ କରି ରଣଯାଗ ।
ସ୍ୱାମୀଙ୍କ ସଙ୍ଗତେ ମୁହିଁ ହୋଇବ ତନ୍ମୟ
ସତୀ ହୋଇ କରିବ ମୁଁ ସ୍ୱାମୀଙ୍କର କାର୍ଯ୍ୟ ।
ଏସନ ବଚନ ଶୁଣି ଚକ୍ରଧର ଆପେ
ଯଜେ ଦେବରାଜ ଭଗ୍ନି ବଧୂର ସମୀପେ ।
ସେ ସମୟେ ମାନ୍ୟଧର୍ମ ନ ରହିଲ ତହିଁ
କେଶବ ବୋଲନ୍ତି ନଜେ ଉତ୍ତରକୁ ଚାହିଁ ।
ମାଗୋ ଶୋକ ଜଳେ ପଡ଼ି କପାଁ ହେଉ ବାଇ
ରଣ ଯଜ୍ଞରେ ପଡ଼ିଲେ ତୁମ୍ଭ ସ୍ୱାମୀ ଯାଇ ।
ପୂର୍ବର ଏହି ବିଧାନ କରିଛି ବିଧାତା
ନାଶ କରିବାକୁ ଅଛି ଶମନ ଦେବତା ।
ମର୍ତ୍ତ୍ୟରେ ଜନମ ହେଲେ ଅବଶ୍ୟ ମରିବ
ଶମନ ହାତରୁ ମାତ୍ର ଉଦ୍ଧାର ନୋହିବ ।
ଅବ୍ୟକ୍ତେ ଆସଇ ଗୋ ଅବ୍ୟକ୍ତେ ଯାଇ
ଦେଶ ବିଦେଶ ଯେ ଯହିଁ ଥାଉ ମୃତ୍ୟୁ ହୋଇ
ମାଗୋ ମର୍ତ୍ତ୍ୟମଣ୍ଡଳକୁ ସୃଷ୍ଟିଅଛି ବିଧି
ଏଥିରେ ଜନ୍ମ ଅମର କେହି ହୋଇନାହିଁ ।
ପୂର୍ବରୁ ଏମନ୍ତ ଅଛି ନ ଜାଣୁ କି ମାତ
ସ୍ୱାମୀ ଶୋକେ ମରିବାକୁ ନ ବୋଲାଅ ଚିତ୍ତ ।
ସବୁକାଳେ ଯମଦେବ କରେ ଅବସର
ପିତା ମାତା ଥାଉଁ ପୁତ୍ରେ ନଅଇ ଆଗର ।
ଶୁଣି କ୍ରୋଧେ ବୋଲେ ତହୁଁ ଏପରି ଉତ୍ତର
ମାୟାଧର ପୁରୁଷ କୁ ପୃଥ୍ୱୀ ଚକ୍ରାହର ।
ସ୍ୱାମୀ ମୋର ଅଟନ୍ତି ତ ତୁମ୍ଭର ଭଣଜା
ତାହାଙ୍କୁ ମରଇ ଟିକେ ନ ପାଇଲ ଲଜ୍ଜା ।

ଛାଡ଼ିଲ ଶୋକକୁ ମୁହିଁ ତୁମ୍ଭର ବଚନେ
କରିବ ସ୍ୱାମୀଙ୍କ କାର୍ଯ୍ୟ ସତୀଙ୍କର ଯେହ୍ନେ ।
ଗୋବିନ୍ଦ ବୋଇଲେ ମାଏ କେହ୍ନେ ଦେବବ୍ୟାସ
ଆମ୍ଭେ ତ ଶୁଣିଲୁ ତୁମ୍ଭ ଗର୍ଭ ଦଶମାସ ।
ଆତ୍ମହତ୍ୟା ଆବର ଯେ ବାଳହତ୍ୟା ଦୋଷ
ପରମ ସାଧ୍ୱୀ ତୁମ୍ଭେ ବୁଝାଇବା କିସ ।
ମାତା ତୁମ୍ଭ ଗର୍ଭେ ଅଛି ଯେଉଁ ପୁତ୍ରଗୋଟି
ଇହଲୋକ ପରଲୋକ ଉଦ୍ଧରିବ ସେହି ।
ସୋମବଂଶ ଉଦ୍ଧାରିବ ତୁମ୍ଭର ଯେ ପୁତ୍ର
ତୁମ୍ଭେ ଶୋକ ନିବାରଣ କର ଆଗୋ ମାତ ।
ସୁଭଦ୍ରାକୁ ବୁଝାଇଲେ ପୁରୁଷ-ଉତ୍ତମ
ଛାଡ଼ ମନରୁ ସନ୍ତାପ ନ କର କ୍ରନ୍ଦନ ।
ଅଭିମନ୍ୟୁ ପାଇଁ ଯେବେ ସମସ୍ତେ ମରିବ
ତଥାପିହିଁ ସେ କି ଆଉ ବାହୁଡ଼ି ଆସିବ ।
ଏହି ପରକାରେ ହରି ବୁଝାନ୍ତେ ବହୁତ
ସର୍ବେ ତାଙ୍କ ବାକ୍ୟେ ହେଲେ ଶୋକରୁ ନିବୃତ୍ତ
ଶ୍ରୀକୃଷ୍ଣ ବୋଲି ଅଟନ୍ତି ଯେବଣ ପୁରୁଷ
ସମସ୍ତଙ୍କ ହୃଦୟରେ ସେହି ପରକାଶ ।
ମାୟା କରି ସଂସାର ଯେ କରିଛନ୍ତି ବନ୍ଧନ
ତେଣୁ ମାୟାଧର ବୋଲି ଅଟେ ତାଙ୍କ ନାମ
ଅକ୍ରୋଧୀ ପୁରୁଷ ତୁମ୍ଭ ଦେବ ଯେ ଶ୍ରୀହରି
ସମସ୍ତ ବିଶ୍ୱ ନାଥ ତୁମ୍ଭ ଅଛୁ ସଞ୍ଚ ।
ଯାବତ କାର୍ଯ୍ୟରେ ଶୁଭ ନାମ ଅନୁକୂଳେ
ଶେଷ ହୁଅଇ ନିର୍ବିଘ୍ନେ ପରମ ମଙ୍ଗଳେ ।
ଅପରାପର ତୋହର କେହି ନାହିଁ ନାଥ
ତୋ ନାମ ସ୍ମରଣେ କଳିପାପୁଁ ହୁଅନ୍ତି ମୁକ୍ତ ।
କାରଣ ଯେ ଉଦ୍ଧାରଣ ସବୁ ଅଟୁ ତୁହି
ଦୁରନ୍ତ ନ.ଶନେ ଦେବ ତନ ଅଛୁ ବହି ।
ସ୍ୱାମି କହଇକେ ଧ୍ୱଂସ କଲୁ ମହୀଭାର
ଯୋଗୀଜନମାନଙ୍କର ହୃଦ ରତ୍ନାହାର ।
ପଶିଛି ଅଗାଧଜଳେ ନରଜନ୍ମ ହୋଇ
କି ଅବା ମୋହର ଜ୍ଞାନ ତୋହର ମାୟା କହି ।
ସ୍ୱାମୀ ମୁଁ ମୂରୁଖ ଅଟେ ବାଆଷଠି ଜନ୍ମେ
ତବ ନାମକୁ ଲେଖିଲି ମୋ ସାମାନ୍ୟ ଜ୍ଞାନେ
ତୁ ନାଥ ଜାତ କରଇ ପୁଣି ଅନ୍ତ କରୁ
ଏ ଚରିତ ଲେଖିଲି ମୁଁ ତୁମ୍ଭର କୃପାରୁ ।

ସଂସାର ତରିବା ମୁହିଁ ବୁଝିଲି ଏଥର
କୃପାକର ଏଥୁଁ ମୋତେ ତାର ଚକ୍ରଧର ।
ଜଗତ ବୋଧ ନିମନ୍ତେ ନାମ ଜଗନ୍ନାଥ
ସମସ୍ତ ଜୀବଙ୍କୁ ତୁମ୍ଭେ କରୁ ଆତଯାତ ।
ନିର୍ମଳ ଜଳରେ ଯେହ୍ନେ ପଦ୍ମବନ ଗୋଟି
ସୌରଭକୁ ବିସ୍ତାରଣ ନାଡେ ଥାଇ ଫୁଟି ।
ତେହ୍ନେ ବିକଶିତ କରୁ ଯୋଗୀଜନ ହୃଦେ
ମାୟା ମୋହ କି ବୁଝିବ ତୋ ବିନା ପ୍ରସାଦେ
ନମୋ ନମୋ ନାରାୟଣ ଚତୁର୍ବର୍ଗଦାତା
ତିନି ଭୁବନରେ ସର୍ବ ତୁମ୍ଭେ ହର୍ତ୍ତା କର୍ତ୍ତା ।
ସଦା ଭାସୁଛୁ ସଂସାର ମୋହଜଳେ ପଶି
ଏଥିରୁ ଉଦ୍ଧାର କର ତୁମ୍ଭେ ବ୍ରହ୍ମରାଶି ।
ଏ ଭବସାଗରୁ ହରି ବାରେକ ଉଦ୍ଧର
ଶୂଦ୍ର ଶାରଳାଦାସ ଯେ ଭକତ ନଇନ୍ଦର ।

---

## କୃଷ୍ଣଙ୍କ ସହିତ ପାଣ୍ଡବଙ୍କ ମନ୍ତ୍ରଣା ଓ ଜୟଦ୍ରଥ ବଧାର୍ଥେ ଅର୍ଜ୍ଜୁନଙ୍କର ପ୍ରତିଜ୍ଞା

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସୁଭଦ୍ରା ଉତ୍ତରା ଶୋକ ହୋଇଯାନ୍ତେ ଶାନ୍ତି
ପୁଣ ପାଣ୍ଡବେ ଏକତ୍ରେ ବସିଲନ୍ତି ବସି
ଦେଖ ରଜନୀ ଅର୍ଦ୍ଧେକ ହୋଇଲାଣି ଆସି ।
ରାଜ୍ୟଲୋଭେ ଆମ୍ଭେମାନେ କଲୁ ଏ ବିବାଦ
ଜୀବନେ ତ ଆଶା ନାହିଁ କି ଗୁରୁ ସମ୍ପଦ ।
ଯାହାପାଇଁ ଦ୍ୱନ୍ଦ୍ୱ କରୁ ସେହି ଗଲା କାହିଁ
କେ ପଡ଼ିବ କେ ରହିବ କହୁ ଜଣା ନାହିଁ ।
କ୍ଷଣେ କ୍ଷଣକେ ପ୍ରମାଦ ପଡ଼ଇ ଆବୋର
କାଲି ପ୍ରାତଃ ସର୍ବେ ଯିବା ରଣସଜ୍ଜା କର ।
ବୃଦ୍ଧ ଯେବେ ପୁତ୍ରଶୋକେ ନ ଯିବୁଟି ରଣେ
କୌରବେ ମରିବେ ଆମ୍ଭ ସହ ପ୍ରାଣପଣେ ।
ଶତ୍ରୁର ସ୍ୱଭାବଗଣେ ଯେ ଥାଆନ୍ତି ଗୁପତେ
ବାରତା କହିବେ ମାନଗୋବିନ୍ଦ ସାକ୍ଷାତେ ।
ଶୋଭାବନେ ପାଣ୍ଡବ ଯେ ଯାଉଛନ୍ତି ଭାସି
ବନ୍ଧୁଙ୍କୁ ସାଜ ନ ପୁଣ ବେଢ଼ନ୍ତି ଯେ ଆସି ।
ତୋହର ନନ୍ଦନଙ୍କୁ ସେ ବଧକଲେ ରଣେ
କେମନ୍ତେ କୌରବେ ଏବେ ମରିବେକ ପ୍ରାଣେ

ଚନ୍ଦ୍ରଇନ ଉପାୟ କର ଯେ ଅଛୁ ତୋ ବୁଦ୍ଧି
ଶତ୍ରୁକୁ ଜିଣିଲେ ଯିବା କାର୍ଯ୍ୟ ହେବ ସିଦ୍ଧି ।
ଲୋଡ଼ିଲେ ପାଇବା ନାହିଁ ଆଉ ଅଭିମନ୍ୟୁ
କି ହେବ କାଟିଲେ ଟିକିଟିକି କରି ତନୁ ।
ଚିନ୍ତା କଲେ ଏ ଶରୀର ହେବ ଅତି କ୍ଷୀଣ
ସର୍ବେ ଉଠ ଚାଲ ଯାଇଁ କରିବା ସ୍ନାହାନ ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ମୋର ସ୍ନାନ ନାହିଁ
ଜୟଦ୍ରଥ ନ ମାରିଲେ ନ ଭୁଞ୍ଜିବି ମୁହିଁ ।
ଏହି ନିୟମ ମୋହର ଶୁଣ ଦାମୋଦର
କାଲି ଯୁଦ୍ଧେ ଜୟଦ୍ରଥ କରିବି ସଂହାର ।
ତାହା ଯୋଗରୁ ପଡ଼ିଲା ପୁତ୍ର ଅଭିମନ୍ୟୁ
ତିରଣ ପ୍ରମାଣ କରି କାଟିବି ତା ତନୁ ।
ବନବାସେ ଦ୍ରୌପଦୀକି ହରିଲା ଯୁକତେ
ସେ ଦୋଷ ନ ଧରିଲି ମୁଁ ଭଗ୍ନୀର ନିମନ୍ତେ ।
ବନ୍ଧୁତ୍ୱ ଧରି ତାର ନ ଛେଦିଲି ଶିର
ତାହା ହେତୁ ନାଶଗଲା ମୋହର କୁମର ।
ମୁଁ ଯେବେ ଜୟଦ୍ରଥକୁ ନ ମାରିବି କାଲି
ଧିକ କ୍ଷତ୍ରିପଣ ଦଶ ନାମକୁ ବହିଲି ।
ନ ତଡ଼ିବି ନନ୍ଦଘୋଷେ ନ ଧରିବି ଧନୁ
କପଟରେ ମରିଗଲା ପୁତ୍ର ଅଭିମନ୍ୟୁ ।
ଧ୍ୱଜରେ କପିକେତନ କୃଷ୍ଣ ଯାର ରଥେ
ତା ପୁତ୍ର ଯେ ନାଶଗଲା ଏତେ ବଳଥାନ୍ତେ ।
ଭାରତ ସମରେ ଶୁଣ ମୋର ପାରପଣ
ଜୟଦ୍ରଥେ ନ ମାରିଲେ ପୋଡ଼ୁ ମୋର ପ୍ରାଣ
ପଶ୍ଚିମେ ଉଦୟ ଯେବେ ହେବ ଦିନକର
ନଳମୀ ଫୁଟିବ ଯେବେ ପର୍ବତ ଶିଖର ।
ଯେବେ ଆବୋରିବେ ବ୍ରହ୍ମା ରୁଦ୍ର ପୁରନ୍ଦର
ଜୟଦ୍ରଥକୁ ମାରିବି ଏ ସତ୍ୟ ମୋହର ।
ଅକାରି କର୍ମରେ ଯେବେ ବର୍ତ୍ତୁଥାନ୍ତି ଜନ
ଦେବ ପିତୃକୁ ନ ଆଶା କରେ ଯେ ଅଜ୍ଞାନ ।
ଯେବଣ ଜନ ବର୍ତ୍ତନ୍ତି ଏପରି ସ୍ୱଭାବେ
ଦେବଙ୍କ ଧନ ହରନ୍ତି ଯେଉଁମାନେ ଲୋଭେ
ଶକ୍ତି ଅନୁସାରେ ଯେହ୍ନେ ନ ଦିଅନ୍ତି ଦାନ
ଗ୍ରହଣ ସମୟେ ଯେହ୍ନେ ଭୁଞ୍ଜଇଟି ଅନ୍ନ ।
କୁଜନ ସଙ୍ଗତେ ଯେହ୍ନେ କରଇଟି ଗୋଷ୍ଠି
ଯୋଗ୍ୟମାନ ହୋଇ ଯେହ୍ନେ ହେଉଥାଇ କଷ୍ଟୀ

ପର ଦୁଃଖ ଦେଖିଣ ଯେ ଦୟା ନ କରଇ
ଗୁରୁଜନ ଦେଖିଣ ଯେ ନର୍ଭୟ ହୁଅଇ ।
ଏତେଲୋକଙ୍କ ସଙ୍ଗେ ମୁଁ ଗଣିତା ହୋଇବ
କାଲି ଯେବେ ଜୟଦ୍ରଥ ମାରି ନ ପାରିବ
ବିଶ୍ୱାସଘାତକ ଯେତକ ହୁଅଇଟି ଜନ
ହରିହର ମୂର୍ତ୍ତିକି ଯେ ନ କରେ ଦର୍ଶନ
ଧର୍ମୀ ହୋଇଣ ଯେ କରେ ପରଧନେ ଆଶା
ପରଦ୍ରବ୍ୟ ହରିବାକୁ ଯେ କରେ ଭରସା ।
ବାରବ୍ୟେ କରନ୍ତି ଯେ ଦାନ ଦେବାକାଳେ
ପରସ୍ତ୍ରୀ ପରଦ୍ରବ୍ୟ ହରନ୍ତି ଯେ ବଳେ ।
ନିଜକର୍ମ ଅନୁସାରେ ହୁଅଇ ଯେ ରୋଗୀ
ଔଷଧ ନ ବୁଝି ଯେତକ ପରେ ହୁଏ ଭୋଗୀ ।
ଗୋଚର ଭୂମିରେ ଯେତକ କରନ୍ତି କୃଷି
ଜ୍ଞାନୀ ଜନ ହୋଇ କରେ ମଠେ ସହବାସ ।
ଜୟଦ୍ରଥେ କାଲି ଯେବେ ନ ମାରେ ସମରେ
ଗଣିତା ହୋଇବ ଏହି ଲୋକଙ୍କ ସଙ୍ଗରେ ।
ବିବାହ ସ୍ତ୍ରୀଙ୍କି ପରିତ୍ୟାଗ ଯେ କରଇ
ଆପଣେ ଥାଇଁ ତା ଭାର୍ଯ୍ୟା ଅପରେ ନିଅଇ ।
ନଗୋ ଜୀବମାନଙ୍କୁ ଯେତକ ପ୍ରାଣେ କରେ ଘାତ
ସୁଭୋଜନ ପାଇ ଯେତକ କରନ୍ତି ଅସ୍ୱାର୍ଥ ।
ଚତୁର୍ଥୀ ଦଶମୀ ଏକାଦଶୀ ଯେ ସପ୍ତମୀ
ଆମିଷ ଭୁଞ୍ଜନ୍ତି ଯେତକ ଆବର ପଞ୍ଚମୀ ।
ଗ୍ରହପୀଡ଼ା କାଳେ ଯେତକ ନ କରନ୍ତି ପୂଜା
ଶୟନ କରନ୍ତି ଯେତକ ବନ୍ଧ କରି ଶଯ୍ୟା ।
ଏତେ ଲୋକମାନଙ୍କର ଯେତେ ମହାପାପ
ଲଭିବ ଜୟଦ୍ରଥେ ନ କଲେ କାଲି ଲୋପ ।
ଏକା ସୂର୍ଯ୍ୟକରେ ଯେତକ ଭୁଞ୍ଜି ହୁଲବେଳ
ମାତ ନାଶିବାରେ ସାର୍ଯ୍ୟ ହଏ ହୋଇ ଖେଳ ।
ଧନ ଯୋଜଣ କରନ୍ତି ଯେତକ ସ୍ତ୍ରୀସାଲଙ୍ଗ
କୁଳବମାନଙ୍କ ଯେତକ ବୁଝାନ୍ତି ସୁସଙ୍ଗ ।
କର୍ମହୀନେ ଯେତକ ବସ୍ତ୍ର କାଳ କଅ ଥାନ୍ତି
ଯେଉଁ ବସ୍ତ୍ର ଧନ ଆଣେ ପ୍ରମାଦ ବାଞ୍ଛନ୍ତି ।
ବ୍ରାହ୍ମଣ ହୋଇଣ ଯେତକ ହୁଅନ୍ତି ଅଶାନ୍ତ
ମଦ୍ୟପାନ ଲାଗେ ହରେ ଯେ ବସ୍ତ୍ର ସମ୍ପତ୍ତି ।
ଗଜଭକ୍ତ ତ୍ରିଷ୍ଠାରେ ଯେ କରଇ ଆଶା
ପଡ଼ିଥିବାକୁ ହରିବା ଯାହାର ମନାଷା ।

ଏ ସର୍ବ ଲୋକଙ୍କ ସଙ୍ଗେ ମୁଁ ହେବ ସମାନ
ଯେଉଁ ରାଜା ବନ୍ଦୀ କରେ ବୃଥା ପ୍ରଜାଜନ ।
ପିତାମାତା ଅନାଦର କରେ ଯେ ଅଜ୍ଞାନ
ପଣ୍ଡିତମାନଙ୍କ ଯେତକ କରନ୍ତି ଅମାନ୍ୟ ।
ଶାସ୍ତ୍ର ନ ବୁଝି ନ ଶୁଣି ନିନ୍ଦେ ଧର୍ମ କଥା
ଏତେ ଲୋକଙ୍କର ପାପ ନେବ ମୁଁ ସର୍ବଥା ।
ଆଶା ଦେଖାଇଣ ଯେତକ କରଇ ନିରାଶା
ସଦା ଠକି ନେବାପାଇଁ ଯାହାର ମନାଷା ।
ଲେଖା ହେବ ମୁହିଁ ପ୍ରଭୁ ଏହାଙ୍କର ତୁଲେ
ସୂର୍ଯ୍ୟଅସ୍ତ ଯାଏ ଜୟଦ୍ରଥ ନ ମାରିଲେ ।
ଦଣ୍ଡ ଥାନ୍ତି ଜିହ୍ୱାଭ୍ରଷ୍ଟ ହୋଇ ଯେତେ ନର
ଇଛଥି ଲାଗେ ଫେରନ୍ତି ଯେଉଁ ଯେଉଁ ସର ।
ପଞ୍ଚପର୍ବେ ମଦ୍ୟ ମାଂସ ଖାଏ ଯେଉଁଜନ
ବ୍ରତ ଉପବାସେ ଦିନ୍ନ ଯେ କରେ ମୈଥୁନ ।
ସ୍ନାନାନ୍ତେ ପାଲଟା ବସ୍ତ୍ର ଯେ ନର ପିନ୍ଧଇ
ପାକାସ୍ମରଣ ତ୍ରିପାଠ ବଳେ ଯେ ଭ୍ରମଇ ।
ପରଶ୍ରୀ ସମ୍ପତ୍ତି ଯେତକ ଦେଖି ନ ପାରନ୍ତି
ମିଥ୍ୟାକଥା କହି ଯେତକ ପରକୁ ଗଞ୍ଜନ୍ତି ।
ଯେ ଜନ ଚୋରି ଅଶୁଦ୍ଧ କରି ଦ୍ୟନ୍ତି ଦାନ
ଏତେଲୋକ ସଙ୍ଗେ ମୁହିଁ ହୋଇବି ଗଣନ ।
କାଲି ଯେବେ ଜୟଦ୍ରଥେ ମୁହିଁ ନ ମାରଇ
ଜାଣ ଦଣ୍ଡ ନିଶ୍ଚେ ସତ୍ୟଭଙ୍ଗ ହେବ ମୁହିଁ ।
ଧନଲୋଭେ ଯେଉଁ ନର ନିକେ ମାଗିଛନ୍ତି
ବେଲକାଷ୍ଟେ ପୁଣି ଷଣ୍ଢେ କରନ୍ତି ଯେ ହଳ ।
ଯେ ଦ୍ୱେହେଁ ପଞ୍ଚାଶଦ୍ଧନ ଜସ୍ରା ନ ପିଆଇ
ଶରଣ ପଶିଲେ ଯେତକ ରକ୍ଷା ନ କରଇ ।
ସମ୍ପଦ ଥାଉ କୁଟୁମ୍ବ ଧନେ ନ ପୋଷନ୍ତି
ଅବସ୍ଥା ମନ ହୋଇଣ ସର୍ବଦା ବଞ୍ଚନ୍ତି ।
ଏକାଦଶୀ ଶିବରାତ୍ରି ଗ୍ରହଣ କାଳରେ
ଯେ ନର ଭୁଞ୍ଜନ୍ତି ଅନ୍ନ ଏ ତିନି ଦିନରେ ।
ସମରେ ପଶି ଯେ କ୍ଷତ୍ରୀ ହୁଅଇ ନିସତ
ବ୍ରାହ୍ମଣ ହୋଇ ଜଳକୁ ହୁଅନ୍ତି ଯେ ଘାତ ।
ହିଂସା ହୋଇ ଅନଳକୁ ଯେବେ କରେ ଭସ୍ମେ
ଏହି ପାପୀଙ୍କ ସଙ୍ଗରେ ସଙ୍ଗୀ ହେବଗସ୍ମେ ।
ଯେବଣ ଜନ କରନ୍ତି ଗର୍ବେ ଗୋହତ୍ୟା
ବ୍ରାହ୍ମଣଙ୍କୁ ମାରି ଯେତକ ଭାଙ୍ଗନ୍ତି ଦେବତା ।

ସ୍ତ୍ରୀଙ୍କୁ କ୍ରୋଧରେ ନାଶ କରେ ଯେଉଁଜନ
ଆତ୍ମଘାତୀ ହୋଇଣ ସେ ହରନ୍ତି ଜୀବନ ।
ମାନଟା ନାଶ ହରଣ କରଇ ଯେଉଁ ନର
ନିଜଭାର୍ଯ୍ୟା ଉପେକ୍ଷି ଯେ କରଇ ପରଦାର ।
ଅସ୍ୱାର୍ଥ ଭାବେ ବଞ୍ଚୁଣ ଥାନ୍ତି ଯେଉଁଜନ
ଆପଣା ଜାତି ଲୁଚାନ୍ତି ଯେ ମୂଢ଼ ଅଜ୍ଞାନ ।
ଅଥବା ବ୍ରାହ୍ମଣୀ କି ଯେ ହରେ କୁତୂହଳେ
ସେ ପାପ ଭୋଗିବି ଜୟଦ୍ରଥ ନ ମାରିଲେ ।
ଧନ ସେନ ଭଜଇ ଯେ ନିଜର ଆବାସ
ପ୍ରୀତି ଉପୁଜାଇ ଯେହ୍ନେ ତାକୁ କରେ ନାଶ ।
ଘରେ ବନ୍ଧୁ କହି ଯେହ୍ନେ ବସିଥାନ୍ତି ଦିନ
ବଡ଼ଶୀ ଥୋଇ ପକାଇ ମାରନ୍ତି ଯେ ମୀନ ।
ଯେବଣ ଜନ ନ କରେ ବ୍ରତ କଦା ଊଷା
କନ୍ୟା ଦେବାକୁ କହିଣ କରଇ ନିରାଶା ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିଜାତି
ଏଥେ ଜନ୍ମହୋଇ ଯେହ୍ନେ ମଦ୍ୟ ଖାଆନ୍ତି ।
ତୀର୍ଥ ଜଙ୍ଗଲ ଯାଇ ଯେହ୍ନେ ନ ବୁଡ଼ାନ୍ତି ଶିର
ଆପ୍ତ ବନ୍ଧୁମାନେ ନିନ୍ଦା କରନ୍ତି ପରର ।
କ୍ଷଣା ଖୋଳିଣ କଣ୍ଟାକୁ ପକାନ୍ତି ଯେ ବାଟେ
ଅନ୍ଧ ହସ୍ତେ ଜହରି ଯେ ଦିଏ କପଟେ ।
ଜୟଦ୍ରଥ ନ ମାରିଲେ କାଲିର ସମରେ
ମୋତେ ଗଣିବ ଯେ ଏହି ପାପୀଙ୍କ ସଙ୍ଗରେ ।
ଭଲ ପଦାର୍ଥ ଖାଏ ଯେ କୁଟୁମ୍ବେ ଲୁଚାଇ
ଶରଧା କରିଣ ଯେହ୍ନେ ଯାଚି ନ ଦିଅଇ ।
ସ୍ୱପେଣ ପୋଡ଼ନ୍ତି ଯେହ୍ନେ ପରର ଆବାସ
ଯତି ବ୍ରାହ୍ମଣ ବୈଷ୍ଣବେ ଯେ କରେ ହିଂସା ।
ପରରେ କପଟ କରୁଥାନ୍ତି ଯେଉଁ ଜନ
ପରନିନ୍ଦା ଶିଖାଇଣେ ଯେ କରେ ଭଞ୍ଜନ ।
ଶୂକର ମାଂସ ସୁଜାତ ହୋଇଣ ଭକ୍ଷନ୍ତି
ପରର ଯେ ନିନ୍ଦାବାଦ ସର୍ବଦା କରନ୍ତି ।
ଏହି ଲୋକଙ୍କର କୁଳେ ହୋଇବି ଗଣନ
କାଲି ଜୟଦ୍ରଥ ମୁଣ୍ଡ ନ କଲେ ଛେଦନ ।
ଆପଣା ଭାରଯା ପାକାପ୍ରଭରର ପାଣି
ପିତୃଲୋକଙ୍କୁ ତର୍ପଣ କରଇ ତା ଆଣି ।
ହେ ଚନ୍ଦ୍ରସୂର୍ଯ୍ୟ ବରୁଣ ଦଶଦିଗପାଳେ
ସ୍ୱରବାସ ସ୍ୱରପୁର ଏ ମହୀମଣ୍ଡଳେ ।

ବହନ୍ତା ପୁରୁଷମାନେ ଆଉ ବିଶ୍ୱଦେବା
ରଣକାଳେ କାଲି ସର୍ବେ ସପକ୍ଷ ହୋଇବା ।
ଯଦି ମୁହିଁ ଜୟଦ୍ରଥେ ନ ମାରଇ କାଲି
ଅଗ୍ନିରେ ଝାସି ମରିବି ଏହି ବ୍ରତ କଲି ।
ଗୋବିନ୍ଦ ବୋଇଲେ ବଡ଼ ପାତକ ତ ଅଛି
ବସ୍ତାରଣ କେତେ କୁହ କହିବୁ ବଦସ୍ରି ।
ଶୁଣି ଅତ୍ୟନ୍ତ କ୍ରୋଧରେ କହନ୍ତି ଅର୍ଜୁନ
ଆବର କଥା ଏ ମୋର ଶୁଣ ଭଗବାନ ।
କହିଯିବା କଥାକୁ ଯେ ବସିଣ ଝୁରଇ
ପରର କଥାକୁ କାନ ଡେରିଣ ଶୁଣଇ ।
ବାଟରେ ଥିବା ବୃକ୍ଷକୁ ଯେ ଜନ କାଟନ୍ତି
ନିର୍ଦ୍ଦୋଷ ଜନଙ୍କୁ ଯେହ୍ନେ ଦଣ୍ଡମାନ ଦ୍ୟନ୍ତି ।
ଏତେ ଲୋକଙ୍କର କୁଳେ ଜାଣ ମୁହିଁ ଗଣେ
ଯେବେ ଜୟଦ୍ରଥକୁ ନ ମାରେ କାଲି ରଣେ ।
ଅର୍ଜୁନର ଏହିପରି ପ୍ରତିଜ୍ଞାକୁ ଶୁଣି
ହସିଣ କହନ୍ତି ତହୁଁ ଦେବ ଚକ୍ରପାଣି ।
ଦୁଃସହ ପ୍ରତିଜ୍ଞା କୁହ କଲୁ ଧନଞ୍ଜୟ
ତୋ ପ୍ରତିଜ୍ଞା ଶୁଣି ମୋତେ ଲାଗୁଅଛି ଭୟ ।
ଅଛନ୍ତି ଭରଦ୍ୱାଜଙ୍କ ପୁତ୍ର ଦ୍ରୋଣଗୁରୁ
ସେନାପତି ହୋଇଛନ୍ତି ଶିଷ୍ଟଙ୍କ ଉପରୁ ।
ପର୍ଶୁରାମ ବଚନେ ସେ ମହା ଶୂରବନ୍ତ
ଶସ୍ତ୍ରମାନ ଯେତେକ ରୁ ଜାଣୁ ତା ସମସ୍ତ ।
ତାହାଙ୍କର ନନ୍ଦନ ଯେ ଅଟେ ଅଶ୍ୱତ୍ଥାମା
ନ ଜିଣିବ ତାହାକୁ ସର ଯୁଦ୍ଧେ ଇନ୍ଦ୍ରବ୍ରହ୍ମା ।
ବାଳକାଳେ ଶର ଦିନୁ ଅନଳ ପର୍ବତେ
ଉଣ୍ଠୁଣ ସେହି ଗିରି ଫୁଟେ ଶରଘାତେ ।
କୃପାଚାର୍ଯ୍ୟ ଅଟନ୍ତି ଯେ ଦ୍ରୋଣଙ୍କର ଶଳା
କୃପଙ୍କର ଜ୍ୟେଷ୍ଠ ଅଶ୍ୱତ୍ଥାମାର ମଉଳା ।
ଯାହାର ଧନୁ ଧରିଲେ କମ୍ପି ଉଠେ ସ୍କନ୍ଦ
ଇଥ୍ୟେ ଗୁରୁ ହୋଇ ଶିଖାଇଲେ ସଦାନନ୍ଦ ।
ମାଦ୍ରୀଙ୍କ ଭ୍ରାତା ଅଟନ୍ତି ମହାରଥୀ ଶଲ୍ୟ
ଭାରତ ସମରରେ ସେ ଅଟେ ମହାମଲ୍ଲ ।
ସେ ହସ୍ତେ ଧନୁ ଧରିଲେ ମୁହିଁ କରେ ଭୟ
ଶଲ୍ୟ ପ୍ରମୁରେ ଯୁଝିବ ଅଛି ତା ଉପାୟ ।
ବ୍ରହ୍ମର ସୋଦର ସେହି ଗାଧୀର ନନ୍ଦନ
ଉର ତାକୁ ପୃଥ୍ୱୀ ଦିଏ ଲକ୍ଷେ ଭାର ସ୍ୱର୍ଣ୍ଣ ।

ଆଷ୍ଟରେ ପାବକକୁ ମସ୍ତକରେ ପକାଇଲେ
ବସୁନ୍ଧରାର ମୁଖରୁ ରୁଧିର ଯେ ଗଳେ ।
ଭରତେ ଶ୍ରେଷ୍ଠ ଭୂମଲ୍ଲ କ୍ଷତ୍ରି ଶିରୋମଣି
ତାହାର ସାକ୍ଷାତେ ରକ୍ଷ କେ ଯୁଝିବ ପୁଣି ।
ଧନୁଗୁରୁ ମନ୍ତ୍ରଗୁରୁ ଦେବ ବିଦ୍ୟାଗୁରୁ
ଶସ୍ତ୍ରଗୁରୁ ଶାସ୍ତ୍ରଗୁରୁ ସର୍ବ ଦୀକ୍ଷାଗୁରୁ ।
ସୋମବଂଶ ମଣ୍ଡନ ଯେ ପିତାମହ ଦେବା
ଶାନ୍ତନୁ ସାନୁଜ ସାର ରଥି ଭୂରିଶ୍ରବା ।
ଅଳମ୍ବୁଷ ଅଳାୟୁଧ କୌଶିକ ଏ ତିନ
ଏମାନେ ଧନୁ ଧଇଲେ କମ୍ପଇ ମେଦିନୀ ।
ଭୂତ ଭବିଷ୍ୟତଜ୍ଞାତା ମନ୍ତ୍ରୀ ଯେ ଶକୁନ
ଖୁଣ୍ଟିଲେ ତାକୁ ହସଇ ଏ ବ୍ରହ୍ମାଣ୍ଡ ତିନ ।
ମାନଗୋବିନ୍ଦ ଯେ ଏକା କ୍ଷତ୍ରୀ ମହୀତଳେ
ତୁମ୍ଭ ସମ୍ପତ୍ତି ହରିଲ ସେହୁ ବୁଦ୍ଧିବଳେ ।
କର୍ଣ୍ଣର ଦେଶର ପାରଦର ମହୀପତି
ନବସହସ୍ର ଯୋଦ୍ଧା ତାଙ୍କ ସନ୍ନିଧେ ଅଛନ୍ତି ।
ଗତ ଆଗତ ଜାଣଇ ମନ୍ତ୍ରୀ ଯେ ସଞ୍ଜୟ
କଳିଙ୍ଗସେନ ଜାଣଇ ବହୁତ ଉପାୟ ।
ଶତେକ ସୋଦର ଯେଣୁ ମାନଚକ୍ରବର୍ତ୍ତୀ
ଏକଶଇ କୁଳେ ଛନ୍ତି ମତ୍ତ ତେଜ ହସ୍ତୀ ।
ଜନସାଗର ମୁକୁଟ ବନ୍ଧା ରଥୀ ଛନ୍ତି
ଦ୍ୱିପରାର୍ଦ୍ଧ ଶଙ୍ଖ କୁଳେ କାଣ୍ଡ ବନ୍ଧା ରଥୀ ।
ଦୁଃଶୀଳାର ବଲ୍ଲଭ ଯେ ଅଟେ ଜୟଦ୍ରଥ
ଈଶ୍ୱରଙ୍କୁ ସେବି ବର ପାଇ ସେ ଶକତ ।
ପିନାକ ସମାନେ ତାର ହସ୍ତେ ଅଛି ଧନୁ
ପ୍ରତ୍ୟକ୍ଷ ପ୍ରତିଜ୍ଞା ତାର ତୁମ୍ଭ କି ନ ଜାଣୁ ।
କିପାଁ ଏଡ଼େ ପ୍ରତିଜ୍ଞା ତୁ କଲୁ ଅକାରଣେ
ମାରି ପାରିବୁ କି ତୁହି ଜୟଦ୍ରଥେ ରଣେ ।
ମୃତ୍ୟୁଭେଦ କହିକର ଶାସ୍ତ୍ର ନାଶଗଲା
ତେବେ ନ ମର ଇଚ୍ଛାରେ ଶରଶଯ୍ୟା କଲା ।
ତୋ ପ୍ରତିଜ୍ଞା ଶୁଣି ମୋର ନ ସ୍ଫୁରଇ କିଛି
କେମନ୍ତେ ଜୟଦ୍ରଥକୁ ତୁ ମାରିବୁ ବଚସି ।
କୃଷ୍ଣଙ୍କ ବଚନ ଶୁଣି ବୋଲନ୍ତି ଅର୍ଜୁନ
ଏକମାତ୍ର ତୁମ୍ଭେ ମୋତେ ହୋଇଲେ ପ୍ରସନ୍ନ ।
ତାହାକୁ ରକ୍ଷା କରିବ କେ ଅଛି ଜଗତେ
କାଲି ନିଶ୍ଚୟ ମାରିବି ମୁହିଁ ଜୟଦ୍ରଥେ ।
ହର ସପକ୍ଷ ହୋଇବେ ବ୍ରହ୍ମାରୁଦ୍ର ଇନ୍ଦ୍ରେ
ଜୟଦ୍ରଥକୁ ମାରିବି ତୁମ୍ଭର ପ୍ରସାଦେ ।
ଅର୍ଜୁନ ମୁଖୁ ଏପରି ବଚନକୁ ଶୁଣି
ସ୍ନେହେ ଆଲିଙ୍ଗନ କଲେ ଦେବ ଚକ୍ରପାଣି ।
ତୁହି ମୋର ପ୍ରାଣସଖା ବୀର ଫାଲଗୁନ
ଜୟଦ୍ରଥେ କେ ରଖିବ କାଲି ମହୀ ତିନ ।
ଯେବେ ସେହିଠାରୁ ସେହି ବଳଯିବ ରଣେ
ତବ ଯେପି ନାଶିବଇଁ ଭଗ୍ନି ଜାଣିମାନେ ।
ଏହା କହି ପାର୍ଥଙ୍କର ଧରି ଜଗନ୍ନାଥ
କାହାକୁ କହି ନ କହି ଉଠିଲେ ତୁରିତ ।
କପିଧ୍ୱଜ ରଥେ ଦୁହେଁ କରି ଆରୋହଣ
କଇଲାସେ ଗଲେ ଯହିଁ ହରଙ୍କ ଭୁବନ ।
ପାର୍ବତୀ ସଙ୍ଗତେ ବସିଛନ୍ତି ବିଶ୍ୱନାଥ
ଦେଖି କୃଷ୍ଣାର୍ଜୁନ ହେଲେ ତାଙ୍କୁ ପ୍ରଣିପାତ ।
କହନ୍ତି ଶ୍ରୀକୃଷ୍ଣ ହସ୍ତଯୋଡ଼ି ସ୍ତୁତିବାଣୀ
ଦେବ ଦେବ ମହାଦେବ ଦେବ ଶୂଳପାଣି ।
ସମୁଦ୍ର ମନ୍ଥନେ ଘୋର ଗରଳ ଉଠିଲା
ବିଶ୍ୱସଂସାର ଦହନ ସେହି କରୁଥିଲା ।
ସୃଷ୍ଟିନାଶ ଦେଖି ଦେବଗଣ କଲେ ସ୍ତୁତି
ଦେବଗିରେ ସନ୍ତୁଷ୍ଟ ତୁ ହୋଇ ପଶୁପତି ।
ଗଣ୍ଡୁଷେ ତା ପାନକରି ରଖିଲ ଜଗତ
ସେ ଯଶ ସଂସାରେ ତବ ହୋଇଲା ଘୋଷିତ
ସୃଷ୍ଟି ସ୍ଥିତି ପ୍ରଳୟର ତୁମ୍ଭେ ଆଦିମୂଳ
ନିବେଦନ କରେ ନାଥ ହୁଅ ଅନୁକୂଳ ।
ଗୋବିନ୍ଦଙ୍କ ସ୍ତୁତି ଶୁଣି ଦେବ ଗଙ୍ଗାଧର
ମୃଦୁ ହାସ୍ୟେ ତାଙ୍କୁ ଦେବ କରିଲେ ଉତ୍ତର ।
ମୋହର ବିଧାତା ତୁମ୍ଭେ ବିଶ୍ୱର ପାଳକ
ଯେ ନ ଜାଣେ ସେହି କହେ ନନ୍ଦର ବାଳକ ।
ଭୂଭାର ନାଶନେ ତୁମ୍ଭେ ହେଲ ଅବତାର
ଅର୍ଜୁନକୁ ଯେଣୁ ସୁଖେ କରୁଛ ବିହାର ।
ଯାହା ଆଜ୍ଞା କରିବ ତା କରିବି ପାଳନ
କି କହୁଛ କହ ଶୀଘ୍ର ଦେବ ନାରାୟଣ ।
ଗୋବିନ୍ଦ ବୋଇଲେ ଦେବ କର ଅବଧାନ
କୌରବ ପାଣ୍ଡବ ଯୁଦ୍ଧ ନୁହେଁ ସମାଧାନ ।
ଅନ୍ୟାୟ ସମରେ କରି ଅଭିମନ୍ୟୁ ବୀରେ
ବେଢ଼ି କରି ମାଇଲେ ଯେ କୌରବ ପାମରେ

ବିପକ୍ଷ ବିନାଶ ପାଇଁ କରିଅଛୁ ପଣ
କାଲି ନ ମାରିବେ ନିଶ୍ଚେ ହୋଇବ ଦହନ ।
ଏହିହେତୁ ନିବେଦୁଛୁଁ ଶୁଣ ଗଙ୍ଗାଧର
ଜୟଦ୍ରଥେ ଜୟ ପାର୍ଥ କରିବ ସମର ।
ଶଙ୍କର ବୋଇଲେ ହରି ଶୁଣ ସାବଧାନେ
ଅର୍ଜୁନ ବିଜୟୀ ହେବ ଜିଣି ଶତ୍ରୁଗଣେ ।
ତାହାର ସହାୟ ମୁହିଁ ହୋଇବଇଁ ରଣେ
ନିଶ୍ଚେ ନିଧନ କରିବ କାଲି କୁରୁଗଣେ ।
ପୁଣି ବନ୍ଦନା କରିଣ ଶଙ୍କର ଚରଣ
କଲେ ଶ୍ରୀକୃଷ୍ଣ ଅର୍ଜୁନ ବହୁତ ସ୍ତବନ ।
ପ୍ରସନ୍ନ ବୋଇଲେ ଶୁଣ କୃଷ୍ଣ ଧନଞ୍ଜୟ
ମୋହବରେ କର ଯାଇ ଶତ୍ରୁକୁଳ କ୍ଷୟ ।
ଈଶ୍ୱର ପାଶରୁ ବର ପାଇ କୃଷ୍ଣାର୍ଜୁନ
ହେଲେ ହୃଷ୍ଟ ଦୀନ ଯଥା ପାଏ ବହୁଧନ ।
ସେହିପରି ମହାନନ୍ଦେ ପ୍ରଫୁଲ୍ଲ ଅନ୍ତରେ
ନମସ୍କାର କରି ଦୁହେଁ ଶଙ୍କର ଶଙ୍କରେ ।
ବିଦାୟ ହୋଇ ପ୍ରବେଶ ହେଲେ ନିଜପୁରେ
କେ ନ ଜାଣେ ରଥ ଅଶ୍ୱ ରଖି କେଉଁଠାରେ
ତୃତୀୟ ପ୍ରହର ହୁଁ ହୋଇଥିଲା ନିଶି
ଅର୍ଜୁନଙ୍କୁ ଶୁଆଇଣ ଦେବ ବ୍ରହ୍ମରଶି ।
ନନ୍ଦିଘୋଷ ରଥେ ଚାରି ଅଶ୍ୱଙ୍କୁ ସେ ଯୋଚି
ଦାରୁକକୁ ରଖାଇଣ ଦ୍ୱାରେ ଶିଖିବନ୍ଦି ।
ବୋଇଲେ ଅର୍ଜୁନ ବ୍ୟସ୍ତଅଛୁ ପୁଣ କ୍ରୋଧେ
ନ ପୁଣ ସକାଳେ ଉଠି ସ୍ନାନ ଯାଏ ଯୁଦ୍ଧେ ।
ବାହାର ହୋଇଲେ ତୁମ୍ଭେ ବସାଇଣ ରଥେ
ଧୀରରେ ବାହିବ ସଙ୍ଗ ସାହିବା ପର୍ଯ୍ୟନ୍ତେ ।
ଚକ୍ରମ୍ବରେ ପ୍ରବେଶ ହେବ ବ୍ୟୂହ ଦ୍ୱାରେ
ମୁହିଁ ପ୍ରବେଶିଲେ ସଙ୍ଗେ ପଶିବା ସମରେ ।
ଭୀମସେନ ନକୁଳ ଯେ ସହଦେବ ତିନି
ବଂଶୀଦ୍ୱାରେ ରହିବେ ନିଜବଳ ସେନ ।
ଏହା କହି ଗରୁଡ଼ରେ ବସି ଜଗନ୍ନାଥ
ଦ୍ୱାରକା ଭୁବନେ ଯାଇ ହେଲେ ଉପସ୍ଥିତ ।
ରୁକ୍ମିଣୀ ଯେ ଜାମ୍ବବତୀ ଆଉ ସତ୍ୟଭାମା
ଅର୍ଘ୍ୟ ଦେଇ ପ୍ରଣମିତ ହେଲେ ସର୍ବବାମା ।
କହିଲେ କିପାଁ ବିଳମ୍ବ ହେଲା ଆଜ ସତ
ଜଳଧର ବ୍ୟୂହ କଥା କହିଲେ ଶ୍ରୀପତି ।

ପାର୍ଥେ ନେଇ ଜଳଧର ବ୍ୟୂହେ ଗଲ ରଣେ
ଚକ୍ରବ୍ୟୂହ ରଚିଲେ ଯେ ଦ୍ରୋଣଗୁରୁ ଏଣେ ।
ଛନ୍ଦି ଡଷସସ୍ତ୍ର ରଜା ମାର ଅଭିମନ୍ୟୁ
ଆହୁର କେତେ ଯେ ମଲେ ତାହା କିଏ ଗଣୁ
ତାହା ଦେଖି କହରବେ ହୋଇ ଏକମେଳ
କପଟ ଯୁଦ୍ଧ ନାଶିଲେ ସୁଭଦ୍ରାର ବାଳ ।
ବହୁତ ଗୁଣ କହନ୍ତେ ତାର ଚକ୍ରପାଣି
ରୁକ୍ମିଣୀ ଆଦି କାନ୍ଦିଲେ ସମସ୍ତ ତରୁଣୀ ।
କୃଷ୍ଣ ବୋଇଲେ ତୁମ୍ଭେ ନ ଜାଣ ଶହାବତ
କାଳିକ ଥିଲେ ଅର୍ଜୁନ ସହ ମୁଁ ମରନ୍ତ ।
ପୂର୍ବ ଏପରି ବିଧାନ ଥିଲୁ ଆମ୍ଭେ ଜାଣି
ସେହି ଦେଇ ଜାଣି ସ୍ୱର୍ଗେ ନେଲେ ବଜ୍ରପାଣି
ସ୍ୱାମୀଠାରୁ ଏହିକଥା ଶୁଣି ସର୍ବ ଯକ୍ଷ
ରୋଦନ ଚେଜଣ ସର୍ବେ ହୋଇଲେକ ଶାନ୍ତ ।
ଅହୋ କି ଦୁର୍ଦ୍ଦଶା ଥିଲା ସମସ୍ତେ କହିଲେ
ରୋଦନ ଛାଡ଼ି ସମସ୍ତେ ନିବଣି ହୋଇଲେ ।
ବିସ୍ତାର କହିଲେ ସର୍ବକଥା ଭଲଭାର
ଅରୁଣ ପ୍ରକାଶେ ନେଷହେଲା ବିଭାବରୀ
ଦେବକୀ ଯଶୋଦା ଅଭିମନ୍ୟୁ ମୃତ୍ୟୁ ଶୁଣି
ରୋଦନ କଲେ ସଜଳେ କରି ଉଚ୍ଚବାଣୀ ।
ରୋଦନ କଲେ ସମସ୍ତେ ଉଚ୍ଚ ରବ ମାରି
ସୁଭଦ୍ରା ଅଭିମନ୍ୟୁର କଷ୍ଟକୁ ସୁମରି ।
ଗୋବିନ୍ଦ ବୋଇଲେ ତହୁଁ ଶୋକଛାଡ଼ି ମାନ୍ୟେ
ସବୁ କୁଳ ଜାତହେଲେ ପଡ଼ନ୍ତି ନିଶ୍ଚୟେ ।
ପାର୍ଥସହ ଆମ୍ଭଙ୍କୁ ଯେ ପେଷିଲେ ଅମରେ
ଭାର ନିବାରଣ ଅର୍ଥେ ଜନ୍ମ ଲୁ ମହୀରେ ।
ମହାଭାରତ ଯୁଦ୍ଧ ଯେ ହୋଇଲା ଯୁଗନ୍ତେ
ପାର୍ଥ ମୋହବଶ ହେଲେ କୁଟୁମ୍ବ ଦେଖନ୍ତେ
ବୋଇଲେ ସେ ଭୂରିଶ୍ରବା ଶାନ୍ତନୁ ମୋର ଅଜା
ଦ୍ରୋଣ ମୋର ଗୁରୁ ମାମୁଁ ଶଲ୍ୟ ମହାରାଜା ।
କର୍ଣ୍ଣ ମୋର ଜ୍ୟେଷ୍ଠଭ୍ରାତ ଭାଇ ଅଶ୍ୱତ୍ଥାମା
ଶକୁନି ମୋର ମାତୁଳ ଗୁରୁ କୃତବର୍ମା ।
ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ନନ୍ଦନ ଯେ ଶତେ
ଜ୍ୟେଷ୍ଠ କନିଷ୍ଠ ହୋଇଣ ସୋଦର ସମସ୍ତେ ।
ସଂଗ୍ରାମ କରି ମାରିବ କାହାକୁ ମୁଁ ରଣେ
ଏହା ଦେଖି ଚିନ୍ତା କଲେ ସ୍ୱର୍ଗେ ଦେବଗଣେ ।

ଖଳଙ୍କୁ ଡାକ ଦେଖିଲେ ଚତୁର ଆନନ୍ଦ
କୌରବ ପାଣ୍ଡବ ଭୁଞ୍ଜ କରି ଭଲ ଭଲ ।
ଅଭିମନ୍ୟୁ ପଡ଼ିବାରୁ ପାର୍ଥ ହୋଇ କ୍ରୋଧ
ସୂତକଷ୍ଟେ କୌରବଙ୍କୁ କରିବ ନିରୋଧ ।
ଗୋବନ୍ଦ ବୋଇଲେ ମାଭ ନ କର ଶୋଚନା
ସବୁ ନବାରଣେ କୃଷ୍ଣ ଦେବଙ୍କର ସିନା
ତୁମ୍ଭେ ଏତେ ଶୋଭ କଲେ ହୋଇବ ବା କସ
ମର୍ତ୍ତ୍ୟେ ଦେବ ଜନ୍ମି ନଧ ହୁଅନ୍ତି ବିନାଶ ।
ଯେଉଁ ବ୍ରହ୍ମର ମାୟାରେ ସର୍ବ ଅଛି ଲୁବ୍ଧ
ସମସ୍ତଙ୍କୁ ଶାନ୍ତ କରେ ସେହି କୃଷ୍ଣବୁଦ୍ଧ ।
ଏହିପରି କହୁଁ କହୁଁ ରାତି ଶେଷ ହେଲା
ପୂର୍ବ ଆକାଶ ଲୋହିତ ବରଣ ବହିଲା ।
ଏ ସମୟେ ଗରୁଡ଼ରେ ବସି ଜଗନ୍ନାଥ
ସଇତେ ଯାଇଁ ପ୍ରବେଶ ହେଲେ ଇନ୍ଦ୍ରପ୍ରସ୍ଥ ।
ପାଣ୍ଡବଙ୍କୁ ସଙ୍ଗେ ନେଇ ଯମୁନାରେ ପଶି
ସ୍ନାନସାରି ଆବାସରେ ପ୍ରବେଶିଲେ ଆସି ।
ଯେ ବଧିରେ ନିତ୍ୟକର୍ମ ସାରି ଦାମୋଦର
ନନ୍ଦଘୋଷ ରଥେ ଚଢ଼ି ଯୁଦ୍ଧେ ଆଗୁସାର ।
ଶଙ୍ଖ ଶ୍ୱେତ ଘୋଷିର ଯେ କାମପାଳ ହସ୍ତ
କପିକେତନ ଧ୍ୱଜରେ ମାରୁତ ତନୟ ।
ପାଣ୍ଡବସୁନ୍ଦର ପାର୍ଥ ନିତ୍ୟକର୍ମ ସାରି
ଶତେସହସ୍ର ପ୍ରଣମିଲେ ଗଗନ ବିହାରୀ ।
ଜମ୍ବୁ ଜମ୍ବୁ ମାରତନ୍ତି ଜମ୍ବୁ କୁ ବରଷି
ନବକୋଟି ପୃଥିବୀର ତୁମ୍ଭ ଦେବ ସୃଷ୍ଟି ।
ମହାଉଦ୍ଧବ ତୋହର ଯେ କୋଣାର୍କ ତୀର୍ଥ
ମହୋଦଧି ଅଗ୍ନି କୋଣେ ହୋଇଛି ସ୍ଥାପିତ
ମାଡ଼ିବସି ଅର୍କ ଦୈତ୍ୟ ନାଶିଲୁ ସେଠାରେ
ତେଣୁକରି ଯେ କୋଣାର୍କ ନାମ ହେଲା ତାର
ପୃଥ୍ୱୀ ଈଶାନ୍ୟେ ଉଦୟ ନାମେ ଅଛି ଗିରି
ଉଦୟ କାଳରେ ଅସ୍ତ ପ୍ରଦକ୍ଷିଣ କରି ।
ନବଦ୍ୱୀପ ସପ୍ତସିନ୍ଧୁ ପରେ ତୁମ୍ଭ ଭ୍ରମି
ଜନଶେଷେ ପଶ୍ଚିମକୁ ଯାଉ ଦେବ ସ୍ୱାମି ।
ପଞ୍ଚଲକ୍ଷ ଯୋଜନରେ ତୋର ତେଜକାନ୍ତି
ସେହି ତେଜ କଣାମାନ ଜୀବଜନ୍ତୁ ପାନ୍ତି ।
ସ୍ୱାମୀ ମହାରଶ୍ମି ତୋର କେ ପାରିବ ସହି
କୃପାକରି ସମସ୍ତଙ୍କୁ ପାଳୁଅଛୁ ତୁହି ।

ସପ୍ତଅଶ୍ୱ ରଥେ ବସୁ ଉଜ୍ଜ୍ୱଳ ତୋ ତନୁ
ସମସ୍ତେ ତୋତେ ପୂଜନ୍ତି ତୋର ନାମ ଭାନୁ ।
ଅନନ୍ତ ପୟୋଧି ଜମ୍ବୁ ଜମ୍ବୁ ତୁ ମାର୍ତ୍ତଣ୍ଡ
ତୋର ପାଦତଳେ ନବକୋଟି ଯେ ବ୍ରହ୍ମାଣ୍ଡ ।
ଅଣାକାର ପୁରୁଷ ତୁ ଦେବ ଚନ୍ତାମଣି
ଘୋରତମ ନାଶ କରେ ଦେବ ଦିନମଣି ।
ତୋ ମହିମା କ ବର୍ଣ୍ଣିବ ନରଦେହ ଘେନି
କାଳଦଣ୍ଡ ଭସ୍ମକୁ ତୁ ଉଦ୍ଧର ହେ ସ୍ୱାମି ।
କସ୍ତୁଭର ଚନ୍ତାମଣି ରତନାସମ୍ପୂର୍ଣ
ମୋହର ପ୍ରତିଜ୍ଞା ପ୍ରଭୁ କରିବ ପୂରଣ ।
ଜମ୍ବୁ ତୁ ଅପରାଜିତା ଅନନ୍ତ ବିରାଜ
ହିରଣ୍ମୟ ଭାବନା ତୋ ସହସ୍ରେକ ଭୁଜ ।
ବାଳଅର୍କ ପରି ଶୋଭା ତନୁ ବଳେ ତୋର
ଦେବଗଣେ ରଖୁ ଦୈତ୍ୟ କରଣ ସଂହାର ।
ଶ୍ରୀହସ୍ତରେ ଶୋଭାକର ସକଳ ଆୟୁଧ
ବସୁଧା କମ୍ପିଲେ ଦୈତ୍ୟକୁଳେ କଲୁ ଯୁଦ୍ଧ ।
ଅକାଳ ଅକାମ ତୋର ଅନ୍ଧକାର କାୟା
ଡାକମାରଳ ଯୋଜନ ଭ୍ରମୁ ମହାମାୟା ।
ପ୍ରଥମରେ ଚଣ୍ଡମୁଣ୍ଡ ବିନାଶ କରିଲୁ
ଦ୍ୱିତୀୟେ ଶମ୍ଭୁ ନିଶମ୍ଭୁ ଜୀବନ ନେଇଲୁ ।
ଗୁଣ୍ଡ ବଧି ତୃତୀୟେ ଚତୁର୍ଥେ ଦୈତ୍ୟମାନେ
ବିନାଶି ଦେବଗଣଙ୍କୁ ତାରିଲୁ ନିସ୍ତନେ ।
ପଞ୍ଚମରେ ରାଜବଣ୍ଟ ଘଟେ ରକ୍ତବୀର୍ଯ୍ୟ
ଅଗ୍ନିସମ ମୂର୍ତ୍ତି ଧରି କରିଲୁ ବହ୍ନିହ୍ୟ ।
ସପ୍ତମରେ ବଧିକଲୁ ଅଷ୍ଟମେ କାଳଦକ୍ଷ
ନବମେ ଉଷ୍ମର ଅନ୍ଧକ ଯେ ବକ୍ରପାକ୍ଷ ।
ଧୂମ୍ରଲୋଚନ କୋଟିଏ କ୍ଷୌଣୀ ଏହାକୁଳେ
ରକ୍ତର ନଦୀ ବହିଲା ମେଷା ଯୁଦ୍ଧକାଳେ ।
ତିନି ଯୋଜନ ଉସ୍ରଗ କଣସ୍ତ ଯେ ଗିରି
ତା ପରେ କାଳାନ୍ତ ବଟ ଭଇ ପୁଣ ସ୍ଥିର ।
ସେ ବଟ ଉପରେ ଦୈତ୍ୟ କଣ୍ଠାସୁର ବସି
ଉର୍ଦ୍ଧ୍ୱମୁଖେ ପିଉଥିଲା ରକ୍ତନଦୀ ଶୋଷି ।
ତାହା ଜାଣିପାରି ମାତ ତହିଁ ପ୍ରବେଶିଲୁ
ଖଡ଼ଗ ଘାତରେ ତାର ଜୀବନ ନେଇଲୁ ।
ଦଣ୍ଡଭଗ୍ନ ଦେଖି ବଟେ ଧାଇଁଲା ମହିଷା
ଏକାଦଶ ଦିନେ ମୃତ୍ୟୁ କଲକ ସେ ଆଶା ।

ସୋଡଶ ବର୍ଷ ଏ ମଲେ କେହୁ ନାହିଁ ଲେଖା
ତା କୁଟୁମ୍ବ ନଶୋଧନେ ଦେଖ ସେ ନଭେଷ।
ମହାମହେଶ୍ୱର ତାର ମେରୁତୁଲ୍ୟ କାୟ
ସପ୍ତଦ୍ୱୀପ ପୃଥିବୀ ନ ଶୋଟିଲା ତା ଦେହ ।
ଅଠାର ହଜାର କର ଧାଏଁ ମହାବଳୀ
ଲକ୍ଷ ଶିଖର ଶୃଙ୍ଗ ପ୍ରଭାଜନ ଟାଳି ।
ଧାଇଁବାରେ ଅଦୃଶ୍ୟ ହୁ ହେଲେ ମହାମାୟା
ଶୂନ୍ୟେ ଚୋହନ୍ୟହେଲେ ଯେତେକ ଜଗତର ଗ୍ରାୟା
ହଜାର ଚର୍ମ୍ମକଟାର ସେନ ଅଲ୍ପକ୍ଷେ
ମହିଷା ବକ୍ଷେ ମାରିଲ ଆସିଣ ପ୍ରତ୍ୟକ୍ଷେ ।
କୁଠାରକ ପ୍ରହାରନେ ହେଲା ବେନିଖଣ୍ଡ
ଦୁଇ ଚରଣେ ମର୍ଦ୍ଦିଲେ ତାର ଗଣ୍ଡିମୁଣ୍ଡ ।
ଯହୁଁ ହାତ ଦୋହଲା ସେ ମହିଷାର ମୂର୍ତ୍ତି
ନିଜ ଶରୀରୁ ରୂପେଣ କାଢିଲେ ଉତ୍ପତ୍ତି ।
ବାମକରେ କୁଠାର ସେ ଡାହାଣରେ ପାଶୀ
ବାଳଅର୍କ ପ୍ରାୟ ଚକ୍ଷୁ ବର୍ଣ୍ଣ ପରକାଶି ।
ଉଠ ଉଠ ମଠ ମଠ କରେ ଦନ୍ତପାଟି
ଲହ ଲହ ଜିହ୍ୱା ତାର ଭ୍ରମେ କାଳଦୃଷ୍ଟି ।
ଅଜଗର ବଦନ ତା ଦିଶେ ବକ୍ଷସ୍ଥଳ
ପଞ୍ଚାଶ ଯୋଜନ ଉଚ୍ଚ ଦିଶେ ତା ଶରୀର ।
ଦେବୀଙ୍କ କେଳି ଉଡି ଯାଏ ଅସୁରର କାୟେ
ଦେଖିଣ ଶୂଳ ମାରିଲେ ସେହି ମହାମାୟେ ।
ପଞ୍ଚକୋଟି ଯୋଗ୍ନୀ ସେନ ମାରିଲେ ତ୍ରିଶୂଳ
ଅସୁରର ନାସା ଛେଦି ବାନ୍ଧିଲେ ସେ ବାଳ ।
ଦେବୀଙ୍କ ବାହନ ନବସାଗର ସେ ବ୍ୟାଘ୍ର
ବେଢ଼ି ଆକର୍ଷି ଧରିଲେ ଯାଇଁ କଟିଭାଗ ।
ଦୁର୍ଗାର ବାହନ ସିଂହ ବଳୀ ମହାବଳ
ଆକର୍ଷି କାମୁଡିଲା ସେ ମହିଷାର ଗଳ ।
ଚୌଷଠି ଡାକିନୀ ନବକୋଟି କାତ୍ୟାୟିନୀ
ପାଞ୍ଚପଦ୍ମ ଯୋଗ୍ନୀ ଶତେଭପଦ୍ମ ପିଶାଚୁଣୀ ।
ଚନ୍ଦ୍ରାୟଣୀ ମୂରତି ସେ ଚଉଷଠି କୋଟି
ବ୍ରହ୍ମାୟଣୀ ମୂରତି ସେ ପାଞ୍ଚପଦ୍ମ ହେଟି ।
ନାରାୟଣୀ ମୂରତି ସେ ଛପନକୋଟି ଦେବୀ
ବ୍ୟାଘ୍ରମୁଖୀ ସାତପଦ୍ମ ଘଡ଼େଇ ଭୈରବୀ ।
ଜନପଦ୍ମ ଚଣ୍ଡୀଗୁଣୀ ଉପୁଙ୍କର କାୟେ
ଦୁର୍ଗାର କୁଳେ ଏତେକ ହୋଇଛନ୍ତି ସାହା ।

ଉଗ୍ରତାରା ସ୍ୱୟଂଭେଶ୍ୱରୀ ସ୍ୱଚେଷ୍ଟା ବାସେଳୀ
ମାହେଶ୍ୱରୀ ବାଳକା ଯେ ଭଙ୍କାଳୀ ବେତାଳୀ
ଅଶ୍ୱମୁଖୀ ଜମ୍ବୁକୀ ଯେ ସାତକୋଟି କାଳୀ
ମନ୍ଦାରବଦନୀ ଦେବୀ ଆଉ ରଙ୍କିଣୀ ।
ଏତେକ ଦେବୀ ସଙ୍ଗରେ ସେନ କୃତ୍ୟହଳେ
ଯେ ଯାହାର ପରାକ୍ରମେ ମ ଡ଼ିଛନ୍ତି ଶୃଳେ ।
ବାଣରେ ମହିଷ ଉଲଟାଇ ସେମାନେ
ଝାଡ଼ିକ୍ଷତେ ଉଠିଗଲେ ଗଗନକୁ ବଳୀ ।
କେ ଶତ ଯୋଜନ କେହୁ ସହସ୍ର ଯୋଜନେ
କେ ସାଗରେ ପଡ଼ିଲେ କେ ପର୍ବତ କାନନେ
କା ଚରଣ ଭାଙ୍ଗିଲା କା ହାତ ଛିଙ୍ଗିଗଲା
ମୁଣ୍ଡ ମୋଡ଼ହୋଇ କାର ମୁଖ ବଙ୍କାହେଲା ।
ହେଲ ବଙ୍କାହେଲା କାର କୁଜହେଲା ପିଠି
ହେଠମୁଣ୍ଡ ହୋଇ କାର ଆଖି ଗଲା ଫୁଟି ।
ସେ ଯେଉଁଠାରେ ପଡ଼ିଲେ ସେ ତହିଁ ରହିଲେ
ତାକଶରୁ ସେମାନେ ଯୁଦ୍ଧକୁ ଯାଇଲେ ।
ଏପରି ଘୋର ଚରିତ କହୁ ନ ସରଇ
କୃଷ୍ଣର ଅଂଶ ସମାନେ ଅନ୍ୟ କେହୁ ନୋହି ।
କାଏ କାହିଁ ରହ ବକ୍ରମୁଖୀ ସେ ହୋଇଛ
ମହୀରେ ତା ଅର୍ଦ୍ଧବେଦ ଘୋଡ ହୋଇଅଛୁ ।
ସିଦ୍ଧେଶ୍ୱରୀ ନାମେ ପୂଜା ପାଉଅଛୁ କାହିଁ
କୃଷ୍ଣର ମହିମା ମାର କହୁ ନ ସରଇ ।
ଏରୂପେ ଘୋଡର ସୈନ୍ୟ ହୋଇବାରୁ ଭଙ୍ଗ
ପୁଣି ମହିମା ମାତିଲା କରି ରଣରଙ୍ଗ ।
ତାହାର ପ୍ରତାପେ ଗଣ୍ଡି ଉଠେ ମହୀସ୍ଥଳୀ
ପୁଣି ଶୂଳମାରି ଦେବୀ ତ ପାରି ସମ୍ଭାଳି ।
ହସ ହରା ହୋଇ ବୃନ୍ଦେ ବସୁଛଲ ମନ
ଗୁରୁତର ମୈଷାସୁରକୁ ଯଉ ଏ ଗଗନ ।
ଖାଉ ଦେବତାମାନଙ୍କୁ ନ ଥାନ୍ତି ସ୍ୱର୍ଗର
ଏମନ୍ତ କର ଯେବେ ସେ ଦେଇଛନ୍ତି ବର ।
ଏପରି କୃଷ୍ଣ ଚମନ ଜାଣି ଦେବତାଏ
ଭାବୁଥି ହୋଇ ବୋଇଲେ ଶୁଣ ଆହେ ମାଏ
ତୁ ଯେବେ ଏ ମହିଷାକୁ ଗୁଡ଼ିବୁ ତୋ ମାତ
କୋଟିକଳ୍ପ ଭକ୍ତିବଟି ଜାନକର ଗାଥ ।
ତେତିଶକୋଟି ଦେବଙ୍କୁ ଭକ୍ଷିବ ଏକ୍ଷଣି
ଦେବସ୍ତ୍ରୀମାନଙ୍କୁ ସେ ନ ରଖିବ ପୁଣି ।

ଦେବଙ୍କର ବଳବୁଦ୍ଧି ଅସୁର ପ୍ରତାପ
ଉଭୟ ସଙ୍ଗଟେ ପଡ଼ି ପୁଣି ହେଲେ କୋପ ।
ସଗେ ବୃଦ୍ଧି ନ ସ୍ତୁରଇ ବ୍ରହ୍ମି କୋପାନଳେ
ଶରୀରରୁ ଜାତ କଲେ ସେ ସର୍ବମଙ୍ଗଳେ
ସେହି ଦେବୀ ପଦ୍ମାସନା ସ୍ୱରୂପ ଅଭୟା
କୁଙ୍କୁମବର୍ଣ୍ଣ ଝଟଇ ତାହାଙ୍କର କାୟା ।
ସେହି ପଦ୍ମାସନୀ ଦେବୀ କହିଲେ ବ୍ରହ୍ମଙ୍କୁ
ତୁହି ମାତା ନ ଛାଡ଼ ଯେ ମହିଷ ସୁରକୁ ।
ଏହାର ବଧାର୍ଥେ ତୋତେ ଦେବେ କଲେ ଜାତ
ଆପଦ ଖଣ୍ଡିଣ ତୁହି କର ତାଙ୍କୁ ଶାନ୍ତ ।
ପୂର୍ବରେ ଏହି ମହିଷା ତୋଷନ୍ତେ ଧାତାଙ୍କୁ
ଦୁରନ୍ତ ବର ସେ ଦେଇଅଛନ୍ତି ତାହାକୁ ।
ଦୈତ୍ୟଙ୍କ ହସ୍ତୁ ବଧନ୍ତ ଜାଣି ସର୍ବକାଳେ
ପୁରୁଷେ ବଧ ନୋହିବ ମାଗିଲା ସେ କାଳେ ।
ଯେବଣ ସ୍ତ୍ରୀଙ୍କର ହସ୍ତେ ମୁଁ ବଧ ହୋଇବି
ଜାନୁ ମର୍ମସ୍ଥାନ ତାର ନୟନେ ଦେଖିବି ।
ଏସନ ବର ଧାତାଙ୍କୁ ମାଗିଅଛି ପୂର୍ବେ
ତୁ ମାତା ଉଲଗ୍ନ ହୋଇ ବଧକର ଏବେ ।
ଏସନକ ବାକ୍ୟ ଯହୁଁ ମଙ୍ଗଳା କହିଲେ
ଅବସର ହେଲେ ଦେବୀ ତାର ଯୁଦ୍ଧକାଳେ ।
କୁଷ୍ମାଣ୍ଡା ରୂପରେ ତୁମ୍ଭେ ବ୍ରହ୍ମାଣ୍ଡକୁ ଘୋଟି
ପ୍ରକାଶିଲ ମହାବିଶ୍ୱରୂପ ନବସୃଷ୍ଟି ।
ବସ୍ତ୍ରହୀନେ ସ୍ତନ ଜାନୁ ତୋହର ଦିଶିଲା
ତାହାକୁ ଦର୍ଶିଣ ଦୈତ୍ୟ ମୋହେ ବଶହେଲା ।
ଉଦକୁ ଦେଖି ସାନନ୍ଦ ହୋଇଲା ଦୁରାତ୍ମା
ବୋଇଲା ତ୍ରୈଲୋକ୍ୟେ ଧନ୍ୟ ତୁହି ଏକବାମା
ତ୍ରୈଲୋକେ ଅପୂର୍ବ ଅଟେ ଯେଉଁ ଛବି
ମୁଁ ତାହା ଦେଖିଲି ଆଜ ଜ୍ଞାନ ନେଲେ ହବ
ଯଉବନ ଦେଖି ଦୈତ୍ୟ ମୋହେ ବଶହେଲା
ପଞ୍ଚଭୂତ ଆତ୍ମା ତାର ଶରୀରୁ ଛାଡ଼ିଲା ।
ଶୂଳରେ ମାଇଲୁ ଦେବୀ ନାରାୟଣୀ ରୂପେ
ଦେବଙ୍କ ଶତ୍ରୁ ମାରିଣ କୁଷ୍ମାଣ୍ଡା ସ୍ୱରୂପେ ।
ବୋଇଲୁ ଦୈତ୍ୟଙ୍କୁ ଜର୍ପା ଦେବେ ବ୍ୟନ୍ତକର
ଦେବତାଙ୍କୁ ନ ରଖିବ ଆଜ ଏ ସ୍ୱର୍ଗର ।
ମହାରସ୍ୱଙ୍କର ରୂପ ତୋହର ଦେଖିଣ
ପଳାଇଲେ ଦେବତାଏ ଛାଡ଼ି ନିଜ ସ୍ଥାନ ।

ଦିଗପାଳମାନେ ସର୍ବେ ପଳାଇଲେ ଡରେ
ଭୟରେ ଲୁଚିଲେ ଯାଇ ସାଗର ଭିତରେ ।
ପଳାନ୍ତେ ସେ ସଦାଶିବ ଉଲଗ୍ନ ହୋଇ
ଯାଇ ନ ପାରି ତୋ ପାଶେ ନୃତ୍ୟକଲେ ରହି
ତାଙ୍କୁ ଦେଖି କ୍ରୋଧ ହେଲୁ ତୁହି ଜଗନ୍ନାଥ
ଲଲାଟ ଭୃଗଟ ହୋଇ କରନ୍ତି ସେ ନୃତ୍ୟ ।
ତୁହି ବୋଇଲୁ ହରଙ୍କୁ ଭୋ ଇଷ୍ଟ ସ୍ମର
ନୋହିଲେ ଏକ୍ଷଣି ତୋତେ କରିବି ଆହାର ।
ଈଶ୍ୱର ବୋଇଲେ ତୁହି ମୋର ପିତାମାତା
ତୋତେ ସୁମରୁଛି ମୁହିଁ ତୁ ଇଷ୍ଟଦେବତା ।
ଆପଦ ଅଣ୍ଡିମା ଜଗନ୍ମାତା ଅଟୁ ତୁହି
ମୋର ଅବା ରଖ ତୋର ତହୁଁ ଆନ ନାହିଁ ।
କାର୍ପଣ୍ୟ ବଚନ ଶୁଣି ତୋଷହେଲୁ ମାୟେ
ବୋଇଲୁ ଆଜ ତୁ ଶିବ ରହିଥା ନିର୍ଭୟେ ।
ବର ମାଗ ତୋତେ ମୁହିଁ ହୋଇଲି ପ୍ରସନ୍ନ
ଯେମନ୍ତ ଇଚ୍ଛା ତୋହର ବର ମାଗି ଘେନ ।
ଦୁଇ କର ଯୋଡ଼ି ପୁଣି ବୋଇଲେ ଶଙ୍କର
ହେ ଦୁର୍ଗା ହୋଇବୁ ତୁହି ଭାର୍ଯ୍ୟା ମୋହର ।
ଦୁର୍ଗା ବୋଇଲେ ହୋଇଛି ମୁହିଁ ଯେ ଉଲଗ୍ନ
ଜଗତ ତୋ ଭାର୍ଯ୍ୟା ହେବ ଭାବ ମୋର ଆଗ
ଏପରି ଶୁଣନ୍ତେ ହର ଧରି ତୋର ହସ୍ତ
ଆଗ୍ରହରେ ବସାଇଲେ ନେଇ ହୃଦଗତ ।
ତୋର ଅଙ୍ଗ ଘୋଡ଼ାଇଲେ ଜଟା ଦେଇ ହର
ଏକ ଆସନେ ବସିଲ ଉମା ମହେଶ୍ୱର ।
ତ୍ରିଦଶ ଦେବେ ଆସିଣ ସମ୍ମୁଖରେ ମିଳିଲେ
ସ୍ତୁତି କରିଣ ସମସ୍ତେ ପାଦରେ ବନ୍ଦିଲେ
ଜୟ ଆପଦ ଖଣ୍ଡିମା ତ୍ରିଲୋକ ତାରିଣୀ
ସୁରସିଦ୍ଧ ମୁନିଗଣ ତୋ ପାଦେ ଦଇମା ।
ଅଭୟା ମାହେଶ୍ୱରୀ ଗୋ ତୁ ସର୍ବମଙ୍ଗଳେ
ତୋ ଚରଣ ଆଶ୍ରୟଇ ମୁହିଁ ସର୍ବକାଳେ ।
ଆଦ ଅବତାରେ ମାତା ତୁହି ଖେଳୁ ଖେଳୁ
ଗଣ୍ଡୁଷକେ ସିନ୍ଧୁଜଳ କରିଦେଲୁ ଚଳୁ ।
ଦୁର୍ଦ୍ଦାନ୍ତ ଅସୁର ନାଶକରି କଉଶଳେ
ଦେବଙ୍କ କଷ୍ଟ ଖଣ୍ଡିଲୁ ତୁହି ବୁଦ୍ଧିବଳେ ।
ଦୁର୍ଗତିରୁ ତାରିବାରୁ ତୋ ନାମ ତାରିଣୀ
ମହିଷ ନାଶନ୍ତେ ନାମ ମହିଷମର୍ଦ୍ଦିନୀ ।

ମଙ୍ଗଳବାରେ ତୁମ୍ଭଙ୍କୁ ଯେ ଜନ ଆରାଧି
ପରମ ମଙ୍ଗଳ ହୁଏ ସର୍ବକାର୍ଯ୍ୟ ସିଦ୍ଧି ।
ବରୁଣ କୁବେର ଚନ୍ଦ୍ର ସୂର୍ଯ୍ୟ ହର ବ୍ରହ୍ମା
ବର୍ଣ୍ଣି ନ ପାରଲେ କେହ୍ନେ ତୋହର ମହିମା ।
ମୁଁ ଛାର ମାନବ ମୋର କସ ଅବା ବୁଦ୍ଧି
ପ୍ରସନ୍ନ ହୋଇ ସକଳ କାର୍ଯ୍ୟକର ସିଦ୍ଧି ।
ଜନ୍ମେ ଜନ୍ମେ ସେବଇ ମୁଁ ତୋର ପାଦପଦ୍ମେ
ଲଭିବ ପରମ ଗତି ତୋହର ପ୍ରସାଦେ ।
ମହୋଦଧିର ଉତ୍ତରେ ଜମ୍ବୁଦ୍ୱୀପ ମହୀ
ଭାରତ ଖଣ୍ଡରେ ଓଡ୍ରରାଷ୍ଟ୍ର ଅଛି ରହି ।
ତା ମଧ୍ୟ ପ୍ରଦେଶେକ ଅଛି ନାମ ଯାଜପୁର
ବିରଜା ନାମରେ ପୂଜା ପାଅ ମା ସେଠାର ।
ସମ୍ବଲପୁରରେ ସମଲେଇ ବୋଲାଇ
ସେଠାରେ ଲଭୁଣ ମାତ ନାନା ପୂଜାପାଇ ।
ଏହିରୂପେ ପୂଜାପାଇ ରହି କେତେ ସ୍ଥାନ
କି ଶକ୍ତି ମୋହର ମାତ ତୋ ଗୁଣ ବର୍ଣ୍ଣନେ ।
ବଙ୍ଗର ଈଶାନ କୋଣେ କ୍ଷୀରଗଙ୍ଗା ନଦୀ
ଆବର ଚକ୍ରପୂଜା ଆସନ୍ତ ଏ ଭେଦ ।
ଉଦୟ ମାହେଶ୍ୱରୀ ତୁ ସେହି ନଦୀକୂଳେ
ଅଭୟା ବରଦାୟିନୀ ଶ୍ରୀଚଣ୍ଡୀ ଶାରଳେ ।
ଋଷିଶାପେ ଭକ୍ତପାଳେ ହେଲୁ ତୁ ବୃଷତି
ମେ ହଠାରେ କୃପାକର ମାତ ଭଗବତୀ ।
ମହାଭାରତ ଚରିତ ମୁହିଁ ଗୀତ ଯୋଗେ
କହନ୍ତେ ମୋତେ ବଶିଲ ତୋର ଅନୁରାଗେ
ଏ ଦ୍ରୋଣପର୍ବ ଶକଟ ବ୍ୟୂହ କଥାମାନ
କହିବା ପାଇଁ ମୋହର ବଳାଅଛି ମନ ।
ଜନ୍ମରୁ ମୂରୁଖ ମୁହିଁ ନ ଜାଣେ ଅକ୍ଷର
ଦେଖିନାହିଁ ଶୁଣିନାହିଁ ଲେଖେ କି ପ୍ରକାର ।
ତୋ ଅଭୟ ପାଦକୁ ମୁଁ ସେବୁଅଛି ନିତ୍ୟେ
ମୋଠାରେ ପ୍ରସନ୍ନ ହୁଅ ମାତ ଦୟାଚିତ୍ତେ ।
ଆହେ ବୁଧଜନେ ମୁହିଁ ନୁହଇ ପଣ୍ଡିତ
ଶ୍ରୀକୃଷ୍ଣ ନାମକୁ ଲୟ କରିଛି ମୋ ଚିତ୍ତ ।
ତାହାଙ୍କ ଦୟାରୁ ମୁହିଁ ଲେଖୁଅଛି ଗୀତେ
ମୂଢମାନେ ଶିଖୁଛନ୍ତି ସ୍ୱାଙ୍କ ଅନୁବ୍ରତେ ।
ବ୍ରହ୍ମଦେବ ଘଟଋଷି ସୂତ ମୁନିବର
ଗଣ୍ଡୂଷ କରିଥିଲେ ଯେ ସପ୍ତସିନ୍ଧୁ ନୀର ।

ଶ୍ରୀଚଣ୍ଡୀଶାରଳା ପାଦେ ସର୍ବଦା ବଇମା
କହଇ ଶାରଳା ଦାସ ଗ୍ରନ୍ଥ ଶୂଦ୍ରମୁନି ।

---

## ଦ୍ରୋଣଙ୍କ ଶକଟବ୍ୟୂହ ନିର୍ମାଣ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଚକ୍ରବ୍ୟୂହ ଯୁଦ୍ଧେ ଯହିଁ ମଲା ଅଭିମନ୍ୟୁ ।
କଠୋର ପ୍ରତିଜ୍ଞା କଲା ବୀର ଫାଲଗୁନ
ଇନ୍ଦ୍ରପ୍ରସ୍ଥ ନଗ୍ରେ ହେଲା ଏହି କଥା ଧ୍ୱନି !
ମାନଗୋବନ୍ଦର ଥିଲେ ଗୁପ୍ତଚରଗଣ
ଶୀଘ୍ରଭାବେ ଜଣାଇଲେ କୁରୁଥାଟେ ଜାଣ ।
ବୋଲେ ଅବଧାନ ହେଉ ମାନଚକ୍ରବର୍ତ୍ତୀ
ଜୟଦ୍ରଥ ନାମରେ ଯେ ହେଲା ଅପଖ୍ୟାତି ।
କଠୋର ପ୍ରତିଜ୍ଞା କଲା ବୀର ସବ୍ୟସାଚୀ
ଜୟଦ୍ରଥ କାଲି ଆଜ ନ ପାରିବ ବଞ୍ଚି ।
ଉପର ମୁଖ ପାଇଣ ବାରତା ଏମନ୍ତ
ଦୁର୍ଯ୍ୟୋଧନ ସଙ୍ଗତରେ ସେହି ଜୟଦ୍ରଥ ।
ଦୁଃଶାସନ ଶଲ୍ୟ ଆଉ ଶକୁନି ଯେ ଗଲେ
ଦ୍ରୋଣଙ୍କ ସମ୍ମୁଖେ ଯାଇ ସମସ୍ତେ ମିଳିଲେ ।
ବିନୟ ଭାବେ କହିଲେ ତାଙ୍କୁ କୁରୁନାଥ
ଘୋରଯୁଦ୍ଧେ ଅଭିମନ୍ୟୁ ହୋଇଲା ନିପାତ ।
ସିନ୍ଧୁରାଜା ଉଗାଳିଲା ଘୁରି ପାଣ୍ଡବଙ୍କୁ
ତେଣୁ ଅପଖ୍ୟାତି ଦେଲେ ସେ ଜୟଦ୍ରଥକୁ ।
କଠୋର ପ୍ରତିଜ୍ଞା କରିଅଛି ଅରଜୁନ
ଜୟଦ୍ରଥେ ନ ମାଇଲେ ହୋଇବ ଦହନ ।
ଅର୍ଜୁନ ଦହନ ହେଲେ କାଲି ଦିବା ଶେଷେ
ତା ବିନା ପାଣ୍ଡବେ ପ୍ରାଣ ଧରିବେ ନ ଦେଶେ
ଯେବେ ଜୟଦ୍ରଥ ପାର୍ଥ ନ ମାରିବ ରଣେ
ସେ ତ ମରିବ ତାହାର ପ୍ରତିଜ୍ଞା କାରଣେ ।
କିନ୍ତୁ କଦାପି ଶ୍ରୀକୃଷ୍ଣ ନିଶ୍ଚିନ୍ତ ନୋହିବ
ବଳରଇ ଜୟଦ୍ରଥ ରହି ନ ପାରିବ ।
ଦେବକୀସୁତ କରିବ ମାୟା ବହୁତର
ଉପାୟ କରି ଛେଦିବ ନିଶ୍ଚେ ତାର ଶିର ।
ମୋ ବଳରେ ସିନ୍ଧୁରାଜା ସମରେ ନ ଥାଉ
ଯେବେ ବଞ୍ଚିବ ଏ ରାଜ୍ୟ ଛାଡ଼ିଣ ପଳାଉ ।
ଭରଦ୍ୱାଜ ପୁତ୍ର ତୁମ୍ଭେ ରକ୍ଷା କର ଏଠି
ଯେପରି ମାରି ନ ପାରେ ତାହାକୁ କିରୀଟୀ ।

ଆଜ୍ଞାବନ୍ତ ମହାତମା ଉତ୍ତାନକ ଯୋଣୀ
ଦୁଃଶୀଳା ବିଧବା ହେଲେ ହେବ ଅପଖ୍ୟାତି
ମନ୍ତ୍ରୀ ଚିନ୍ତିଲ ମନ୍ଦ ଉପାୟ ଏହାର
ଏହି କରିଥିଲେ ଧର୍ମ ହେବ ତତ୍ପରେ ।
ଦ୍ରୋଣବୋଲେ ମାରନାହିଁ ଏହି ଅଭିମନ୍ୟୁ
ଅବୋଧେ ନ ଶିବ ପାର୍ଥ ଭେଦଣ କାରଣୁ ।
ରାଜାବୋଲେ ବନ୍ଧ ଆଜ୍ଞା ପଳାଇ ଏ ଦୂର
ଏହାକହି ଶୋଭ କଲେ କୁରୁ ଦଣ୍ଡଧର ।
ଜୟଦ୍ରଥ ପଡ଼ିଲା ଯେ ଦ୍ରୋଣଙ୍କ ପୟରେ
ବୋଲେ ଅର୍ଜୁନ ଭୟରୁ ରକ୍ଷାକର ମୋରେ ।
ଦ୍ରୋଣଗୁରୁ ରାଜାଙ୍କର ଏହି ଦୁଃଖ ଦେଖି
ଶୋକେ ଅଶ୍ରୁପୂର୍ଣ୍ଣ ହେଲା ତାଙ୍କ ବେନି ଆଖି
ଉଠାଇଲେ କୋଳକର ଭୁଜେ ଦ୍ରୋଣଗୁରୁ
ଛାଡ଼ ଏହି ଚିନ୍ତା ରାଜା କର ଶୋକକରୁ ।
କଠିନ ପ୍ରତିଜ୍ଞା କଲା ପାର ଧନଞ୍ଜୟ
କାଲି ନିଶ୍ଚେ କରିବ ମୁଁ ତା ପାଇଁ ଉପାୟ
ଖଲ ପାର୍ଥ ବେନି ଯେବେ ଆସିବେ ଶ୍ରୀହରି
ତେବେ ସୁଦ୍ଧା ଜୟଦ୍ରଥେ ନ ପାରିବେ ମାରି
କାଲି ଦେଖିବା ପାର୍ଥର କେତେ ଅଛି ଶିକ୍ଷା
ତାହାଭୟୁଁ ନିଶ୍ଚେ ତୋତେ କରିବି ମୁଁ ରକ୍ଷା
ଏରୂପେ ଦୃଢ଼ ପ୍ରତିଜ୍ଞା କଲେ ଦ୍ରୋଣଗୁରୁ
ଦେଖିବା କାଲି ସମରେ କେତୁ ତାକୁ ମାରୁ ।
କରୁଛି ପ୍ରତିଜ୍ଞା ସୂର୍ଯ୍ୟ ହେବାଯାଏ ଅସ୍ତ
ଜୟଦ୍ରଥ ନାଶେ କେହି ନୋହିବେ ସମର୍ଥ ।
ଏହାଶୁଣି ବୋଇଲ ସେ ଗାନ୍ଧାରୀର ବାଳ
ଦୃଢ଼ ଯେବେ ତୋ ପ୍ରତିଜ୍ଞା ନିଶ୍ଚୟ ତା ପାଳ ।
ଯଦି ଜୟଦ୍ରଥ କାଲି ଜନ ରକ୍ଷା ହେବ
ନିଶ୍ଚେ ଜାଣ ଦୁର୍ଯ୍ୟୋଧନ ନିଷ୍କଣ୍ଟକ ହେବ ।
ଅର୍ଜୁନ ନିଧନେ ନ ବଞ୍ଚିବ ବାସୁଦେବ
ତାଙ୍କ ବିନା ନ ବଞ୍ଚିବେ ଛାର ଯେ ପାଣ୍ଡବ ।
ଦ୍ରୋଣଙ୍କୁ ଗୁପ୍ତେ ପୁଚ୍ଛଇ କୃପ ଅଶ୍ୱତ୍ଥାମା
କପଟ ବୋଲ କରିବେ ଏହି ମହାତମା ।
ଅର୍ଜୁନ ଯେବେହି କାଲି ହୋଇବ ବନ୍ଧ୍ୟ
ତନରେ ଶିର ଛେଦିବ ନିଶ୍ଚେ ଦେବରାଜ ।
ଏତେ ବଚନ କପାଇଁ ଦୁଃଖ କୁରୁରାଜ
ଜୟଦ୍ରଥ ପଠାଇଲେ ଆସ୍ଥଙ୍କୁ କି ଲାଜ ।

ପାଣ୍ଡବଙ୍କ କୁଳେ ଏହି ବଡ଼ଇ ଅପ୍ରାପ୍ତି
ନ ଜାଣ କି ଏହାଙ୍କର ଅଛି ମନ୍ଦ ବୁଦ୍ଧି ।
ଶୁଣି ସେ ଦୁହିଁଙ୍କୁ ଗର୍ଜି ବୋଲେ ଦୁର୍ଯ୍ୟୋଧନ
ତୁମ୍ଭେମାନେ ଏହିପରି ନ କହ ବଚନ ।
ଏହି ଭରଦ୍ୱାଜ ସୁତ ଯୁଦ୍ଧେ ଜଗଜ୍ଜିତା
ବ୍ରହ୍ମ ରୁଦ୍ର ଇନ୍ଦ୍ର ହେଲେ ତହିଁ କେ ଜଣତା ।
ଦ୍ରୋଣ ବୋଲେ ଜୟଦ୍ରଥେ ଘେନିଯାଅ ରାଜା
ଯେ ଯାହାର ଦଣ୍ଡ ଘେନି କର ଯୁଦ୍ଧ ସଜ୍ଜା ।
କ୍ଷତ୍ରିୟ ବୃତ୍ତିରେ ତାହିଁ ଏସନକ ଧର୍ମ
ରଣ ଗୁଣ୍ଡି ପଳାଇଲେ ହୋଇବ ଅଧର୍ମ ।
ଦ୍ରୋଣଙ୍କ ବଚନ ଶୁଣି ସାନନ୍ଦ ନୃପତି
ବୋଇଲେ ପୃଥ୍ୱୀରେ ତୁମ୍ଭେ ଅଟ ଏକ କ୍ଷତ୍ରୀ
ନିଶ୍ଚୟ ଜନ୍ମଛି ତୁମ୍ଭେ ଭାରତ ଧଇଲେ
ତ୍ରିଲୋକ ଜିଣିପାରିବ ଇଚ୍ଛାଅଛି ଭଲେ ।
ଚଳିଲ ମାନଗୋବିନ୍ଦ ଜୟଦ୍ରଥେ ଘେନି
କୁରୁଥାଟରେ ଶୁଭିଲା ନାନାବାଦ୍ୟ ଧ୍ୱନି ।
ରଜନୀ ପ୍ରଭାତ ହୋଇ ଉଠୁଁ ଦୁଇଦଳ
ଦଣ୍ଡ ସାଜ ଦ୍ରୋଣଗୁରୁ ହୋଇଲେ ବାହାର ।
ଶକଟ ଆକାରେ ଏକ ବ୍ୟୂହ ସେ ରଚିଲା
ଦୁର୍ଗମ ମାର୍ଗ କାହାକୁ ଗୋଚର ନୋହିଲା ।
ପାଞ୍ଚଲକ୍ଷ ରଥ ଦୁଇଲକ୍ଷ ମତ୍ତହସ୍ତୀ
ତ୍ରିଂଶଲକ୍ଷ ରଥୀ ନବ ପଦ୍ମାର୍ଦ୍ଧ ପଦାତି ।
ଢୋଲ ଝମକ ମର୍ଦ୍ଦଳ ଦମା ରଣଘୋଷ
ବଜାଇ ସମ୍ଭ୍ରମେ ସୈନ୍ୟ ଯୁଦ୍ଧେ ପରବେଶ ।
ନବସାଗର ସଇନ୍ୟ ବିଶାଖରେ ହସ୍ତୀ
ତିରିଶ ସାଗର ସୈନ୍ୟ ପଦ୍ମାର୍ଦ୍ଧେ ପଦାତି ।
ଏତେକ ସୈନ୍ୟ ଘେନିଣ ସ୍ୱୟଂ ଗୁରୁଦ୍ରୋଣ
ପ୍ରଥମ ଦ୍ୱାର ଆବୋରି ରହିଲେ ଆପଣ ।
ଦଶପଦ୍ମ ରଥ ଆଉ ତ୍ରିଂଶପଦ୍ମ ହସ୍ତୀ
ପଞ୍ଚାଶ ଅର୍ବୁଦ ଅଶ୍ୱ ପାଞ୍ଚଖର୍ବ ରଥୀ ।
ଏତେକ ସୈନ୍ୟ ଘେନିଣ ଆର ଦୁଃଶାସନ
ଯାଇ ଦ୍ୱିତୀୟ ଦ୍ୱାରକୁ ରହିଲେ ଜଗିଣ ।
ଦଶପଦ୍ମ ରଥୀ ଆଉ ଯୋଦ୍ଧା ଅଗଣନ
ଅଶ୍ୱାରୋହି ପାଞ୍ଚପଦ୍ମ ସାଗର ସଇନ ।
ବଜାଇଣ ଭେରୀତୂରୀ ଝମକ ମର୍ଦ୍ଦଳ
ତୃତୀୟ ଦ୍ୱାରେ ଜଗିଲେ କୃପ ଆଉ ଶଲ୍ୟ ।

ପାଞ୍ଚଅକ୍ଷୌହିଣୀ ସୈନ୍ୟ ଘେନ ଭୂରିଶ୍ରବା
ଚତୁର୍ଥଦ୍ୱାରେ ରହିଲେ ଯେସନେ ମଘବା ।
କଳିଙ୍ଗସେନ ଆବର ଅଜମୁଖ ବୀର
ହଳାୟୁଧ ଅନନ୍ତକ ହର ଦଣ୍ଡଧର ।
ପାଞ୍ଚସହସ୍ର ରାଜା ଭୂଟଲି ସଇନ ଅନେକ
ସେନ ଆବୋରି ରହିଲେ ଅଖ ବେନ ତକ ।
ପଞ୍ଚମଦ୍ୱାରେ ରହିଲେ ଏମାନେ ଜଗିଣ
ଷଷ୍ଠଦ୍ୱାର ରକ୍ଷା କଲେ ଯେହ୍ନ ରାଜା ଶୁଣ ।
ଯମକକ ସୋମଦତ୍ତ ବାହ୍ଲିକ ଏ ଆଦ
ଆବୋରିଲେ ଅଖ ନବସହସ୍ର ଗଜଯୋଧୀ ।
ଷାଠିସହସ୍ର ରାଜା ପଞ୍ଚପର୍ବଦ୍ଧ ଯେ ରଥୀ
ଜଗି ରହିଲେ ଶକଟ ଦଣ୍ଡା ଚଉକଣ୍ଠ ।
ସେହି ସପ୍ତମ ଦ୍ୱାରରେ ସେନାପତି ଦ୍ରୋଣୀ
ସେ ଦ୍ୱାରକୁ ରକ୍ଷାକଲେ ଏତେ ସୈନ୍ୟଘେନ
ବହୁତର ଗଜ ବାଜୀ ସେନା ଅଗଣନା
ଅଷ୍ଟମେ ରହିଲେ କର୍ଣ୍ଣ ଘେନ କୁରୁସେନା ।
ଏଥି ମଧ୍ୟରେ ଶକୁନ ଲକ୍ଷ୍ମଣକୁମାର
ନବମଦ୍ୱାରେ ରହିଲେ ଏହି ଦୁଇବୀର ।
ପାଞ୍ଚଲକ୍ଷ ଯୋଦ୍ଧା ତିନି ସହସ୍ର ରଜନ
ଦୁଇପଦ୍ମ ଅଶ୍ୱ ହସ୍ତୀ ସେନ୍ୟ ଅଗଣନ ।
କେଶର ମଧ୍ୟେ ରହିଲେ ଯୋଦ୍ଧା ଲକ୍ଷଆଠ
ପିମ୍ପୁଡ଼ି ଯିବାପାଇଁକ ତହିଁ ନାହିଁ ବାଟ ।
ତା ମଧ୍ୟରେ ପୁଣି ଏକ ସୂଚି ବ୍ୟୂହ କଲା
ତିନି ସାଗର ଯୋଦ୍ଧାଙ୍କୁ ତହିଁ ରହାଇଲା ।
ଦେବଙ୍କୁ ଦୁର୍ଲ୍ଲଭ ତାହା ନରେ ଅଗୋଚର
ଜୟଦ୍ରଥେ ଲୁଚାଇଲେ ତହିଁର ଭିତର ।
ସେ ଦଶମ ଦ୍ୱାରେ ଘେନ ପଞ୍ଚଖର୍ବ ରଥୀ
ସୂଚିବ୍ୟୂହ ଆବୋରିଲା ମାନଚକ୍ରବର୍ତ୍ତୀ ।
ସାଗର ସଦୃଶ ଦିଶେ କଉରବ ଠାଟ
ମହା ଅରଣ୍ୟରେ ଯେହ୍ନେ ନ ଦିଶଇ ବାଟ ।
ନ ଜାଣଇ ପାଠ ଶାଠ ମୂର୍ଖ ଅନୁବ୍ରତେ
ମୁଁ ଏହା ଲିଖନ କଲି ଶାରଳା କହନ୍ତେ ।
ହେ ବୁଧଜନେ ନୁହଇ ମୁହିଁ ଜ୍ଞାନବାନ
କେବଳ ହିଙ୍ଗୁଳା ମୋତେ ହୋଇଲେ ପ୍ରସନ୍ନ
ପ୍ରସନ୍ନେ ବରଦାୟିନୀ ଝଙ୍କଡ଼ ବାସିନୀ
ଏକ ଯୋଗେ ବସିଛନ୍ତି ହୋଇଣ ମଉନୀ ।
ମୁକତି ପଦଦାୟିନୀ ଶ୍ରୀଚଣ୍ଡୀ ଶାରଳେ
ଶାରଳା ଦାସ ସେବଇ ତାଙ୍କ ପାଦତଳେ ।
ଜୟ ଜୟ ହେ ଅଗସ୍ତି ତୁମ୍ଭେ ମହାବଳ
ଭୂତ ଭବିଷ୍ୟତଜ୍ଞାତା ଆବର ସକଳ ।
ତୁମ୍ଭେ ଜାଣ କୋଟି କୋଟି ଜନ୍ମର ବାରତା
ନିରଞ୍ଜନ ଗୋଷୀ ପରସନ୍ନେ ବରଦାତା ।
ଅନନ୍ତ ସଂସାର ମୋତେ ଅଗୋଚର ହେଲା
ତୃଷ୍ଣା ଜଳେ ବୁଡ଼ି ଜ୍ଞାନ ମୋହର ହଜିଲା ।
ଏ ଭବ ସଂସାର ମିଛ ମୋହଜାଲ ଫାଶୀ
ଏ ମାୟା ପଟଳୁ ମୋତେ କରିବ ଉଦାସୀ ।
ସେ ବ୍ରହ୍ମଋଷିଙ୍କ ପାଦେ ଶରଣ ମୁଁ ନିତ୍ୟେ
ଶାରଳା ଦାସ କହଇ ଏ ସଂସାର ହିତେ ।

---

## ଅର୍ଜ୍ଜୁନଙ୍କର ପ୍ରଥମ ଓ ଦ୍ୱିତୀୟ ଦ୍ୱାର ଭେଦ

ପୁଣି ଅଗସ୍ତି କହିଲେ ଶୁଣ ନୃପବର
ଭାରତ ଚରିତ ଅଟେ ଶ୍ରୁତି ସୁଖକର ।
ଦ୍ୱାଦଶ ଦିବସ ଯୁଦ୍ଧ ଅତି ମନୋହର
କହୁଅଛୁ ଶୁଣ ରାଜା ମନ କରି ସ୍ଥିର ।
ଅତି ଦୃଢ଼େ ଜଗିଲେ ସେ ଯହୁଁ ଜୟଦ୍ରଥେ
ବ୍ୟୂହ ଦେଖି ପ୍ରଶଂସିଲେ ଧୃତରାଷ୍ଟ୍ରସୁତେ ।
ସମସ୍ତେ ପ୍ରଶଂସା କଲେ ସାଧୁ ସାଧୁ ଦ୍ରୋଣ
ଏବେ ଯେ କୌରବକୁଳ ହେଲେ ଉଦ୍ଧାରଣ
ପ୍ରଥମଯୁଦ୍ଧେ ରଚିଲ ତୁମ୍ଭେ ଚକ୍ରବ୍ୟୂହ
ଜୟ ହେଲା ମଲା ପୁଣି ଅର୍ଜ୍ଜୁନର ପୁଅ ।
ଏବେ କରିଅଛ ଗୁରୁ ଯେବଣ ଉପାୟ
ଆମ୍ଭଙ୍କ ଜୟ ହୋଇବ ଏଥିରେ ନିଶ୍ଚୟ ।
ବ୍ୟୂହ କଥା ଶୁଣି ଧୃତରାଷ୍ଟ୍ର ହେଲା ଖୁସି
ଅନ୍ୟରାଜାମାନେ ବହୁ କହିଲେ ପ୍ରଶଂସି ।
ଶୁଣିଥିଲୁ ବ୍ୟୂହକଥା ଦେଖିଣ ନ ଥିଲୁ
ଶକଟବ୍ୟୂହ ଏ ବୋଲି ଏବେ ଯେ ଜାଣିଲୁ ।
ଆଜ ଜୟଦ୍ରଥଙ୍କର ନାହିଁ ନା ମରଣ
ଅର୍ଜ୍ଜୁନ ଅନଳେ ନିଶ୍ଚେ ହୋଇବ ଦହନ ।
ପାର୍ଥର ବହ୍ନିନେ କୃଷ୍ଣ କେବେ ନ ବଞ୍ଚିବେ
କୃଷ୍ଣବିନା ନିଶ୍ଚେ ବୀର ପାଣ୍ଡବେ ମରିବେ ।

ଏକା ଦ୍ରୋଣଗୁରୁ ସିଦ୍ଧ କଲେ ସର୍ବକାର୍ଯ୍ୟ
ଧୃତରାଷ୍ଟ୍ର ପୁତ୍ରେ ଦେବେ ନିଷ୍କଣ୍ଟକ ରାଜ୍ୟ ।
ଏତେବଡ଼ ଯୋଦ୍ଧାଥିଲେ ଭୀଷ୍ମ ମହାରଥୀ
ମରିଗଲେ ହେଳାଯୁଦ୍ଧ କରିଣ ସମ୍ପ୍ରତି ।
ଏହି ବ୍ୟୂହ କାହାବଳେ ନୁହଇ ଯେ ଭେଦ
ଦ୍ରୋଣ ଏହା ବୁଦ୍ଧିବଳେ ଅଛନ୍ତି ସମ୍ପାଦି ।
କଉରବେ ଆନନ୍ଦିତ ହୋନ୍ତି ବ୍ୟୂହ ଦେଖି
ଆଉ ନିଷ୍ପ୍ରଭ ପାଣ୍ଡବ ହୋଇଲେ ନିର୍ମୀଷୀ ।
ଏଥୁଅନନ୍ତରେ ଶୁଣ ଗୁପତ ଚରିତ
ଚରର ଯେ ଜଣାଇଲେ ପାଣ୍ଡବ ଅଗ୍ରତ ।
ଶୁଣ ଆହେ ମହାରାଜା ଧର୍ମ ଶିରୋମଣି
କୁରୁଧାଟର ବାରତା ଅଇଲୁ ଯା ଶୁଣି ।
କଠୋର ପ୍ରତିଜ୍ଞା ପାର୍ଥ କଲେ ଯେତେବେଳେ
ଶୁଣିଥିଲ ଦୁର୍ଯ୍ୟୋଧନ ଚର ନିଶାକାଳେ ।
ସର୍ବ ବିଷୟ କହିଲ ଦୁର୍ଯ୍ୟୋଧନ ଆଗେ
ତା ଶୁଣି ଜୟଦ୍ରଥକୁ ଘେନିକରି ବେଗେ ।
ଉଦୟ ଭାବରେ ଗଲ ମାନଚନ୍ଦ୍ରବର୍ତ୍ତୀ
ଦ୍ରୋଣଙ୍କ ଅଗ୍ରତେ କଲ ବହୁତ ବିନତି ।
ବୋଇଲକ ସାବଧାନ ହୁଅ ଆହେ ଗୁରୁ
ରଣ ପାଇଲ ପ୍ରତିଜ୍ଞା ପାର୍ଥ କରୁ କରୁ ।
ଏ କୁରୁସାଗରୁ ଜୟଦ୍ରଥ ଯେ ପଳାଉ
ପ୍ରାଣରକ୍ଷା କରିଣ ସେ ସମସ୍ତଙ୍କ ଥାଉ ।
ରାଜାଙ୍କର ବାକ୍ୟ ଶୁଣି ଦ୍ରୋଣ ଯେ ବୋଇଲ
କାଲି ସମର ମୋହର ଭାଗରେ ରହିଲ ।
ଶକଟ ଆକାର କରି ବ୍ୟୂହକୁ ସମ୍ପାଦି
ଦେବଙ୍କୁ ଦୁର୍ଲ୍ଲଭ ତାହା ନରେ ନୁହେଁ ଭେଦି
ପ୍ରଥମ ଦ୍ୱାରରେ ଭରଦ୍ୱାଜଙ୍କ ନନ୍ଦନ
ଦ୍ୱିତୀୟ ଦ୍ୱାରେ ରହିଲ ବୀର ଦୁଃଶାସନ ।
ତୃତୀୟ ଦ୍ୱାରେ ରହିଲା ଶଲ୍ୟ କୃପବ୍ରହ୍ମା
ଚତୁର୍ଥେ ରହିଲେ ଭୂରିଶ୍ରବା ମହାତ୍ମା ।
ପଞ୍ଚମରେ ଅଳମ୍ବୁଷ କଳିଙ୍ଗରାଜନ
ଷଷ୍ଠଦ୍ୱାର ରକ୍ଷାକଲେ ସୋମଦତ୍ତ ପୁଣ ।
ସପ୍ତମଦ୍ୱାରେ ଆବୋର ରହିଲେକ ଦ୍ରୋଣି
ଅଷ୍ଟମେ କର୍ଣ୍ଣ ଜଗିଲେ କୁରୁସେନା ଘେନି ।
ନବମଦ୍ୱାରେ ଶକୁନି ଲକ୍ଷ୍ମଣକୁମାର
ଦଶମଦ୍ୱାରେ ରହିଲେ ସଇନ ଅପାର ।

ଦଶମଦ୍ୱାରେ ସେ ଯହିଁ ପଦ୍ମବ୍ୟୂହ କଲେ
ଶତେ ପାଖୁଡ଼ା କରି ତା କେଶର ରଚିଲେ ।
ତହିଁର ଭିତରେ ବ୍ୟୂହ ସୂଚିର ଆକାରେ
ଜୟଦ୍ରଥ ଲୁଚାଇଲେ ତହିଁର ଭିତରେ ।
ଚରଗଣଙ୍କ ମୁଖରୁ ଏ ସମ୍ବାଦ ପାଇ
ଯୁଧିଷ୍ଠିର ବସିଲେକ ଚିନ୍ତିଭୂତ ହୋଇ ।
ଭୀମସେନ ବଜ୍ରରୂପି କ୍ରୋଧରେ ବୋଇଲ
ଦ୍ୱିତୀୟ ଦ୍ୱାରରେ ଦୁଃଶା ମୋ ଭାଗେ ରହିଲ
ତାହାଯୋଗୁଁ ଅଭିମନ୍ୟୁ ହୋଇଅଛି ହତ
ଦ୍ରୌପଦୀ ହୋଇବ କେଶ କଷ୍ଟରୁ ମୁକତ ।
ଶକଟ ଭାଙ୍ଗିଣ ସବୁ କରିବି ମୁଁ ଧୂଳି
ଅଣ ଚଳ ଆଦରଣ ଦନ୍ତ ଉଧି ଫଳ ।
ପ୍ରତିଜ୍ଞା କରି ବୋଲନ୍ତି କୁମାର ନକୁଳ
ପଦ୍ମ ବ୍ୟୂହ ବିଧ୍ୱଂସିବି ମାରି କୁରୁବଳ ।
ଭୂରିଶ୍ରବା କୃପ ଶଲ୍ୟ କର୍ଣ୍ଣ ଅଶ୍ୱତ୍ଥାମା
ମୋହର ଭାଗେ ରହିଲେ ଏ ଚାରି ମହାତ୍ମା ।
ଯୁଧିଷ୍ଠିରଙ୍କ ଅଗ୍ରତରେ କହେ ସବ୍ୟସାଚୀ
ଶକଟବ୍ୟୂହକୁ ଦେବ ନ ଭାବନ୍ତୁ କିଛି ।
ମୁହିଁ ନୁହେଁ କି ଦ୍ରୋଣର ଧର୍ମର ସନ୍ତତି
ଶକଟ ବ୍ୟୂହର ଭେଦ ମୋତେ କହିଛନ୍ତି ।
ଜଳଧର ବ୍ୟୂହ ମୋର ଅଦୃଷ୍ଟ ଅଶ୍ରୁତ
ତାହା ଭେଦ ଜୟ କଲୁ ଆମ୍ଭେ ସେ ସମ୍ପ୍ରତି
ଶକଟବ୍ୟୂହ ଭେଦିବି ମୁଁ ଏକାକେ ବଳେ
ତୁମ୍ଭେ ଚାରିହେଁ ନ ଯିବ କେହି ମୋର କୂଳେ
ନ ଥିବେ ଅଶ୍ୱ ଗଜ ନ ଥିବେ ରଥୀ ଯୋଧୀ
ବଳବନ୍ତ ସୈନ୍ୟ ସେ ବ୍ୟୂହ ନ ପାରିବେ ଭେଦି
ଉଚ୍ଚରେ ଶୁଭିଲା ପାଞ୍ଚଜନ୍ୟ ଶଙ୍ଖବାଣୀ
ବହୁ ମଙ୍ଗଳ ବାଞ୍ଛିନ୍ତି ଦେବ ଚକ୍ରପାଣି ।
ହରଷ ହୋଇଣ ଦେବ ନନ୍ଦିଘୋଷ ସାଜି
ଶ୍ୱେତ ଘୋଷୀବର ତହିଁ ଯୋଚି ଚାରି ବାଜି
ଅନେକ ଶସ୍ତ୍ର ଥୋଇଲେ ନନ୍ଦିଘୋଷ ରଥେ
ରଥ ଘେନି ବଳେ ହରି ଅର୍ଜ୍ଜୁନ ଅଗ୍ରତେ ।
ଦ୍ୱାରକା ଭୁବନେ ହରି ଥିଲେ ନିଶାକାଳେ
ରଥକୁ ଟେକିଲେ ପାର୍ଥ ପ୍ରତିଜ୍ଞାର ବଳେ ।
ଆସ୍ଥାନର ତଳେ ହରି ରଥ କଲେ ଠେକା
ପ୍ରଣମିଲେ ଯୁଧିଷ୍ଠିରଙ୍କ ପାଦେ ଦେବରାଜା ।

ଧର୍ମର ନନ୍ଦନ ଭଲେ ବନ୍ଧୁ ଶୁଭବାଞ୍ଛା
ତୋ ପ୍ରସାଦେ ମୋ ପାଣ୍ଡବଦଳ ହେବେ ରକ୍ଷା
ଦୁଃସହ ପ୍ରତିଜ୍ଞା କରିଛନ୍ତି ଗୁରୁଦ୍ରୋଣ
ଶକଟ ଆକାରେ ବ୍ୟୂହ ରଚିଲେ ଆପଣ ।
ତହିଁର ଭିତରେ ସୂଚିବ୍ୟୂହର ଆକାର
ଜୟଦ୍ରଥେ ଲୁଚାଇଲେ ତହିଁର ଭିତର ।
ଅର୍ଜ୍ଜୁନର ପ୍ରତିଜ୍ଞା ତ ଜାଣ ଦେବହରି
ସୂର୍ଯ୍ୟାସ୍ତେ ଜୟଦ୍ରଥକୁ ନ ପାରିଲେ ମାରି ।
ଅନଳ କୁଣ୍ଡରେ ପଡ଼ି ସେତ୍ତ ଶ୍ୱାସ ଦେବ
ତାହାର ପ୍ରତିଜ୍ଞା କେବେ ଅନ୍ୟଥା ନୋହିବ
ସ୍ୱର ମୁଖୁଁ ଶୁଣିଲ ତ ବଡ ଦୁରପଦ
ଦେବଙ୍କୁ ଦୁର୍ଲ୍ଲଭ ସେହି ବ୍ୟୂହର ପ୍ରମାଦ ।
ମୁହିଁ ମନୁଷ୍ୟ ମାତ୍ର କି ତଆରିବ ତୋତେ
ପାର୍ଥଙ୍କୁ ହରି ପ୍ରମାଦ ନ ପଡ଼େ ଯେମନ୍ତେ ।
ଧର୍ମଙ୍କ ବଚନେ କହୁଛନ୍ତି ଦେବହରି
ଲଙ୍ଘିବ ଶକଟବ୍ୟୂହ ହେଲ ନବଘଡ଼ି ।
ଯଦ୍ୟପି ତ୍ରିଲୋକେ ସର୍ବେ ମିଳିବେ ସମରେ
କେ ଆଜ ରକ୍ଷିବ ଦେବ ଅର୍ଜ୍ଜୁନ ଗ୍ରାମୁରେ ।
ଶ୍ରୀକୃଷ୍ଣଙ୍କର ପ୍ରତିଜ୍ଞା ଶୁଣି ଦେବରାୟ
ହୋଇଲେ ପରମଶାନ୍ତ ମନୁ ଛାଡ଼ି ଭୟ ।
ସାରବେଶରେ ସୁବେଶ ହୋଇଣ କସାନ୍ତି
ବାନ୍ଧିଲେ ମୁକୁଟ ନିଜ ଶିରରେ ଝଟତି ।
ଲକ୍ଷେକ ବଳ ତାହାର ସେ ଗାଣ୍ଡିବ ଧନୁ
ଶ୍ରୀଭୁଜେ ଧରିଲା ତହୁଁ ବାସବର ସୂନୁ ।
ଦେବଦତ୍ତ ଶଙ୍ଖ ଅର୍ଜ୍ଜୁନ କରେ ଧରି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଦେବ ହରି ।
ଶୁଣିଣ ବୋଲନ୍ତି ଯୁଧିଷ୍ଠିର ଦଣ୍ଡଧାରି
ବେଗେ ଆସ ଦେବ ଶତ୍ରୁ ଦର୍ପ ଚୂର୍ଣ୍ଣକରି ।
ସ୍ୱାମୀ ପୃଥ୍ୱୀ ଆଶ୍ରେ ମେରୁ ହର ଆଶ୍ରେ ଉମା
ପାଣ୍ଡବେ ତୋହର ଆଶ୍ରା ବଦନ୍ତି ମହାତ୍ମା ।
ବିପତ୍ତି ନାଶନ ଦେବ ତୁମ୍ଭେ ଚିନ୍ତାମଣି
ମୁହିଁ କସ ତଆରିବ ତୋତେ ଚକ୍ରପାଣି ।
ଶ୍ରୀକରେ ଅର୍ଘ୍ୟ ଚନ୍ଦନ ଦେବ ଯୁଧିଷ୍ଠିର
ଆଗରେ ବନ୍ଦାନ୍ତି ନେଇ କୃଷ୍ଣ ପାର୍ଥଶିର ।
ଯାତ୍ରା ମଙ୍ଗଳେ ଯେ ଶୁଭ ଦେବ ଅନୁକୂଳ
ହେଜ କଲେ ଜଗନ୍ନାଥ ସର୍ବ ଶୁଭବେଳ ।

ଗ୍ରାମୁରେ ତନୟଙ୍କବେ ବୋଲେ କୁନ୍ତୀଦେବୀ
ତୋର ଯଶକଥା ହରି କେମନ୍ତେ ଶୁଣିବ ।
ପାଞ୍ଚଜନ୍ୟ ଶଙ୍ଖଶବ୍ଦ ତୋହର ଯେ ବାଣୀ
ମୁହିଁ ତୃପତ ହୋଇବ ସେହି ଶବ୍ଦ ଶୁଣି ।
ଏପରି ସଙ୍କେତ ମୋତେ ଶୁଣାଇବ ହରି
ଶୁଭରେ ବିଜୟ ଏବେ କର ଦଣ୍ଡଧାରୀ ।
ଚଳାଇଲେ ନନ୍ଦିଘୋଷ କ୍ଷେପିଗଲେ ହୟେ
ଦେଖାଯାନ୍ତି ଜଳେ ଯେହ୍ନେ ହଂସଯୂଥ ଧାୟେ
ପାଣ୍ଡବ ସୈନ୍ୟରେ ହୋଇଛନ୍ତି ଆଗୁସାର
ମେରୁ ପ୍ରଦକ୍ଷିଣ ଅର୍ଥେ ଉଦେ କି ଭାସ୍କର ।
ନନ୍ଦିଘୋଷ ତହୁଁ ପୃଥ୍ୱୀ ଦୁଲୁକି ଉଠଇ
ପାତାଳ ଭୁବନେ କୂର୍ମ ପିଠି ଚମକଇ ।
ରଥ ଧ୍ୱଜରେ ଥିଲା ଯେ ବୀର ହନୁମାନ
ବୈତ୍ୟ ମାରି ଲଙ୍କାପୁର କଲା ଯେ ଦହନ ।
ରଥ ଗଜ ଅଶ୍ୱ ନର ପଦାତି ନ ଥାଇ
ଅସଂଖ୍ୟ ବଳଙ୍କୁ ଜିଣି ସେ ରଥ ଚଳଇ ।
ଗମେ ନନ୍ଦିଘୋଷ ରଥ ପବନରୁଁ ବେଗେ
ଶକଟ ବ୍ୟୂହରେ ପରବେଶ ଦ୍ରୋଣ ଆଗେ ।
ରଥୀ ରଥ ଅଶ୍ୱ ଗଜ ପଦାତି ଗହନେ
ମୁଖରବ ଶୁଭେ ଯଥା ସମୁଦ୍ର ଲହୁଳେ ।
ପାର୍ଥଙ୍କୁ ଦେଖି ବେଢ଼ିଲେ ନବସସ୍ର ଯୋଧୀ
ସହସ୍ର ସହସ୍ର ଶର ବରିଆଣ୍ଡୁ ବନ୍ଧି
ଜଳବୃଷ୍ଟି ହୁଏ ଯେହ୍ନେ କକଡ଼ା ମାସରେ
ସେହ୍ନେ ଶର ବରଷିଲେ ନନ୍ଦିଘୋଷ ପରେ ।
ଶର ବରଷିବା ଦେଖି ପାଣ୍ଡୁର ଦୁଲାଳ
ବନ୍ଧିଲେକ ଲେଖା ଲେଖା ଶର ଅନର୍ଗଳ ।
ଅନିବାର ଶର ବନ୍ଧା ଦେବେ ଦେଖିକରି
ତାଙ୍କ ଶର କାଟି ଆସେ ଗରଜନ କରି ।
ରଥୀ ରଥ ଗଜ ବାଜୀ ଅସଂଖ୍ୟ ଫୁଟଇ
ଯା ଦେହେ ପଡ଼ଇ ସେହି ଉରୁଣ ନ ଯାଇ
ପୁତ୍ରଶୋକେ ଧନଞ୍ଜୟ ମହାକ୍ରୋଧ ହୋଇ
ଉତ୍କ୍ରୋଧ ଗୁଡ଼ି ନାରାଚ ଅସଂଖ୍ୟ ବିନ୍ଧଇ ।
ଚକ୍ଷୁ ପଲକ ମାତ୍ରକେ ବଜ୍ରଶର ବିନ୍ଧି
କୋଟି କୋଟି ଯୋଦ୍ଧାଶିର ପକାନ୍ତି ସେ ଛେଦି
ଏରୂପେ ବହୁତ ସୈନ୍ୟ ଗଲେ ପ୍ରେତପୁର
ରଣରଙ୍ଗେ ବିହରନ୍ତି ପାର୍ଥଧନୁର୍ଦ୍ଧର ।

ପଳାନ୍ତି ସୈନ୍ୟମାନେ ହୋଇଣ ବିମୁଖ
ବଳ ନ ପାଇ କାହାର ହୋଇଲେ ନିରସ ।
ବଳଭଙ୍ଗ ଦେଖିକରି ଭରଦ୍ୱାଜ ଶିଷ୍ୟ
ରହ ରହ ବୋଲି ଡାକେ ସୈନ୍ୟଙ୍କୁ ଆଶ୍ୱାସି
ଦେଖ ମୋ ହସ୍ତେ ପଞ୍ଚାଶୀସସ୍ର ବଳ ଧନୁ
କାର୍ତ୍ତିକ ପଳାଅ ତୁମ୍ଭେ ଭୟ ଛାଡ଼ ମନୁ ।
ଦ୍ରୋଣଙ୍କ ବଚନେ ଛୁଡ଼ାହେଲେ ସର୍ବରଥୀ
ଶର ପୂରଇ ବେଢ଼ିଲେ ପାର୍ଥ ଚଉକତି ।
ଦ୍ରୋଣଗୁରୁ ଦଶସସ୍ର ବାଛି ତୀକ୍ଷ୍ଣ ଶର
ବନ୍ଧିଲେକ ନନ୍ଦିଘୋଷ ରଥର ଉପର ।
ବୋଲନ୍ତି ନାରାଚ ବୃଷ୍ଟି ଦେଖି ନାରାୟଣ
ଆଟେ ସେନାପତି ଆଜ ଶସ୍ତ୍ରଗୁରୁ ଦ୍ରୋଣ ।
ଏହି ଭିଆଇଲେ କୂଟ ଚକ୍ର ନାମେ ବ୍ୟୂହ
ଏବା ଏହାଙ୍କର ଯୋଗୁଁ ନାଶ ତୋର ପୁଅ ।
ପୁତ୍ରରିପୁ ପାଶେ ଆଣି ତୋତେ ଭେଟାଇଲି
ନ ପୁଣ ଉପ୍ରୋଧ କରୁ ତୁମ୍ଭ ଗୁରୁ ବୋଲି ।
ମିଛବ ଯୁଦ୍ଧ ନ କର ଏହାଙ୍କର ତୁଲେ
ଆପେ ନାଶଯିବୁ ତୁମ୍ଭ ସୂର୍ଯ୍ୟ ଅସ୍ତ ଗଲେ ।
ଆପଣେ ମରନ୍ତେ ଗୁରୁ ସୋଦର ବା ଜାହିଁ
ଆତ୍ମରକ୍ଷା ଅର୍ଥେ କଲୁ ଏଥେ ପାପ ନାହିଁ ।
ଶ୍ରୀକୃଷ୍ଣ ବଚନ ଶୁଣି ବୀର ଫାଲଗୁନ
ଦ୍ରୋଣଙ୍କୁ ବନ୍ଧିଲେ ପଞ୍ଚବିଂଶ ବାଣ ଘେନ ।
ଅର୍ଜୁନକୁ ଦେଖିକରି ଆଦେ ରଲେ ଦ୍ରୋଣ
ବୋଇଲେ ରଥ ସମ୍ଭାଳ ବେଗ ନାରାୟଣ ।
ଅର୍ଜୁନ ପ୍ରଣାମ କଲେ ଦ୍ରୋଣଙ୍କୁ ଅନାଇ
ଅଭିମନ୍ୟୁ ମରଇଲ ତୁମ୍ଭେ ରଥେ ଥାଇ ।
ମାରିବି ମୁଁ ସୂର୍ଯ୍ୟଅସ୍ତ ମଧ୍ୟେ ଜୟଦ୍ରଥ
ତାକୁ ନ ମାଇଲେ ମୋର ମରଣ ନିଶ୍ଚିତ ।
ମୋହର ବିନୟ ଘେନ ହାର ପ୍ରତି ଗୁରୁ
ମୋହର ବିନାଶ ଅର୍ଥେ ପ୍ରତିଜ୍ଞା କି କରୁ ।
ତୁମ୍ଭେ ଗୁରୁ ପିତା ବୋଲି ନ କରୁ ଉପ୍ରୋଧ
ଅଭିମନ୍ୟୁ ଯୋଗେ ସବୁ କରିବ ମୁଁ ବଧ ।
ଦ୍ରୋଣ ବୋଇଲେ ନିଶ୍ଚୟ ଜାଣ ମୋର କଥା
ପ୍ରତିଜ୍ଞା କରିଛି ତାକୁ କରିବ ମୁଁ ରକ୍ଷା ।
ଶକଟବ୍ୟୂହ ଅଟଇ ଦେବଙ୍କୁ ଦୁର୍ଲଭ
ଦୁଃସହ ପ୍ରତିଜ୍ଞା କର ପାଇବୁ ପ୍ରାଭବ ।

ଅର୍ଜୁନ ବୋଇଲେ ଗୁରୁ ବସ୍ତୁ ମୋର ସାଥେ
ବାନରମାନେ ଭାଙ୍ଗିଛନ୍ତି ଶକଟ କଣ୍ଟକ ।
ଏକ ପ୍ରହାରେ ଭାଙ୍ଗିବ ମୁଣ୍ଡି ଔଧି ଫଳ
ଆତ୍ମ ବୃକ୍ଷ ଏକଶରେ କରିବ ମୁଁ ଧୂଳି ।
ତୁମ୍ଭଙ୍କୁ ଦେଉଛି ମୋର କଣ୍ଟକ ଉପ୍ରୋଧ
ଆଉମାନଙ୍କର ତୁଲେ କିସ ମୋର ଯୁଦ୍ଧ ।
ଅର୍ଜୁନଙ୍କର ପ୍ରତିଜ୍ଞା ଶୁଣି ଦ୍ରୋଣାଚାର୍ଯ୍ୟ
ଓଷ୍ଠ କମ୍ପାଇ ପେଷିଲେ ପଞ୍ଚସ ନାରାଚ ।
ପୁନଶ୍ଚ ବେଗେ ବନ୍ଧିଲେ ପାଞ୍ଚଗୋଟା ଶର
ନିର୍ଘାତ ପ୍ରାପ୍ତ ଶୁଭିଲା ଶବଦ ତାହାର ।
ବଜ୍ରମୁନା ନାରାଚ ପେଷିଲେ ଫାଲଗୁନ
ଦ୍ରୋଣଙ୍କର ପାଞ୍ଚଶର ପକାଇଲେ ହାଣି ।
ପୁଣରପି ପାଞ୍ଚଶର ବାନ୍ଧିଲେକ ଗୁରୁ
ବେଗେ ଅର୍ଜୁନ ଛେଦିଲେ ତାହା ଆସୁଁ ଦୂରୁ
କଙ୍କପକ୍ଷ ତୀକ୍ଷ୍ଣମୁନା ବିଶାଶତ ବାଣ
କୃଷ୍ଣ ଅର୍ଜୁନଙ୍କୁ ପୁଣ ବନ୍ଧିଲେ ଯେ ଦ୍ରୋଣ ।
ରଥ ଧ୍ୱଜପରେ ଥିଲା ସେ କପିକେତନ
ତହିଁକି ଶତେକ ଶର କରିଲେ ଆଧାନ ।
ନାରାଚ ଆସିବା ଦୂରୁ ଦେଖି ଫାଲଗୁନ
ଧାନୁକାରେ ବନ୍ଧିଲେ ସେ ତୀକ୍ଷ୍ଣଶର ଘେନ
ପୁଣି ପାଞ୍ଚଶତ ବାଣ ବନ୍ଧଣ ଅର୍ଜୁନ
ଦ୍ରୋଣଙ୍କର ସବୁବାଣ କରିଦେଲେ ଚୂର୍ଣ୍ଣ ।
ଆଟରେ ଶୁଭିଲା ସାଧୁ ସାଧୁ ବୀର ପାର୍ଥ
ଗୁରୁ ସଙ୍ଗେ ଯୁଝିବାକୁ ହେଲୁ ତ ସମର୍ଥ ।
ଏହାଙ୍କ ବନ୍ଧ୍ୟାରୁ ତୋର ଅସ୍ତ୍ର ମହୀଭେଦ୍ୟ
କଣ୍ଟକ ନାରାଚେ ଗୁରୁ ଶସ୍ତ୍ର ଦେଲୁ ଛେଦି ।
ସହସ୍ରେ ବାଣ ବନ୍ଧିଲେ ଗୁରୁ ପୁଣି ବେଗେ
ତୁଷାର ବୃଷ୍ଟି ହୁଅଇ ଯେସନେ ଆକାଶେ ।
ଉଭୟ ଆଟ ହୋଇଲା ଅନ୍ଧକାରମୟ
ଦିବସରେ ଦେଖାଗଲା ସନ୍ଧ ହେଲା ପ୍ରାୟ ।
ଶ୍ରୀକୃଷ୍ଣ ବୋଇଲେ ଆହେ ଦେଖ ସବ୍ୟସାଚି
କପଟଯୁଦ୍ଧ କରିଲା ଦ୍ରୋଣ ଏବେ ପାଞ୍ଚି ।
ଏହା ପ୍ରତି ଅସ୍ତ୍ର ଗୋଟି ତୁମ୍ଭ ପାର୍ଥ ଜାଣ
ଏ ଅନ୍ଧକାର ବିନାଶି ଉଦେ କର ଭାନୁ ।
ପ୍ରତିଜ୍ଞା କଲୁ ତୁ ସୂର୍ଯ୍ୟ ଅସ୍ତପରିଯନ୍ତେ
ତହିଁକି କପଟ ଦ୍ରୋଣ ଭିଆଇଲା ତୋତେ ।

ଅର୍ଜ୍ଜୁନ ହୋଇଲେ କ୍ଷଣ ହେବ ତଇତ୍ୟାର
କୂଟ କପଟ ଯୁଦ୍ଧରେ ଆସ୍ମଙ୍କ ନ ପାର ।
ଏହା ଭଣି ସର୍ଯ୍ୟଅସ୍ତ ଛନ୍ଦ ଧନଞ୍ଜୟ
ଛପିରକ ଦାଣ୍ଡି ସୂର୍ଯ୍ୟ କଲେ ଉଦୟ ।
ନନ୍ଦଘୋଷ ରଥ ଆଗେ ଦ୍ରୋଣଙ୍କର ରଥ
ଶତ୍ରୁ ପ୍ରାପ୍ତ ଶୋହିଛନ୍ତି ତାକୁ କୃଷ୍ଣ ପାର୍ଥ ।
ପୁଣି ପାର୍ଥ ବାବୋତାସ୍ତ୍ର ଯହୁଁ ପ୍ରହାରିଲେ
ଉଲ୍ଲନ ହୋଇଣ ଦ୍ରୋଣ ରଥରେ ନଡ଼ିଲେ ।
ପୁଣି ପାର୍ଥ ମଲ୍ଲଶାସ୍ତ୍ର ଅନ୍ତବେଗେ ଛନ୍ଦ
ଦ୍ରୋଣଙ୍କ ଅଶ୍ୱ ସାରଥି ପଡ଼ାଇଲେ ବାନ୍ଧ ।
ସାଏ ଅଶ୍ୱତ୍ଥାମ ହୁଅନ୍ତେ ଭରଦ୍ୱାଜ ବନ୍ଧି
ଭଜିଲେ କୌରବଦଳ ହୋଇଣ ନିର୍ମାଖୀ ।
ବାସଭଗ୍ନ ପକ୍ଷୀ ଯେହ୍ନେ ଘନାବନ୍ତ ଉଡ଼େ
ରହି ନ ପାରିଲେ ନନ୍ଦଘୋଷର ସମ୍ମୁଖରେ ।
ଅପର୍ଯ୍ୟାପ୍ତ ଶର ପୁଣି ଅର୍ଜ୍ଜୁନ ଛନ୍ଦଇ
ଯେସନେକ ବଜ୍ରସ୍ୱତ ଆକାଶୁ ପଡ଼ଇ ।
ରଥ ରଥୀ ଅଶ୍ୱ ଗଜ ପଦାତି ପଡ଼ନ୍ତି
ସାରଥୀ ସଙ୍ଗତେ କେହି ବର୍ତ୍ତି ନ ପାରନ୍ତି ।
ଦେଖିଲେ ଅର୍ଜ୍ଜୁନପାଶେ କେହି ନାହିଁ ସୈନ୍ୟ
ଶ୍ରୀକୃଷ୍ଣଙ୍କ ପୃଚ୍ଛା କଲେ ପାଣ୍ଡବ ଅର୍ଜ୍ଜୁନ ।
ସ୍ୱାମୀ ଯାଏ ଅଶ୍ୱତ୍ଥାମ ହେଲେ ଗୁରୁ ଦ୍ରୋଣ
ବେଗକର ମୋର ରଥ ବାହାନ୍ତୁ ଆପଣ ।
ଅର୍ଜ୍ଜୁନ ବଚନ ଶୁଣି ଦେବକୀଙ୍କ ସୁତ
ଗଗନମାର୍ଗରେ ରଥ ବାହିଲେ ତ୍ୱରିତ ।
ପାଞ୍ଚଜନ୍ୟ ଶଙ୍ଖଶବ୍ଦେ ତ୍ରୈଲୋକ୍ୟକୁ ଜିଣି
ଷଡ଼ଗୁଣ ରହି ତାହା ଯୁଧିଷ୍ଠିର ଶୁଣି ।
ମନେ ମନେ ଆନନ୍ଦିତ ହେଲେ ପଣ୍ଡୁ ବାଳ
ନିଶ୍ଚୟ ଅର୍ଜ୍ଜୁନ ଧ୍ୱଂସକରେ କୁରୁଦଳ ।
ଯେହ୍ନେ ହଂସ ବିହରନ୍ତି ସୁଖେ ସଲିଳରେ
ନନ୍ଦଘୋଷ ଅଶ୍ୱେ ତଥା ଗମନ୍ତି ସ୍ୱଚ୍ଛରେ ।
ଦୁଇହାରେ ଜିଣିକରି ରଥ ଚଳିଗଲା
ମହାବ୍ୟୂହ ଭେଦି ପାର୍ଥ ଭିତରେ ପଶିଲା ।
ରଥ ଗଜ ଅଶ୍ୱ ଆଦି ଗହଳ ପଦାତି
ଆନନ୍ଦରେ ପିଶାଚୁଣୀବୃନ୍ଦେ ବିହରନ୍ତି ।
ଅରଜୁନ କହନ୍ତି ଶ୍ରୀକୃଷ୍ଣ ମୁଖ ଚାହିଁ
ଜଗତ ଜୀବନ ବନ୍ଧୁ ତୁହି ଯଦୁସାଇଁ ।

ସମ୍ଭାଳଣ ରଥ ମୋର ବାହା ଚକ୍ରପାଣି
ଦେଖ ସାଗରକୁ ଜଣେ କୌରବ ସଇନ ।
ତହିଁର ମନ୍ଦର ସମ ନନ୍ଦଘୋଷ ରଥ
ତାହା ଲଙ୍ଘିବାକୁ କେହି ହୋଇବ ସମର୍ଥ ।
ଦ୍ରୋଣଗୁରୁ ଗଲେ ଦେବ ତୋହର ପ୍ରସାଦେ
କଷ୍ଟରେ ଜୟଦ୍ରଥକୁ ବିନାଶିବି ଯୁଦ୍ଧେ ।
ଗହଳ ତହଳ ହୁଏ ମୂର୍ଖସବ ବାଣୀ
ଶୁଭଇ ଯେ ମହାଘୋର ସିନ୍ଧୁଘୋଷ ଜିଣି ।
ବର୍ଦ୍ଧିତ ଚେଷ୍ଟ ରଥରେ ଯେ ଛ ସଙ୍ଗ ରଥୀ
ପଞ୍ଚାଶଲକ୍ଷ ଯୋଦ୍ଧାଏ ବନ୍ଧିଲେକ ଧାଡ଼ ।
ନାଗର ପଡ଼ନ୍ତେ ହେଲା ଅନ୍ଧକାରମୟ
ସେହି ଥାଟ ଜିଣିବାକୁ ଅର୍ଜ୍ଜୁନ ନିର୍ଭୟ ।
ଗାଣ୍ଡୀବଧନୁ ଧରିଣ କ୍ରୋଧେ ସବ୍ୟସାଚୀ
ପାଞ୍ଚଲକ୍ଷ ଯୋଦ୍ଧାଙ୍କୁ ବନ୍ଧିଲାକ ଆମଞ୍ଚି ।
ଯେସନେ କୈଟଇ ମହାବାତେ ରମ୍ଭାବନ
ବଜ୍ର ପ୍ରହାରେ ଭେସନେ ହୋଇଯାଏ ଚୂର୍ଣ୍ଣ ।
କ୍ରୁଦ୍ଧ ଧାରଙ୍କ ବଳ ଯେ ମଧୁବନ ସମ
ଲୋଟାଏ ପ୍ରଚଣ୍ଡବାତ କି ସେ ଅରଜୁନ ।
ଆତାଟରୁ ନଷ୍ଟଯାଏ ପାର୍ଥ ବାଣ ଘୋଟି
ପାଞ୍ଚକୋଟି ଯୋଦ୍ଧାଙ୍କୁ ସେ ପକାଇଲେ କାଟି ।
ବାତାଘାତେ ପଡ଼େ ଯେହ୍ନେ ବୃକ୍ଷୁ ପକ୍ୱଫଳ
ମୁଣ୍ଡ ଛିଡ଼ନ୍ତେ ନାଚିଲେ ତାଙ୍କ ବକ୍ଷସ୍ଥଳ ।
ଅଶ୍ୱ ଗଜ ରଥ ସବୁ ହେଲେ ସର୍ବେ ଚୂର
ନଦୀପରି ବହିଲାକ ତାହାଙ୍କ ରୁଧିର
ରକ୍ତରେ ଜର ଜର ସବୁଙ୍କର ତନୁ
ଉଦୟ କାଳରେ ଯେହ୍ନେ ଦେଖାଯାଏ ଭାନୁ ।
ବିକଳେ ବୋବ ପାରନ୍ତି ବାକ ଯେ ସଇନ
ସେ ରକ୍ତ ଖାଇ ଉଲ୍ଲାସ ହୋଇଲେ ସଇମା ।
ବସିବାକୁ ନାଗକର ପୁରେ ଠାବ ନାହିଁ
ବସ୍ତୁପୂରେ ଯାଉଛନ୍ତି କୃଷ୍ଣମୁଖ ଚାହିଁ ।
ଅନେକ ପାପ ଯେ କରିଥିଲେ ଜନ୍ମେ ଜନ୍ମେ
ତାହାକୁହିଁ ଶାସ୍ତି ଦେଇ ନ ପାରିଲେ ଯମେ ।
ଏ ମହାଭାରତ ଯୁଦ୍ଧେ ମରିଲେକ ଯେତେ
ବୈକୁଣ୍ଠେ ଗଲେ ଅଠର ଦିବସ ପର୍ଯ୍ୟନ୍ତେ ।
ସମସ୍ତ ପାତକ ନାଶି ଲଭିଲେ ମୁକତି
ନାନାପାପୀ ତରି ବଇକୁଣ୍ଠେ କଲେ ସ୍ଥିତି ।

କୃଷ୍ଣଙ୍କ ମୁଖ ବର୍ଣ୍ଣିଣ ଯେ ଘଟେ ସଂଗ୍ରାମେ
ବୈକୁଣ୍ଠେ ବାସ ହୁଅନ୍ତି ସ୍ତ୍ରୀପୁରୁଷେ କ୍ରମେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ନାରାୟଣ
କଳିତ ଯୁଦ୍ଧ କରନ୍ତି ସାରଥି ହୋଇଣ ।
ସମରେ ପଡ଼ନ୍ତି ଯେହୁ ଶଙ୍ଖ ଚକ୍ର ଦେଖି
ଲଭନ୍ତି ବୈକୁଣ୍ଠ ଯମଦଣ୍ଡକୁ ଉପେକ୍ଷି ।
ଜୟ ଜୟ ନୀଳୋତ୍ପଳ ସମ ଯାହା ବର୍ଣ୍ଣ
ପୃଥ୍ୱୀଜନ ଚିନ୍ତାମଣି ଶ୍ରୀବତ୍ସଲାଞ୍ଛନ ।
ଭଗବାନ ବାସୁଦେବ ଅପୂର୍ବ ମୂରତି
ଏ ମହାଭାରତ ଯୁଦ୍ଧ ରଚିଲେ ଶ୍ରୀପତି ।
କ୍ଷିତିର ପତି ତୁମ୍ଭେ ମୁକତିର ଦାତା
କଳିକାଳ ଧ୍ୱଂସନ ଯେ ଭବ ନିବାରନ୍ତା ।
ତୁଳସୀବଲ୍ଲଭ ପାଦରେଣୁ ପଦେ ପଦେ
ବିଜୟ କରନ୍ତୁ ଶାରଳାଦାସ ମନ ହୃଦେ ।

---

## ଦୁଃଶାସନ, କୃପ, ଶଲ୍ୟ, ଅଶ୍ୱତ୍ଥାମା ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ

ପୁନରପି ପୃଚ୍ଛାକଲେ ମନୁ ନରପତେ
ବିଶ୍ୱାସ ହାର ଜିଣିଣ ଗଲେ ଧନଞ୍ଜୟ ।
ଏକଥା ତୁମ୍ଭ ମୁଖରୁ ଶୁଣି ହେଲା ତୋଷ
ଏହା ଉତ୍ତାରୁ ହୋଇଲା କହ ମୁନି ବ୍ୟାସ ।
କହନ୍ତି ଅଗସ୍ତି ରାଜା ପୃଚ୍ଛାକଲ ଯାହା
ମନଯୋଗ କରି ତୁମ୍ଭେ ଶୁଣ ଏବେ ତାହା ।
ବିସ୍ତାରି ମହାଭାରତ କେ କହି ପାରିବ
ବାଲି ବର୍ଷାଧାର ତାର କେ ନର କଳିବ ।
ସଂକ୍ଷେପେ କହୁଛି ଶୁଣ ହୋଇଲା ଯେ ଗୋଳ
ପାଞ୍ଚକୋଶ ପରିଯନ୍ତେ ଥିଲେ କୁରୁବଳ ।
ସେମାନେ ଅଟନ୍ତି ଜାଣ ତରଣିର ରଶ୍ମି
ବଡ଼ବାନଳ ସମାନ ପାର୍ଥ ଦିଏ ଧ୍ୱଂସି ।
ଜୟଦ୍ରଥ ବଧିବାକୁ ପାର୍ଥ ମହାକ୍ରୋଧେ
ବସ୍ତ୍ର ଉପୋଧ ଗ୍ରହଣ ଅନୁକ୍ଷଣେ ବନ୍ଧେ ।
କୁରୁସୈନ୍ୟ ଯେହ୍ନେ ତୃଣଫଳର ସମାନ
ତାହାକୁ ନେଟାଏ ପାର୍ଥ ପ୍ରଚଣ୍ଡ ପବନ ।
ଶକଟ ବ୍ୟୂହ ମଧ୍ୟରେ ଚଳେ ନିଃଶ୍ୱାସ
ପୃଥିବୀ କର୍ଦ୍ଦମ ହୁଏ ରକ୍ତ ମେଦ ମାଂସ ।
ଣବଘ ସମ ତଳାନ୍ତ ରଥ ଦେବସ୍ୱନ
ଓଗାଳିଲେ ବହୁ ସୈନ୍ୟ ସେନ କୃପାଚାର୍ଯ୍ୟ ।
ସୁବର୍ଣ୍ଣର ରଥ ବ୍ୟାଘ୍ର ଲାଙ୍ଗୁଳର ଚିହ୍ନ
ଫର ଫର ପତାକା ଯେ ଉଡ଼ଇ ଗଗନ ।
ଧବଳ କମଳ ଚିହ୍ନ ସିନ୍ଧୁ ତେଜ ଜାଣି
ଆକାଶରେ ଉଡ଼ାଓ ଯେ ହେଲେ ଜନମଣି ।
ଏକମୁଖ ହୋଇ ପାର୍ଥ ଅରବୁଦ ଯୋଧୀ
ସହସ୍ର ସହସ୍ର ବାଣ ମହାକ୍ରୋଧେ ଛନ୍ଦି ।
ପୃଥିବୀ ଘୋଟିଲା ସେହୁ ବାଣ ଜ୍ୱାଳାବଳୀ
ତାହା ଦେଖିଣ ବୋଲନ୍ତି ଦେବ ବନମାଳୀ ।
ଦେଖ ଶରବୃଷ୍ଟି ହୁଏ ସେ ପଣ୍ଡୁ ଦୁଲାଳ
ଅତ୍ୟନ୍ତ ଯୁଦ୍ଧ ହୋଇବ ଦରୁଣ ସମ୍ଭାଳ ।
ନ ଜାଣି ପ୍ରତିଜ୍ଞା କୃଷ୍ଣ ବୃଥା କଲୁ ଏତେ
ବୋଇଲୁ ଯେ କୌରବଙ୍କୁ ଜିଣିବ କିମ୍ପତେ ।
ମ ରନ୍ତେଣ ଶେଷ ଏବେ ନୁହେ କୁରୁବଳ
ଦ୍ରୋଣାଚାର୍ଯ୍ୟ ପ୍ରାପ୍ତେ ପୁଣି ଶୁଭେ ମହାଗୋଳ ।
ଶୁଣି ପାର୍ଥ ବୋଲେ ସ୍ୱାମୀ ନୁହନ୍ତୁ ବିମୁଖ
କ୍ଷଣେ ରହିଣ ମୋହର ସମରକୁ ଦେଖ ।
କେଶବଙ୍କୁ ବୁଝାଇଣ ବିନ୍ଧେ ପାର୍ଥ ଶର
ଅର୍ବୁଦ ଯୋଦ୍ଧାଙ୍କୁ କରିଦେଲେ ସେ ଅସ୍ଥିର ।
ସେହି ଅପାଳିଟ ଶର କରଣ ଗମନ
ପଞ୍ଚଅର୍ବୁଦ ସୈନ୍ୟଙ୍କୁ କରିଲା ଛେଦନ ।
ପୁଣି ଏକସହସ୍ର ବାଣ ବିନ୍ଧିଲେ କିରୀଟୀ
ଏକସହସ୍ର ଯୋଦ୍ଧାଙ୍କର ରଥ ଗଲା ଫୁଟି ।
ପୁଣି ବହୁଶର ପାର୍ଥ ତୂଣୀରୁ କାଢ଼ିଣ
ସୈନ୍ୟମାନଙ୍କ ଉପରେ କରିଲେ ବର୍ଷଣ ।
ବାଣଘାତେ ସୈନ୍ୟମାନେ ତଳେ ଗଲେ ପଡ଼ି
ସମସ୍ତଙ୍କ ଶରୀରରୁ ପ୍ରାଣଗଲା ଛାଡ଼ି ।
ସୈନ୍ୟଙ୍କ ପଡ଼ିବା ଦେଖି କୋପେ କୃପାଚାର୍ଯ୍ୟ
ଅର୍ଜ୍ଜୁନେ ବିନ୍ଧିଲେ ପଞ୍ଚବିଂଶତି ନାରାଚ ।
ଆସନ୍ତି ନାରାଚମାନେ ଆକାଶକୁ ଘୋଟି
ପାଞ୍ଚବାଣେ ନିବାରିଲେ ତାହାକୁ କିରୀଟୀ ।
ପର୍ବତାଶରେକ ଯେଣୁ କୃପାଚାର୍ଯ୍ୟ ମାରି
ବଜ୍ରଶରେ ଅର୍ଜୁନ ତାକୁ ଦେଲେ ଚୂରି ।
ପୁଣି କୃପ ବ୍ରହ୍ମଅସ୍ତ୍ର ବାଣେ ଦେଲେ ପେଷି
ତା ଗର୍ଜନେ ଦିଗପାଳମାନେ ହେଲେ ତ୍ରାସି ।

ପଞ୍ଚଶ ନାରାଚ ଯେଣ୍ଡ ଛନ୍ଦେ ଫାଲଗୁଣ
ନର୍ଘାତ ବାଣକୁ ସେହୁ ଭେଟିଲା ସେକ୍ଷଣି ।
ଅର୍ଦ୍ଧଚନ୍ଦ୍ରାସ୍ତ୍ର ପେଷିଲେ କୃପ ମହାରଥୀ
ବଜ୍ର ମଦ୍ଦଗରେ ତାକୁ ଅର୍ଜ୍ଜୁନ ନପାନ୍ତି ।
ହସି ବୋଇଲେ ଦ୍ରୋଣଙ୍କ ଶଳା ଏହୁ କୃପ
ଅଳ୍ପପ୍ରବନ୍ଧେ ନ ଛାଡ଼ିବ ଏହାର ଯେ ଦର୍ପ ।
କୃଷ୍ଣବାକ୍ୟେ କ୍ଷୁରଅସ୍ତ୍ର ଅରଜୁନ ବିନ୍ଧି
କୃପାଚାର୍ଯ୍ୟଙ୍କର ଧନୁ ଗୁଣ ଦେଲେ ଛେଦି ।
ଜ ମ୍ୟଭ ଅସ୍ତ୍ରକୁ ପୁଣି ବିନ୍ଧଣ ଅର୍ଜ୍ଜୁନ
କୃପାଚାର୍ଯ୍ୟଙ୍କ ଉଦରୁ ଶୋଚଲେକ କ୍ଷୋଣ ।
ଜନସ୍ତ ଦେ ଭଣ ତହୁଁ ଅନ୍ତରତ ଡାକ୍ତି
ଖଡ୍‌ଗ ଫଳା ଯେହ୍ନ ଉଥୁ ତେଜଭିନ୍ନ ତଡ଼ଙ୍କ ।
ସିଂହର ଗନ୍ତ ପ୍ରାହେକ ପାତେ କ୍ଷେପିଗଲ
ତା ଦେଖି ପାର୍ଥ ଡାକିଲ ଶରକୁ ପେଷିଲା ।
ପୁଣି ଶତେକ ପେଷିଲେ ଖଣ୍ଡ ଗଜନଳା
ସେହୁ ଫୁଟନ୍ତେ ଗଡ଼ିଲା କୃପ ଖଡ୍‌ଗଫଳା ।
ପ୍ରତ୍ୟେକ ରୋମମୂଳରୁ ରକ୍ତ ହେଲା ବୃଷ୍ଟି
କୃପାଚାର୍ଯ୍ୟ ମହୀପରେ ପଡ଼ିଲେ ଯେ ଲୋଟି ।
କୃପ ପଡ଼ନ୍ତେ ଆନନ୍ଦ ହେଲେ ଚକ୍ରପାଣି
ପାଞ୍ଚଜନ୍ୟ ଶଙ୍ଖକୁ ସେ ବଜାଇଲେ ଟାଣି ।
ହାଙ୍କିଲେ ତୁରଙ୍ଗ ତହୁଁ ପ୍ରଭୁ ପଦ୍ମ ଆଖି
ମହାବାତେ ଗଗନରେ ଉଡ଼େ ଯେହ୍ନେ ପକ୍ଷୀ ।
ରଥ ଗଜ ଅଶ୍ୱ ସୈନ୍ୟ ପଥ ନରୋଧନ୍ତେ
ଅର୍ଜ୍ଜୁନ ବିନାଶେ ତାଙ୍କୁ ଅଳ୍ପ ଶସ୍ତ୍ରଘାତେ ।
ନନ୍ଦଘୋଷ ଚଳଯାନ୍ତେ ଖାତକର ମଲ୍ଲ
ଆସେ ଓଗାଳିଲେ ବୀର ସପ୍ତଗୁଣ୍ଡ ଶଲ୍ୟ ।
ବାମେ ଡାହାଣେ ଅଛନ୍ତି ବହୁତର ରଥୀ
ଲକ୍ଷ ମେଳକ ଅଶ୍ୱ ଯେ ଦୁଇସହସ୍ର ହସ୍ତୀ ।
ଲୁହାର ଧନୁ ଅଟଇ ଲୁହା ଖକ୍ଷଣବାଣ
ଶାରଙ୍ଗ ପକ୍ଷୀର ବାଣ ଭର ଦେଲ ଯୋଣ ।
ନାନା ଅଳଙ୍କାରେ ସର୍ବେ ହୋଇଛନ୍ତି ଭୂଷା
ସଜ୍ଜିତ ଅଙ୍ଗେ ହୋଇଛି କାଇମାଟି ଘଷା ।
ପଡ଼ନ୍ତି ଉଠନ୍ତି ପୁଣି ଦଶ ବଂଶ ହିଂଶ
ରାକ୍ଷସ ପ୍ରାୟେକ ସର୍ବେ ଘୋଟନ୍ତି ଆକାଶ ।
ଏହାଙ୍କର କୁଳେ ଥିଲେ ପାଞ୍ଚଅସ୍ତ୍ର ରାଜା
ସମରେ ଅନିବାର ସେ ଦୁଷ୍ଟ ଦର୍ପଗଞ୍ଜା ।

ଶାରଙ୍ଗତ ସୁରଙ୍ଗତ ବୋଲି ଦେନଗସ୍ତ
ଦ୍ୱନ୍ଦ୍ୱଙ୍କର କୁଳେ ଛନ୍ତି ଦଶସହସ୍ର ହସ୍ତ ।
ଦ୍ୱନ୍ଦ୍ୱଙ୍କର ଉରେ ଶୋଭାପାଏ କୋନ୍ତସାଠି
ରେଂରକାର ଶବ୍ଦକରି ଏକମୁଖେ ଉଠି ।
ନାନାଭୂଷଣେ ଭୂଷିତ ହୋଇଛନ୍ତି ଯେଣି
ଝଲଭଲ ଲକ୍ଷିଆ ସେ ବଜ୍ରଭହୁଁ ଜଣି ।
ସ୍ୱର୍ଣ୍ଣଜଡ଼ିତ ଖିରନୀତ ଏ ଦୁଇ ଭଂଗଦ
ନନ୍ଦଘୋଷରଥର ସେ ଭଲେ ଖରଭେଦ ।
ଅର୍ଜ୍ଜୁନ ବନ୍ଧିଲେ ତହୁଁ ବାଣ ଚଉଷଠି
ଏକଭାବେ ଦଶସହସ୍ର ଅଶ୍ୱ ଗଲେ ଫୁଟି ।
ହୋନ୍ତଭାଠି ବୃଷଟେ ସେ ଦେଖି ଖାରପାର୍ଥୀ
ବାଜଲ ଶରେ ଛେଦିଲେ ତାହାଙ୍କର ହସ୍ତ ।
ଅଶ୍ୱପରେ ଅସାଷ୍ଟମ ଦେଲେ ଦଇ ଗସ୍ତ
ସମଦଣ୍ଡ ଦେଖା ଗଲେ ମୁଣ୍ଡା ବୃକ୍ଷ ପ୍ରାୟ ।
କତରି ବାଣ ଛନ୍ଧିଲେ ପୁଣି ଅରଜୁନ
ଯୋଦ୍ଧାଙ୍କର କଟିଠାରୁ କରିଲେ ଛେଦନ ।
ଗଦା ଧରି ଅଶ୍ୱଆରେ ତହିଁ ଯେତେ ଥିଲେ
ବାଣଘାତେ ସର୍ବେ ତହିଁ ତକ୍ଷଣ ପଡ଼ିଲେ
ପ୍ରଶଂସା କରନ୍ତି କୃଷ୍ଣ ସେହୁ ସୁଦ୍ଧ ଦେଖି
ପଢାଇଲେ ଅଶ୍ୱମାନେ ରଥୀଙ୍କୁ ଉପେକ୍ଷି ।
କେଶବ ବୋଇଲେ ଦେଖ ତାକୁ ଧନଞ୍ଜୟ
ଦୁଇ ଦୁଇ ଖଣ୍ଡ କେଲା ସବୁଙ୍କର କାୟେ ।
ଭଷ୍ଟାକ୍ଷ ନୟନ ଦନ୍ତ ଅଧରରେ ଚାପି
ମୃତପିଣ୍ଡ ପଡ଼ିଛନ୍ତି ରଣଭୂମି ବ୍ୟାପି ।
ପାଞ୍ଚ ଅଇବୃତ ଯୋଦ୍ଧା ଅଶ୍ୱ ଏହିପରି ।
କେତେ ପଡ଼ିଛନ୍ତି କରି ନୁହଇ ସୁମାରି ।
ସମସ୍ତେ ବିନାଶ ହେଲେ ନାହିଁ ଦେହୁ ସଖା
ଅସଂଖ୍ୟ ଦଳକୁ କେତେ କରିବ ଯେ ଲେଖା ।
ଶଲ୍ୟ ଏକାଳେ ଆକ୍ରାବଳ ଧନୁ ଧରି
ଶଙ୍ଖାକାର ବୋଲି ଶର ଛାଡ଼େ ଟାଣିକରି ।
କୋଟିଏ ସୂର୍ଯ୍ୟର ପ୍ରାୟେ କିରଣ ପ୍ରକାଶି
ମହା ଉଲ୍‌କାପାତ ପ୍ରାୟେ ପୃଥ୍ୱୀକି ସେ ଦଶି
ବାଣାଘାତେ ଅଶ୍ୱ ଗଜ ରଥୁଣ ନ ପାରି
କଉରବ ଦଳ ସବୁ ପଳାଇଲେ ଡରି ।
ଯୋଜନେ ପର୍ଯ୍ୟନ୍ତେ କେହୁ ନ ପାରିଲେ ରହି
ନନ୍ଦଘୋଷ ସଙ୍ଗେ ଶଲ୍ୟ ରଣ ଯେ କରଇ ।

କୃଷ୍ଣ ପ୍ରଶଂସନ୍ତି ସାଧୁ ଶଲ୍ୟ ତୋ ମହିମା
କ୍ଷତ୍ରୀକୁଳେ ନାହିଁ କେହୁ ତୋହାକୁ ଉପମା ।
ବହୁ ଶର ରହିଅଛି ଶଲ୍ୟଙ୍କର ରଥ
କୃଷ୍ଣାର୍ଜୁନେ ଶର ବିନ୍ଧେ ହୋଇ ସମକକ୍ଷ ।
ଧାର୍ମିକ ବିବେକ ଯେ ମହତ କୁଳଶୀଳ
ଏପରି ବହୁ ପ୍ରଶଂସା କଲେ ଆଦିମୂଳ ।
ଶଲ୍ୟଙ୍କ ପ୍ରଶଂସା ଶୁଣି ପାର୍ଥ ତଳ ହୋଇ
ବୋଲେ କପାଁ ଏବେ ପରଶଂସା ଭାବଗ୍ରାହୀ
କୃଷ୍ଣ ବୋଇଲେ ଅଜ୍ଞାନୀ ଶୁଣ ଧନଞ୍ଜୟ
ନନ୍ଦଘୋଷ ରଥ ତୋର ମେରୁର ପରାୟ ।
ଯୋଚିଅଛି ମହାବଳୀ ପୁଣି ଅଶ୍ୱବର
ଧ୍ୱଜପରେ ହନୁମନ୍ତ ରହିଛି ଆବୋର ।
ଦିବ୍ୟ ପିନାକ ଗାଣ୍ଡୀବ ଧନୁ ତୋର କରେ
ପାଶୁପତ ଶର ପୁଣି ଅଛି ତୋ ତୂଣୀରେ ।
ତ୍ରିଜଗର କର୍ତ୍ତା ମୁହିଁ ତୋ ରଥେ ସାରଥି
ଶଙ୍ଖ ଚକ୍ର ହସ୍ତେ ପୁଣି ବିରାଟ ମୂରତି ।
ଏ ରୂପ ଦେଖିଲେ ମୋର ହାସ କରେ ବ୍ରହ୍ମା
ଜାଣିଲେ ଜଗତେ ମଲ୍ଲ ଏବେ ଶଲ୍ୟ ବ୍ରହ୍ମା
ନ ଥିଲା ଏପରି କେହୁ ଆଉ କେ ହୋଇବ
ଏପରି କହି ଶଲ୍ୟଙ୍କୁ ପ୍ରଶଂସନ୍ତେ ଦେବ ।
ଅର୍ଜୁନ ଶଲ୍ୟ ପ୍ରଶଂସା ଶୁଣିଣ ରାଗିଲେ
ବେଖା ବେଖା ବାଛିକରି ବାଣ ବୃଷ୍ଟି କଲେ
ତୁରଙ୍ଗଙ୍କୁ ବିନ୍ଧିଲେ ପାଞ୍ଚ ପାଞ୍ଚ ଶର
ଦଶବାଣ ବିନ୍ଧିଲେ ସେ ସାରଥି ଉପର ।
ଧ୍ୱଜକୁ ବିନ୍ଧିଲେ ପୁଣ ପଞ୍ଚବାଣ ଯୋଚି
ଶଲ୍ୟକୁ ହାକୋଡ଼ା ଶର ମାରେ ସବ୍ୟସାଚୀ
ଅସ୍ୱପଡ଼ନ୍ତେ ଘୋଟକେ ହୋଇଗଲେ ଚୂନା
ସାରଥି ମଲା ଭେଦିଲା ସୈନ୍ୟଙ୍କର ସେନା
ରଥ ଖଣ୍ଡଖଣ୍ଡ ହୋଇ ପଡ଼ନ୍ତେଣ ଭଗ୍ନ
ଭୂମିରେ ଶଲ୍ୟ ପଡ଼ିଲେ ହୋଇ ଗଳଗାଜ ।
ପୁଣ କୃତାନ୍ତକ ବାଣ ବିନ୍ଧିଲେ ଅର୍ଜୁନ
ରହ ରହ ପାର୍ଥ ଡାକ ଦେଲେ ଜନାର୍ଦ୍ଦନ ।
ହେ ପାର୍ଥ ଶୁଣ ତୁ ଏବେ ମୋହର ବଚନ
ଏହାଙ୍କୁ ବଧ କରିବା ଅଟେ ଅକାରଣ ।
ବିଶେଷେ ଆମ୍ଭର ଗୁରୁ ସେ ପଣ୍ଡୁଙ୍କ ଶଳା
ଆବର ଅଟନ୍ତି ସହଦେବଙ୍କ ମଉଳା ।

ଏହା କହି ସେ ସ୍ଥାନରୁ ରଥ ନେଲେ ବାହୁ
ବେନ ଓଧି ତଳେ ଶଲ୍ୟ ରଥୀ ଗଲେ ରହୁ ।
ପୁଣି ଯାଇ ଆଉ ରଥେ କରି ଆରୋହଣ
ଧନୁ ଶସ୍ତ୍ର ଘେନ ଉଠିଲେକ ତତକ୍ଷଣ ।
ପାଞ୍ଚଶତ ଯୋଦ୍ଧା ଘେନ ସମ୍ମୁଖରୁ ଶଲ୍ୟ
ନନ୍ଦଘୋଷ ଓଗାଳିଲେ ହୋଇ କୋପାନଳ ।
ତା ପାଶକୁ ନନ୍ଦଘୋଷ ରଥ ନ୍ୟନ୍ତେ ବଳ
ଦଶାଶତ ଶର ଶଲ୍ୟ ବିନ୍ଧେ ଧନୁ ତୋଳ ।
ଅପ୍ରମିତେ ବାଣ ବିନ୍ଧେ ବୀରବର ପାର୍ଥ
ପର୍ବତମାନେ କମ୍ପନ୍ତି ପାଇ ସେ ଆଘାତ ।
ସେହି ବାଣ ଶଲ୍ୟଙ୍କର ଅସ୍ତ୍ରମାନ କାଟି
ସେ ଆଘାତେ ବହୁ ସୈନ୍ୟ ପଡ଼ିଲେକ ଲୋଟି
ଅଶୀଲକ୍ଷ ହସ୍ତୀ ତିନିଲକ୍ଷ ଯେ ପ୍ରବାତ
ନବକୋଟି ମୁକୁଟବନ୍ଧା ସାତକ୍ଷୌଣୀ ରଥୀ ।
ଏ ପାଞ୍ଚ ଫଳାରମଧ୍ୟେ ବଢ଼ାଇ ଗହଳ
ରଥ ଗଜ ଦିଶନ୍ତି ଯେ ଜାଣି ମେଘମାଳ ।
ଏହି ସମୟକୁ ଅଛି ବାକି ଅଧେ ଦିନ
ଘୋର ଅନ୍ଧକାରମୟ ଦିଶଇ ଗଗନ ।
ମହା ବନସ୍ତରେ ଯେହ୍ନେ ଶାଳବୃକ୍ଷମାନେ
ରଥ ଗଜ ଅଶ୍ୱମାନେ ଦେଖାଯାନ୍ତି ତେହ୍ନେ ।
ଏକକୁ ଆରେକ ଚହିଁ କରନ୍ତି ଉତ୍ତର
ଅକାଳେ କପାଁ ଗର୍ଜ୍ଜଇ ଏହି ଜଳଧର ।
ସୈନ୍ୟ ଦେଖିଣ ସାନନ୍ଦ ବୀର ଫାଲଗୁନ
ଅତ୍ୟନ୍ତ କ୍ରୋଧରେ ବାଣ ବିନ୍ଧିଲେକ ତିନ ।
ଜଳ ମେଦୁର ପଲକା ଏହି ତିନିବାଣେ
ଜଳବୃଷ୍ଟି ହେଉଅଛି କି ଧାରା ଶ୍ରାବଣେ ।
ଅନ୍ଧାର ବାଣ ମାଇଲେ ଶଲ୍ୟ ଦେବରାୟ
ତହାରେ ପୃଥ୍ୱୀ ଦିଶିଲା ଅନ୍ଧକାରମୟ ।
ଉଭୟ ଥାଟ ମଧ୍ୟରେ ସର୍ବେ ହେଲେ କଣା
କାରଣ ନ ହେଲା କେହୁ ପର କେ ଆପଣା ।
ଏକର କୋଣ ଆରେକ ନଏ ହିଙ୍କିକରି
କାହାର ଅସ୍ତ୍ରକୁ କେହୁ ନପାରି ଓଟାରି ।
ଅନ୍ୟେ ଅନ ହୋଇଲେ ଯେ କୌରବ ସଇନ
ବନ୍ଧୁ ସୋଦରଙ୍କୁ କେହି ନ ପାରିଲେ ଚହ୍ନି ।
କେ ରଜା କେ ରଥୀ ବୋଲି ନ ପାରିଲେ ବାରି
ଆପଣା ମଧ୍ୟରେ ସର୍ବେ ହେଲେ ମରାମରି ।

ପଞ୍ଚଷଠି ସୈନ୍ୟ ଘେନ ଶଲ୍ୟ ମହାରଥୀ
ଷାଠିଏ ଷାଠିଏ ବାଣ ବନ୍ଧିଲେ ଝଟତି ।
ଅପ୍ରମିତ ବାଣ ପର୍ବ୍ବ ହୋଇଲାକ ବୃଷ୍ଟି
ପବନ ବେଗ କରଣ ପାର୍ଥ ତାହା କାଟି ।
ବେଢ଼ିଣ ବନ୍ଧନ୍ତେ ସର୍ବେ ଧର୍ମଙ୍କର ତେଜ୍ୟା
ଏକ ରଥୀକୁ ବେଢ଼ିଲେ ପାଞ୍ଚସହ୍ସ୍ର ସଜା ।
ନନ୍ଦଘୋଷ ଚଉକତି ପଡ଼ୁଅଛୁ ଶର
ଅଶ୍ୱ ସାରଥି ରଥୀ ଯେ ନ ଦିଶେ କାହାର ।
ଶ୍ରୀଭୁଜରେ ପାଶୁପତ ଘେନ ବୀର ପାର୍ଥ
ବନ୍ଧିଣ ସକଳ ଅସ୍ତ୍ର କରିଲେ ବ୍ୟର୍ଥ ।
ଜଳବୃଷ୍ଟି ପ୍ରାୟେ ଶର ପଡ଼ଇ ଗଗନୁ
ସେ ଶରମାନ ଗିଳଇ ଧ୍ୱଜେ ଥାଇ ହନୁ ।
ବାଦଲଶର ପେଷିଲେ କୋପେ ଧନଞ୍ଜୟ
ବାଜନ୍ତେ ସୈନ୍ୟ ଲେଟିଲେ ଉନ୍ମାଦନ ପ୍ରାୟ ।
ପୁଣି ପରଘ ଶରକୁ ପାର୍ଥ କରେ ଧରି
ମାରନ୍ତେ ପଡ଼ିଲେ ଗଜମାନେ ପ୍ରାଣହାରି ।
ମନଭେଦୀ ନାରାଚକୁ ବନ୍ଧେ ଧନଞ୍ଜୟ
ମଧ୍ୟଭୁବନ ସଇନ୍ୟ ସର୍ବେ ହେଲେ କ୍ଷୟ ।
ଆଠକ୍ଷୌଣୀ ସୈନ୍ୟ ଅଖଟକ ମଧ୍ୟେ ଥିଲେ
ମନଭେଦୀ ଶରଘାତେ ସମସ୍ତେ ପଡ଼ିଲେ ।
ରତନମଣି ମୁକୁଟ ଭୂଷା ଜଗତ୍‌ଜଳା
ସିମନ୍ତମୀ ବାହୁଟି ଯେ କଣ୍ଠ ରତ୍ନମାଳା ।
ହୀରକ ମଣିମାଣିକ୍ୟ ଅଙ୍ଗଭୂଷାଚୟ
ତଳେ ପଡ଼ିଣ ଦିଶନ୍ତି ନକ୍ଷତ୍ର ପରାୟ ।
ସାତକ୍ଷୌଣୀ ଦଳ ତହିଁ ଥିଲେ ଅତିରେଖା
ଏକ ପ୍ରହାରକେ ସର୍ବେ ହୋଇଲେ ନିରେଖା ।
ମନଭେଦୀ ଶରେ ନ ରହିଲେ ଏକଜଣ
ସେହି ଠୋପରେ ରଙ୍ଗ ଯେ ବାହୁଟି କଙ୍କଣ
ଶରୀର ରଙ୍ଗ ହୋଇଣ ତଳେ ଅଛି ପଡ଼ି
ନ ଜାଣି ଗଗନୁ ଅସ୍ତ୍ରରତ୍ନ ପଡ଼େ ଝଡ଼ି ।
ଗଜ ଅଶ୍ୱ ମନୁଷ୍ୟର ଦେହରୁ ଯେ ଗଳ
ରୁଧିରମାନ ବହୁଛି କି ଘୋରବ ଜଳ ।
ଗଜ ଅଶ୍ୱ ମନୁଷ୍ୟଙ୍କ ମଢ଼ା ମେଳା ମେଳା
ରକ୍ତନଦେ ଭାସିଯାନ୍ତି ଯେସନେକ ଭେଳା ।
ବନକର ଅସିଣ ଯେ ନବଘଡ଼ ହେଲେ
ତୃଷାରେ ଯୋଦ୍ଧାଏ ଅସ୍ତ୍ର ଧରି ନ ପାରିଲେ ।

ସମରେ ଶ୍ରମରେ ସେହୁ ପାଇ ମହାଦୁଃଖ
ରଣ ଛାଡ଼ି ପଳାଇଲେ ହୋଇଣ ବିମୁଖ ।
ମନଦୁଃଖେ ଯୋଦ୍ଧାମାନେ ବୋଲେ ରହ ବାବା
ଯୁଦ୍ଧେ ମରଣ ସୁଲଭ ଆଉ କି ପାଇବା ।
ନ ସତେ ପଡ଼ୁଛନ୍ତି କେ ଦେଉଛନ୍ତି ଝାସ
ଶ୍ରୀକୃଷ୍ଣ ମୁଖ ଦର୍ଶିଣ ବଇକୁଣ୍ଠେ ବାସ ।
ମହାଭାରତ ସମର ହେଉଅଛି ଏଣେ
ଆକାଶରେ ରହି ଦେଖୁଛନ୍ତି ଦେବଗଣେ ।
ଧର୍ମ ଅଧର୍ମ ଦେଖିଣ କରୁଛନ୍ତି ଗୋଳ
ଧର ଧର ମାର ମାର ଶୁଭଇ ଚହଳ ।
ଫୁଟି ଲେଟି ପୁଣି କେ ଉଠନ୍ତି ମୋହ ଛେଦି
ରଣରଙ୍ଗ ଦେଖିଣ କେ ଧାମେ ଗଳଗାଜ ।
ସୈନ୍ୟଙ୍କ ବିନାଶ ଦେଖି ଶଲ୍ୟ ସେନାପତି
ରଣେ ଅଗ୍ରସର ହେଲେ ହୋଇ କୋପ ମୂର୍ତ୍ତି ।
ଶ୍ରୀଭୁଜେ କୋଦଣ୍ଡ ସମ ଧନୁ ଏକ ଧରି
ଦିଶନ୍ତି ଯେସନ୍ତେ ପିନାକଧାରୀ ତ୍ରିପୁରାରି ।
ସୁବର୍ଣ୍ଣ ରଥରେ ବ୍ୟାଘ୍ର ଚର୍ମର ଛାଉଣି
କେଶରୀର ଲାଙ୍ଗୁଳ ଯେ ଚାପରେ ଓଢ଼ଣି ।
ଇନ୍ଦ୍ର ଶରାସନ ପ୍ରାୟ କରରେ କୋଦଣ୍ଡ
ତାକରେ ମଧ୍ୟ ଜନ୍ମାଏ ସରତର ଷଣ୍ଢ ।
ବିଶାଶତେ ତକ୍ୟଅସ୍ତ୍ର ଲିହା ତୀକ୍ଷ୍ଣ ମୁନା
ଆକର୍ଷି ବନ୍ଧିଲେ ଶଲ୍ୟ ଅର୍ଜ୍ଜୁନଙ୍କ ସେହି ।
ପୁଣି ସତେ ସହସେକ ବାଣ ଘେନ କରେ
ତିଶରି ବନ୍ଧିଲେ ଶଲ୍ୟ ଅର୍ଜ୍ଜୁନ ଉପରେ ।
ପୁନରପି ବିଂଶ ତ୍ରିଂଶ ପୁରାଇଣ ବାଣ
ପାର୍ଥ ସାରଥି କୃଷ୍ଣଙ୍କୁ ବନ୍ଧିଲା ତକ୍ଷଣ ।
ପୁଣି ତୂଣୀରରୁ କାଢ଼ି ଚଉଷଠି ଶର
ଚାରି ଅଶ୍ୱଙ୍କ ଉପରେ ବନ୍ଧିଲେ ସତ୍ୱର ।
ହସ୍ତର ବ୍ୟଗ୍ରତାପଣ କହି ତା କେ ପାରି
ରଣଝଣ ଶବଦରେ କମ୍ପେ ବସୁନ୍ଧରୀ ।
ଶ୍ରୀକୃଷ୍ଣ ବୋଇଲେ ତୁ ହୋ ଦେଖ ଫାଲଗୁନ
ଶଲ୍ୟର ଶର ଘୋଟିଲା ସର୍ବାଙ୍ଗ ମେଦିନୀ ।
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଆଜ୍ଞାର ସେ ବନ୍ଧୁ
ଶେଷ ହେବା ଯାଏ ଶର ଦୁଇହୋଣ ମଧ୍ୟ ।
ଶ୍ରୀକୃଷ୍ଣ ବୋଇଲେ କହୁ କୁତୂହଳ କଥା
ମଧ୍ୟସ୍ଥାନ ଆସି ହେଲେ ଆଦିତ୍ୟ ଦେବତା ।

ଜୟଦ୍ରଥେ ନ ଭେଟିବା ଯାଏ ମୋର ଅସ୍ତ୍ର
ତୁ ଏ ଯୁଦ୍ଧ ମଣୁଅଛୁ ସାମାନ୍ୟରି ପ୍ରାସ୍ତ ।
ଅର୍ଜୁନ ବୋଲେ ସାରଥି କୃଷ୍ଣ ଯାଉ ରଥେ
କଣ୍ଟକ ପ୍ରାୟେକ ମଣେ ସେହି ଜୟଦ୍ରଥେ ।
ଏହିକ୍ଷଣି ମୋ ସମ୍ମୁଖରେ କଏ ଠିଆହେବ
ଶକଟ ବ୍ୟୂହରେ ଆଜ ମୋ ଯୁଦ୍ଧ ଦେଖିବ ।
ବଜାସ୍ତ୍ର କରବାନ ଯେ ଆଉ ପଥବାଣ
ପାର୍ବଣୀ ଯା ଦେଇଥିଲେ ହୋଇ ତୋଷ ମନ
କୌଣସି ଯୁଦ୍ଧ ସମୟେ ପ୍ରୟୋଗ ନ କରି
ରଖିଥିଲେ ପାର୍ଥ ତାହା ଅଭିଯତ୍ନ କରି ।
ଧନୁରେ ଯୋଡିଲେ ପୁଣି ହୋଇ କୋପମୂର୍ତ୍ତି
ଗୁଣ ଆକର୍ଷି ଶଲ୍ୟଙ୍କୁ ବିନ୍ଧିଲେକ ଧାତି ।
ସେ ନଡାଗ ବାଣ ପଡେ ହୋଇଣ ସୁଚକ୍ର
ହୟ ସାରଥି ଦୁହିଙ୍କ କାଟିଦେଲା ମୁଣ୍ଡ ।
ସେ ଅସ୍ତ୍ରର ତେଜ ପାଇ ରଥ ଗଲା ଫାଟି
ଶଲ୍ୟଙ୍କ ପରେ ପଡିଲା ବଜ୍ରସମ ଚୋଟି ।
ଯେସନେକ କାଳସର୍ପ ପଶଇ ବିବରେ
ସେପରି ବାଣ ଭେଦିଲା ଶଲ୍ୟଙ୍କ ଶରୀରେ ।
ସେମେ ସେମେ ଭେଦବାରୁ ବୋହିଲା ଶୋଣିତ
ସେନାସହ ଦେହ ହେଲା ରୁଧିରେ ଜଡିତ ।
ଯାଏ ଅସାଷ୍ଟମ ହେଲେ ଇଚ୍ଛାବଶି ବାନ
ଗୋବିନ୍ଦ ବୋଇଲେ ଯାଉ ହେବ ବକ୍ଷସ୍ଥଳ
ଅର୍ଜୁନ ବୋଇଲେ ଶୁଣ ଦେବ ଶିରିପତି
ସୋଦର ମଉଳା ଏହୁ ଥାଆନ୍ତୁ କରନ୍ତି ।
ଶରଘାଏ ମୋହ ଗଲେ ଶଲ୍ୟ ସେନାପତି
ଅନ୍ୟପକ୍ଷେ ମୋର ରଥ ବାହା ହେ ଶ୍ରୀପତି
ଅର୍ଜୁନ ବଚନେ ତହୁଁ ଦେବ ଦଇତ୍ୟାରି
ଶୂନ୍ୟପଥେ ବାହିନେଲେ ରଥ ବେଗକରି ।
ଷଷ୍ଠ ଫଳରେ ଦେଖିଲେ କହୁସୈନ୍ୟ ଗୋଳ
ଯୋଜନ ପର୍ଯ୍ୟନ୍ତେ ମାଡି ପଡିଛୁ ତହିଳ ।
ଶ୍ରୀକୃଷ୍ଣ ବୋଇଲେ ଦେଖ ବୀର ଫାଲଗୁନ
ତୃଷାତୁରେ ଅଶକତ ହେଲେଣି ସଇନ ।
ରୁଧିର ଜଡିତ ହେଲା ଅଶ୍ୱଙ୍କର ଦେହ
ତୃଷାର ଆକୁଳେ ଚଳି ନ ପାରନ୍ତି ହସ୍ତୀ ।
କୃଷ୍ଣଙ୍କ ବଚନ ଶୁଣି ବୀର ଫାଲଗୁଣୀ
ଜଳତରଙ୍ଗ ନାମରେ ଅସ୍ତ୍ର ଏକ ଘେନି ।

ଆକର୍ଷି ବଜ୍ରନ୍ତେ ତାହା ବାସବ ନନ୍ଦନ
ସହସ୍ରଧାର ହୋଇ ଜଳ ଉଠିଲା ବହନ ।
ସୁଶୀତଳ ସୁନର୍ମଳ ସୁବାସିତ ନୀର
ବୃଷ୍ଟି ହୋଇ ବହିବାକୁ ଧରଣୀ ଉପର ।
ତୃଷାର ଆକୁଳେ ଥିଲେ ଅଶ୍ୱ ଗଜ ସୈନ୍ୟ
ଯେଝା ଇଚ୍ଛାସୁଖେ ସର୍ବେ କଲେ ଜଳପାନ
ତୃଷା ହରନ୍ତେ ସମସ୍ତେ ହୋଇ ତୋଷଚିତ୍ତ ।
ଏକମୁଖେ ପ୍ରଶଂସନ୍ତି ସାଧୁ ସାଧୁ ପାର୍ଥ
ଏ ମହାଭାରତ ଯୁଦ୍ଧେ ତୋ ମହିମା ଧନ୍ୟ
ସାଧୁ ତୋର ପିତା ମାତା ଧନ୍ୟ ଅରଜୁନ ।
ଶତ୍ରୁଙ୍କଠାରେ ତୁ ଆଉ ଏତେ ପରସନ୍ନ
ତ୍ରୈଲୋକ୍ୟ ମଧ୍ୟରେ ତୋର ଜୀବନକୁ ଧନ୍ୟ
ଏ ମହୀମଣ୍ଡଳେ ତୁହି ଭୁଞ୍ଜି ଅଇଶ୍ୱର୍ଯ୍ୟ
ଆମ୍ଭର ଆୟୁଷ ଘେନି ସୁଖେ କର ରାଜ୍ୟ ।
କୌରବ ଥାଟରେ ଶୁଭେ ଏସନକ ଧ୍ୱନି
ଶ୍ରୀକୃଷ୍ଣ ବୋଲନ୍ତି ଶୁଣ ବୀର ଫାଲଗୁନ ।
ସକ୍ରୋଧ ହୋଇଣ ସୈନ୍ୟେ ଅସ୍ତ୍ରଶସ୍ତ୍ର ଧରି
ଯେ ଯାହାର ସ୍ଥାନେ ଯାଇ ରହିଲେ ଆବୋରି
ସୁନା ଟୋପର ଉପର ମୁକୁଟ ବା ଶିରେ
ଚାନ୍ଦ ତୋଡର କାନ୍ଥଟୀ ଶୋଭାପାଏ କରେ ।
କୃପାଣ ପରଶୁ ଗଦା ଆଉ ମୁଦୁଗର
କୁନ୍ତ ଖଡ୍ଗ ଗୁପ୍ତିଜାଦି ଯେ କଣ୍ଠ କଟାର ।
ଶସ୍ତ୍ରଙ୍କର ଶବ୍ଦମାନ ଶୁଭେ ରଣଝଣ
ରଙ୍ଗବସ୍ତ୍ର କରିଛନ୍ତି ସର୍ବେ ପରିଧାନ ।
କଳକଳା ଶବଦରେ ଉଠେ ମହାଧ୍ୱନି
ମେଘପୁଞ୍ଜ ଡାକୁଥିଲେ ଯେସନେ ଡାକନ୍ତି
ମହାରଥୀଙ୍କର ବଳ ସର୍ବେ ବଳବନ୍ତା
ଅଶ୍ୱତ୍ଥାମା କୁଳେ ପାଞ୍ଚକୋଟି ଗଜଦନ୍ତା ।
ଦେଖ ଅସ୍ତ୍ର ବୁଲାଇଣ ଆସୁଛନ୍ତି ବଳୀ
ନନ୍ଦିଘୋଷକୁ ଆସନ୍ତି ଓଗାଳିବେ ବୋଲି ।
ଭାରତେ ଯେ ମହାମଲ୍ଲ କ୍ଷତ୍ରିୟ ଉତ୍ତମା
ଧନୁର୍ଦ୍ଧର ହାର ଜଗିଅଛୁ ଅଶ୍ୱତ୍ଥାମା ।
ଅନ୍ଧକ ନିଧନ କାଳେ ଯେଉଁହ୍ନେ ତ୍ରିପୁରାରି
ଅଶ୍ୱତ୍ଥାମାର ମୂରତି ଦିଶେ ସେହିପରି ।
ସ୍ଫଟିକର ରଥେ ଅସ୍ତ୍ରରହିର ଖଞ୍ଜିଣି
ସ୍ୱର୍ଣ୍ଣମୃଗ ଚର୍ମ ତହିଁ ହୋଇଛି ପୁରଣି ।

ହନୁ୍ୟାଙ୍ଗ ପ୍ରତିମା ନେତ ଉଡୁଅଛୁ ଚିହ୍ନ
ସୁବର୍ଣ୍ଣର ରଥ ଘୋଟି ଦିଶେ ଶୋଭାବନ ।
ଦେଖ କେଶରୀର ତୁଲ୍ୟ ଦ୍ୱାରେ ଅଛି ରକ୍ଷ
ଅର୍ଜ୍ଜୁନ ବୋଇଲେ ପ୍ରଭୁ କହୁ ଚକ୍ରାନାହିଁ ।
ଅଶ୍ୱତ୍ଥାମା ନିକଟକୁ ରଥ ବାହା ମୋର
ଶୁଣି ରଥ ଚଳାଇଲେ ପ୍ରଭୁ ଚକ୍ରଧର ।
ଦ୍ୱାର ଜଗି ଅଶ୍ୱତ୍ଥାମା ବିହ୍ୱଳକ ରଥେ
ପୃଥ୍ୱୀ ଟଳଟଳ କରି ନନ୍ଦିଘୋଷ ଯାନ୍ତେ ।
ଧ୍ୱଜରେ ଦିଶଇ କପିକେତନର ଚିହ୍ନ
ଦ୍ରୋଣପୁତ୍ର ଦେଖିକରି ଜାଣେ ପ୍ରଥମନ
ବ୍ୟୂହ ଭେଦି ଆସେ କପିକେତନର ଧ୍ୱଜ
ସାରଥି ଅଛନ୍ତି ନିଜେ ପ୍ରଭୁ ଦେବରାଜ ।
ଦଶ ଅର୍ବୁଦ ଯୋଦ୍ଧାଙ୍କ ସଙ୍ଗରେ ଘେନିଣ
ପିତା ପ୍ରଥମ ଦ୍ୱାରରେ ଥିଲେକ ଜଗିଣ ।
ପାଞ୍ଚକୋଟି ଯୋଦ୍ଧା ଘେନି ଦୁଃଶାସନ ବୀର
ଜଗି ରହିଥିଲା ସେହି ଦ୍ୱିତୀୟ ଦୁଆର ।
କୃପ ଆଚାର୍ଯ୍ୟ ଆବର ସପ୍ତଗୁରୁ ଶଲ୍ୟ
ତୃତୀୟ ଦୁଆର ଜଗିଥିଲେ ମହାମଲ୍ଲ
ଦଶଲକ୍ଷ ଯୋଦ୍ଧା ତେର ଶତ ପାଣିଦଣ୍ଡ
ଏକା ଜଣକେ ଛେଦିଲା ଏତେକର ମୁଣ୍ଡ ।
ଭୀମ ନକୁଳାଦି କେହି ସଙ୍ଗରେ ନାହାନ୍ତି
ଏକାକେ ଜୟର ନାଶକଲା ଏ ସବୁନ୍ତି ।
ଶକଟବ୍ୟୂହ ଭେଦିଣ ଆସେ ଏକା ରଥେ
ଯୋଦ୍ଧାମାନେ ତ କେ କାହିଁ ନାହାନ୍ତି ଜୀବିତେ
ଜୟଦ୍ରଥ ଯେବେ ଏଥି ପଳାଇ ଥାଆନ୍ତା
ଏତେ ପ୍ରମାଦ କପାଳେଁ ଆମ୍ଭଙ୍କୁ ପଡ଼ନ୍ତା ।
ଜଣକ ପାଇଁକି ପିତା କଲେ ମନ୍ଦପଣ
ଶକଟବ୍ୟୂହ ରଚିଲେ ସେହି ଅକାରଣ ।
ମୋତେ ଜାଣି ପଦ୍ମବ୍ୟୂହ ଭେଦିବ ବିଜୟ
ଜୟଦ୍ରଥ ପ୍ରାଣ ଆଜ ଗଲାକ ନିଶ୍ଚୟ ।
ପୁଣ ଶୁଣେ ଦ୍ରୋଣପରି ପିତା ନାଶଗଲେ
କୃପାଚାର୍ଯ୍ୟ ଦୁଃଶାସନ ପ୍ରାଣ ହରାଇଲେ ।
ମାତା ସହୋଦର ଆଉ ପିତା ମଲେ ରଣେ
ମୁଁ କର୍ଣ୍ଣ ଜୀବନ ଘେନି ଥିବି ଅକାରଣେ ।
ମଲେ ମରିବି ପଛକେ ଅର୍ଜ୍ଜୁନର ଶରେ
ସମର କରିବି ନିଶ୍ଚେ ମୁଁ ପ୍ରାଣପଣରେ ।
ମାଧବ ଏ ପାଣ୍ଡବଙ୍କୁ ଉପ୍ରୋଧ ଉପେକ୍ଷି
କୃଷ୍ଣ ଅର୍ଜ୍ଜୁନକୁ ଆଜ କେ ପାରିବ ରକ୍ଷି ।
ଯଦ୍ୟପି କପିକେତନ ଅଛି ହନୁମାନ
କେ ସହିପାରିବ ଆଜ ଅଶ୍ୱତ୍ଥାମା ରଣ ।
ପିତା ନିଧନେ ମନରୁ ଗୁଚିଲା ଉପ୍ରୋଧ
ନିରୁପ୍ରୋଧ ହୋଇ ତହିଁ ଆରମ୍ଭିଲା ଯୁଦ୍ଧ ।
ଅଜଗର ସମ ଅଶୀସସ୍ର ବଳ ଧନୁ
ଧରି ପର୍ଶୁରାମ ପରି ଦିଶେ ଦ୍ରୋଣସୂନୁ ।
ହର୍ଯ୍ୟ ଅସ୍ତ୍ର ପୂରାଇଣ ରଥ ଅଗ୍ରେ କରି
ନନ୍ଦିଘୋଷ ରଥକୁ ସେ ରହିଲା ଆବୋରି ।
ମହା ମତ୍ତଗଜ ଚଢ଼ି ତୌଦଲକ୍ଷ ଯୋଧୀ
ଏକମୁଖ ହୋଇ ସର୍ବେ ପାର୍ଥେ ଶର ବିନ୍ଧି ।
ମହାତଳପୀ ଯୋଦ୍ଧା ସେ ଅଟେ ଅଶ୍ୱତ୍ଥାମା
ସେ ହସ୍ତେ ଅସ୍ତ୍ର ଧରନ୍ତେ ନାସକରେ ବ୍ରହ୍ମା ।
ତିନିଭୁବନ ମଧ୍ୟରେ ଏକ ମହାବୀର
ମେଦିନୀ ସହି ନ ପାରେ ଅଶ୍ୱତ୍ଥାମା ଭର ।
ପର୍ଶୁରାମ ସମ ଅଟେ ଯାହାର ମହିମା
ଇନ୍ଦ୍ର ସମାନେ ଯାହାର ଗର୍ଜ୍ଜନ ବଢ଼ିମା ।
ପବନ ସମାନେ ଯେହୁ ବଡ଼ ବଳବନ୍ତ
ପୃଥ୍ୱୀ ଲଙ୍ଘିବାକୁ ସେହି ଅଟେ ସାମରଥ ।
ଅଶ୍ୱତ୍ଥାମାର ପ୍ରତିଜ୍ଞା ନ ସରେ କହନ୍ତେ
ଘୋଟିଲା ସେ ଏକା ରଥେ ନନ୍ଦିଘୋଷ ରଥେ
ଅଶ୍ୱତ୍ଥାମା ସେ ସାଗରେ ଅଟେ ସେତୁବନ୍ଧ
ନାରାଚ ବର୍ଷାଇ ବେଗେ ଆରମ୍ଭିଲା ଯୁଦ୍ଧ ।
ପୁଣି ପଞ୍ଚଦଶ ବାଣ ପୂରାଇଣ ଦ୍ରୋଣି
ନନ୍ଦିଘୋଷ ଉପରକୁ ବିନ୍ଧିଲାକ ଟାଣି ।
ନାରାଚ ଆସୁ ପାର୍ଥଙ୍କ ପଡ଼ିଗଲା ଦୃଷ୍ଟି
ପାଞ୍ଚଶରେ ସେ ବାଣକୁ ପକାଇଲେ କାଟି ।
ପୁଣି ଅଶ୍ୱତ୍ଥାମା ବାଣ ପଞ୍ଚାଶ ବିନ୍ଧିଲା
ଏକା ଶରେ ପାର୍ଥେ ତାହା ଦୂରୁ ନିବାରିଲା ।
କୋପଭରେ ଅଶ୍ୱତ୍ଥାମା ମାରେ ମୁଦ୍ଗରେ
ଅର୍ଜ୍ଜୁନ ନିବାରିଲା ତା ଖଣ୍ଡମୁନା ଶରେ ।
ରୁଦ୍ରଶର କାଣ୍ଡେ ଯୋଚି ବିନ୍ଧିଲେ କିରୀଟୀ
ଅଶ୍ୱତ୍ଥାମା ସେହ୍ନା ଫୁଟି ଦେହେ ଯାଇ କଣ୍ଟି ।
ରୁଧିରେ ଜର୍ଜ୍ଜର ହେଲା ଅଶ୍ୱତ୍ଥାମା କାୟ
କୋପଭରେ ଗର୍ଜ୍ଜେ ସେହୁ କାଳସର୍ପ ପ୍ରାୟ ।

ପଙ୍କଜାସ୍ତ୍ର ଗୁଣେ ଯୋଚି ଦ୍ରୋଣୀ ବେଗେ ମାରି
ନନ୍ଦିଘୋଷ ଉପରେ ଗର୍ଜି ଗଲେ ଗିରି ।
ଆସନ୍ତେ ପଙ୍କଜ ଘୋଟି ଦେଖି ସବ୍ୟସାଚୀ
ବଜ୍ରବାଣକୁ ବିନ୍ଧିଲେ ଗୁଣକୁ ଆମନ୍ତ୍ରି ।
ମହାନାଦରେ ଗର୍ଜନ ଗଲା ବଜ୍ରଶର
ପଙ୍କଜକୁ ଚୂର୍ଣ୍ଣ କଲା କରି ସେ ପ୍ରହାର ।
ପନ୍ନଗାସ୍ତ୍ର ଅଶ୍ୱତ୍ଥାମା ପୁନରପି ପେଷି
ଗର୍ଜି ସର୍ପ ଗଲା ନନ୍ଦିଘୋଷକୁ ଗରାସି ।
ଗର୍ଜନ କରିଣ ବେଗେ ଗଲା ସେ ଭୁଜଙ୍ଗ
ଫଣା ଟେକି ମିଳିଲା ସେ ନନ୍ଦିଘୋଷ ଆଗ ।
ତାକୁ ଦେଖି ଗରୁଡ଼ାସ୍ତ୍ର ଛିନ୍ଦନ୍ତେ କିରୀଟୀ
ଅଶ୍ୱତ୍ଥାମା ଅସ୍ତ୍ରବର ପଳାଇଲା ହଟି ।
ପୁଣି ଦ୍ରୋଣସୁତ ମନେ ବହୁ ମହାରାଗ
ଅଗ୍ନି ଅସ୍ତ୍ରକୁ କାଢ଼ିଣ ପେଷିଲେ ସେ ବେଗ ।
ସେ ପ୍ରଚଣ୍ଡ ଅଗ୍ନିଶର ଉଠିଲା ସତ୍ୱର
ଦେଖାଗଲା ଯେସନେ ଦଗ୍ଧ କରିବ ସଂସାର ।
ଅଶ୍ୱତ୍ଥାମାର ମହିମା ବେଦେ ଅଗୋଚର
ତା ଚତୁର୍ଗୁଣ ପାର୍ଥ ସହସ୍ରବଳ ଧନୁର୍ଦ୍ଧର ।
ବାଲ୍ୟକାଳୁ ଅଶ୍ୱତ୍ଥାମା ପାର୍ଥ ଦୁଇଜଣ
ସକଳ ଅସ୍ତ୍ର ବିଦ୍ୟାରେ ଅତ୍ୟନ୍ତ ନିପୁଣ ।
ବେନିଏ ଷୋଡ଼ଶମୂର୍ତ୍ତି ଅତ୍ୟନ୍ତ ଅଭେଦ
କ୍ଷତ୍ରବୃତ୍ତି ଆଚରଣ କରନ୍ତି ସେ ଯୁଦ୍ଧ ।
ପ୍ରଚଣ୍ଡ ଅନଳ ଶର ବିନ୍ଧିଥିଲା ଦ୍ରୋଣି
ଜଳଧର ଶରେ ପାର୍ଥ ନିବାରିଲେ ପୁଣି ।
କୃଷ୍ଣ ଦେଖି ପ୍ରଶଂସନ୍ତି ଧନ୍ୟ ବେନି ରଥୀ
ଏକେ ଏକେ ଏ ପାରନ୍ତି ପୃଥିବୀକି ମନ୍ଥି ।
ଯୁଦ୍ଧ ଭଲ କୃଷ୍ଣ ବୋଇଲେ ଶୁଣ ହେ ବିଜୟ
ଅଶ୍ୱତ୍ଥାମା ତୁମ୍ଭେ ଦୁହେଁ ଅଟ ସମକକ୍ଷ ।
ଦେଖୁଛି ମୁଁ ତାର ତୋର ହୁଏ ସମଯୁଦ୍ଧ
ଜୟଦ୍ରଥ ନ ହୋଇବ ଆଜ ପ୍ରାଣେ ବଧ ।
କୃଷ୍ଣଙ୍କ ବଚନ ଶୁଣି ସେ ଶ୍ୱେତବାହନ
ରୁଦ୍ର ଅସ୍ତ୍ରକୁ ତୂଣୀରୁ କାଢ଼ି ହସ୍ତେ ଘେନ ।
ଅଶ୍ୱତ୍ଥାମା ଉପରକୁ କରନ୍ତେ ପ୍ରୟୋଗ
ଭୈରବଅସ୍ତ୍ର ତା ଦ୍ରୋଣୀ ନିବାରିଲେ ବେଗ ।
ଜ୍ୱାଳାବଳ ଶର ଏକ ବିନ୍ଧିଲା କିରୀଟୀ
ଅଶ୍ୱତ୍ଥାମା ରୁଦ୍ରଅସ୍ତ୍ରେ ପଳାଇଲେ କାଟି ।

କୁହୁକବାଣ ବିନ୍ଧିଲେ ଗୁରୁଙ୍କର ସୁତ
ଅନ୍ଧାରମୟ ଦିଶିଲା ଏ ତିନି ଜଗତ ।
ସୂର୍ଯ୍ୟାବର୍ତ୍ତ ଅସ୍ତ୍ର ପାର୍ଥ ଦେଲେ ଚହୁଁ ସ୍ତ
ଦିଗ ଉଜ୍ଜ୍ୱଳ ଦିଶିଲା ଗଲାକ କୁହୁଡ଼ି ।
ଶ୍ରୀକୃଷ୍ଣ ବୋଇଲେ ବନ୍ଧୁ ଶୁଣ ଧନଞ୍ଜୟ
ତୋ ଲାଘବ ଯୁଦ୍ଧ ଦେଖି ମୋତେ ଲାଗେ ଭୟ
ଏମନ୍ତ ଯୁଦ୍ଧ କରନ୍ତେ ସୂର୍ଯ୍ୟ ଅସ୍ତ ହେବ
ତୋହର ପ୍ରତିଜ୍ଞା ନଷ୍ଟେ ନିଷ୍ଫଳ ହୋଇବ ।
ଜଣାଯାଏ ଅଗ୍ନି ଜାଳି ନାଶ ହେବୁ ତୁମ୍ଭ
ତୋହର ନିଧନେ ବର୍ତ୍ତି ନ ପାରିବ ମୁହିଁ ।
ଜାଣେ ଅଶ୍ୱତ୍ଥାମା ତୋର ବାଲ୍ୟକାଳ ସଖା
ହେଳାଯୁଦ୍ଧ କରୁ ଆଜ ହୋଇବାରୁ ଦେଖା ।
ସେ ବଢ଼ାଇ ମହାରାଗେ ଶରମାନ ଯୋଖି
ନିଜେ ମରିବ ବନ୍ଧୁରେ କାହିଁ ଦେଖାଦେଖି ।
ଶ୍ରୀକୃଷ୍ଣ ବଚନ ଶୁଣି ବୀର ସବ୍ୟସାଚୀ
ଦଶ ବଂଶଶର କାଢ଼ି ବିନ୍ଧିଲେ ଆମନ୍ତ୍ରି ।
ଅଶ୍ୱତ୍ଥାମାର ଅଭେଦ ସେହ୍ନା ଅଙ୍ଗେ ଥିଲା
ପାର୍ଥ ଅସ୍ତ୍ର ପଡ଼ି ତାହା ଚୂନା ହୋଇଗଲା ।
ପୁଣି ବଂଶ ବଂଶ ବାଣ ତୀକ୍ଷ୍ଣ ତୀକ୍ଷ୍ଣମୁନା
ଆକର୍ଷି ବିନ୍ଧିଲା ପାର୍ଥ ଦ୍ରୋଣିଙ୍କର ସେହ୍ନା ।
ସେ ଅଭେଦ୍ୟ ସେହ୍ନାପରେ ପଡ଼ି ଫୁଟିଗଲା
ସେହ୍ନାରେ ମଣି ଯେ ଥିଲା ତାହା ଗୁଣ୍ଡା ହେଲା
ଖୁର୍ପବାଣ ଅଶ୍ୱତ୍ଥାମା ବିନ୍ଧନ୍ତେ ସତ୍ୱର
ବାବଲ ଶରେ ଛେଦିଲେ ଧନଞ୍ଜୟ ବୀର
ବାମ୍ୟକ ପଞ୍ଚବାଣକୁ ଘେନି ଅଶ୍ୱତ୍ଥାମା
ଧନୁରେ ବସାଇ ବେଗେ ବିନ୍ଧିଲା ମହାତ୍ମା ।
ପୁନରପି ଅଷ୍ଟବାଣ ଘେନି ବୀରଦ୍ରୋଣି
ଅର୍ଜୁନଙ୍କ ଉପରକୁ ବିନ୍ଧିଲା ସେ ଟାଣି ।
ପୁଣି କୋଟିଏ ନାରାଚ ବସାଇଣ ବେଗେ
ଚାରି ଅଶ୍ୱଙ୍କୁ ବିନ୍ଧିଲା ଅତିଅନ୍ତ ରାଗେ ।
ତୀକ୍ଷ୍ଣ ପାଞ୍ଚଶର ପୁଣି ଗୁଣରେ ବସାଇ
କପିକେତନକୁ ଦ୍ରୋଣି ବିନ୍ଧିଲା ଝଟାଇ ।
ଗୁରୁପୁତ୍ରର ମହିମା ଶୁଣ ନୃପବର
ନନ୍ଦିଘୋଷକୁ ବିନ୍ଧିଲା ପୁଣି ଲକ୍ଷେ ଶର ।
କୃଷ୍ଣ ସାରଥିକି ପୁଣି ବିନ୍ଧେ ପଞ୍ଚବାଣ
ବାଏଣ ବହୁ ଧରିଲୁ ହେଲେ ନାରାୟଣ ।

କୃଷ୍ଣର ବିରକ୍ତ ଦେଖି ପାଣ୍ଡୁର ନନ୍ଦନ
ମହାକ୍ରୋଧେ ବିନ୍ଧିଲେ ସେ ଏକଶତ ବାଣ ।
ଅସ୍ତ୍ରବନ୍ଧ ଅଶ୍ୱତ୍ଥାମା ସ୍ୱଦେହେ ଚଉକତ
ଅର୍ଜ୍ଜୁନର ଶରଚୟ ପଡ଼ଲାକ ଧାଣ୍ଡ ।
ପ୍ରଥମ ଘାତେ ପଡ଼ିଲେ ରଥ ଘୋଟ ହୟେ
ମୃତ୍ୟୁ ସାରଥି ପଡ଼େ ଦ୍ୱିତୀୟ ଶର ଘାଏ ।
ତ୍ରିଂଶର ପଡ଼ନ୍ତେଣ ତା ରଥ ଧ୍ୱଜଗ
ଚତୁର୍ଥ ବାଣ ଦ୍ରୋଣିର ହୃଦରେ ପଡ଼ିଲା ।
ତା ଦୁଇ ଭୁଜେ ପଡ଼ିଲା ପାଞ୍ଚ ପାଞ୍ଚ ଶର
ଷଷ୍ଠ ନାରାଚ ମଣ୍ଡଳ ଭାଳରେ ତାହାର ।
ତାଡ଼ଣ ଶର ଫୁଟଲା ଦ୍ରୋଣି ଉରସ୍ଥଳେ
ଷଣ୍ଡସ୍ଥଳେ ଗଲେ ଷଷ୍ଠ ପାଞ୍ଚଟି ଜଘାଳେ ।
ରୁଧିରରେ ବ୍ୟାକୁଳ ହେଲେ ଦ୍ରୋଣସୁତ
ଅସାମ୍ଭେ ପଡ଼ିଲେ ସେ ହସ୍ତୁ ଛାଡ଼ି ଧନୁ ।
ସେ ସମୟେ ଅଶ୍ୱତ୍ଥାମା ଅଚେତନ ହେଲା
ମୂର୍ଚ୍ଛିତ ହୋଇ ପ୍ରାୟ ଭୂତଳେ ପଡ଼ିଲା ।
ଗୋବିନ୍ଦ ବୋଇଲେ ତୋର କ୍ଷତ୍ରିବୃତ୍ତି ଧନ୍ୟ
ନ ଘୋଷେ ରୁ ବିଦ୍ୟା ଶିକ୍ଷା ଭଲ ଅର୍ଜ୍ଜୁନ
ପ୍ରହରେକ ମୋହ ଭଲ ଥିଲା ଅଶ୍ୱତ୍ଥାମା
ଶ୍ରୀହରି ଯୁଦ୍ଧରେ ସ୍ଥିରି ରହିଲ ମହାତ୍ମା ।
ଏବେ ଅଶ୍ୱତ୍ଥାମା ପରେ ଶର ନ ବୃଷ୍ଟି
ତାହାର ମସ୍ତକ ପାର୍ଥ ପକାଅ ତୁ କାଟି ।
ଅନେକ କାଳରୁ ଯୁଦ୍ଧ ନାହିଁ ତୋର ତାର
ଏବେ ପଡ଼ିଲା ଜାଣ ସେ ଦୁଃସହ ସମର ।
କୃଷ୍ଣଙ୍କ ବଚନ ଶୁଣି ବୋଲେ ଧନଞ୍ଜୟ
ମୋହ ହୋଇ ପଡ଼ିଅଛି ଦ୍ରୋଣଙ୍କ ତନୟ ।
ଏଭାବେ ମାରିଲେ କ୍ଷତ୍ରିକୁଳେ ଅପଯଶ
ଧର୍ମକୁ ଲଙ୍ଘିଲେ ସର୍ବକାର୍ଯ୍ୟ ହେବ ନାଶ ।
ମୋହ ଗଲା କ୍ଷତ୍ରିଜ ମୁଁ ନ ମାରଇ ରଣେ
ଜାଣି ଧର୍ମକୁ ଲଙ୍ଘିବ କପାଁ ଅକାରଣେ ।
ସାରଥି ବିହୀନେ ରଥୀ ପ୍ରାଣ ନ ନେବଇ
ନ ମାରଇ ଶତ୍ରୁ ରଣେ ଯେ ପିଠି ଦେଖାଇ ।
ଶରଣ ରକ୍ଷଣ ବାନା ଉଡ଼ଇ ମୋହର
ଏଥକୁ କଟାଳ ମୋତେ ନ କର ଶ୍ରୀଧର ।
ପଦ୍ମବ୍ୟୂହ ଭିତରକୁ ବାହା ରଥ ମୋର
ଜାଣିଅଛ ତ ଯେବଣ ପ୍ରତିଜ୍ଞା ମୋହର ।

ଅଶ୍ୱତ୍ଥାମା ମୋହ ଦେଖି ଦେବ ଜନାର୍ଦ୍ଦନ
ଆନନ୍ଦରେ ବଜାଇଲେ ଶଙ୍ଖ ପାଞ୍ଚଜନ୍ୟ ।
ପାର୍ଥ ଦେବଦତ୍ତ ଶଙ୍ଖ ବଜାନ୍ତେ ଗହନ
ଜୟନ୍ତୀ ପୁରରେ ଯାଇ ଶୁଭିଲା ଚହଳ ।
ଭୀମ ନକୁଳ ଆଦର ସହଦେବ ସଇ
ବୋଲନ୍ତି ଯୁଧିଷ୍ଠିରେ ବ୍ୟାକୁଳିତ ହୋଇ ।
କୃଷ୍ଣ ଏ ସୂଚନା ଭାଇ କହିଗଲେ ମୋତେ
ଜୟ କଲେ ପାଞ୍ଚଜନ୍ୟ ବାଇବ ଭୁବନେ ।
ପାଞ୍ଚଜନ୍ୟ ଦେବଦତ୍ତ ଶଙ୍ଖଶବ୍ଦ ହେଲା
ଏହି ଦୁଇ ଶଙ୍ଖ ଶବ୍ଦ କର୍ଣ୍ଣ ଶୁଣାଗଲା ।
କୃଷ୍ଣଙ୍କର ସଙ୍କେତ ତ ହୋଇଲା ଅନ୍ୟଥା
ଏ କଥା ଭାବ ମନରେ ହୁଏ ବଡ଼ ବ୍ୟଥା ।
ତୃତୀୟ ପ୍ରହର ଆସି ହୋଇଲାଣି ଦିନ
ସମରେ କି ଅର୍ଥ କିବା ହେଲା ଅର୍ଜ୍ଜୁନ ।
ସେ କେତ୍ରୁ କଉରବେ କଲେ ଜୟଶବ୍ଦ
ମହାଘୋର ଶୁଭିଲାକ ଶଙ୍ଖବାଦ୍ୟ ନାଦ ।
ବଡ଼ ବ୍ୟାକୁଳିତ ହୋଇ ଯୁଧିଷ୍ଠି ବୋଇଲେ
ଆରେ ପାର୍ଥ କୃଷ୍ଣ ତୋତେ କି ବା ପରକଲେ
କାହିଁ ଗଲୁ ଆରେ ଭାଇ ବୀର ଅର୍ଜ୍ଜୁନ
ଏହା ଭାବି ସାତ୍ୟକି କୁ କହିଲେ ବଚନ ।
ଚଳ ତୁ ସାତ୍ୟକି ବେଗେ ଶ୍ରୀକୃଷ୍ଣଙ୍କ ପାଶ
ଶୁଭାଶୁଭ ବାର୍ତ୍ତା ବୁଝି ବୁଝିକରି ଆସ ।
ଦ୍ୱିସଙ୍ଗ ପର୍ଯ୍ୟନ୍ତେ ମୁହିଁ ବୁଝିଛି ତୋ ପଥ
ଶକଟବ୍ୟୂହ ଭିତରେ ବାହା ତୋର ରଥ ।
ବଜସ୍ୱକେତନ ରଥ ଯୁଧିଷ୍ଠିର ଦେଲେ
ଆଜ୍ଞା ଘେନିଣ ସାତ୍ୟକି ରଥେ ବିଜେ କଲେ ।
ସୁତନୁ ନାମରେ ଥିଲା ସେ ରଥେ ସାରଥି
ତାକୁ ବୋଇଲେ ତୁ ରଥ ଚଳା ଶୀଘ୍ରଗତି ।
ହେମମଣି ମୁକୁଟାଦି ଅମୂଲ୍ୟ ଭୂଷଣ
ସାତ୍ୟକିଙ୍କୁ ଯୁଧିଷ୍ଠିର କରିଲେ ମଣ୍ଡନ ।
ତ୍ରିପୁର ଦହନେ ଯେହ୍ନେ ସଦାଶିବ ମୂର୍ତ୍ତି
ଯଶୀହୋଇ ମିଳିଲେକ ସାତ୍ୟକିର କାନ୍ତି ।
ଚଳାନ୍ତେ ହୟ ଆକାଶମାର୍ଗେ ରଥ ହୁଏ
ମାତଳିର ପ୍ରାୟେ ରଥ ବେଗେ ସୂତ ବାହେ
ବାୟୁବେଗେ ଅଶ୍ୱ ଉଡ଼ିଗଲେ ଧାଣ୍ଡକାରେ
ସେକ୍ଷଣି ହେଲେ ଶକଟ ବ୍ୟୂହର ଦୁଆରେ ।

ଲକ୍ଷେକ ରଥ ଆବର ପାଞ୍ଚଲକ୍ଷ ହସ୍ତୀ
ଅନେକୋଟି ଅଶ୍ୱବର ଦ୍ୱିକୋଟି ପଦାତି ।
ଦୁଇ ଲକ୍ଷ ଯୋଦ୍ଧା ସୈନ୍ୟ ପାଞ୍ଚକୋଟିମେଳ
ପ୍ରଥମ ଦୁଆର ଜଗି ଦ୍ରୋଣ ଥିଲେ ରହି ।
ଗୋଟିଏ ରଥ ବେଷ୍ଟିଣ ପଶୁରନ୍ତି ଗୁରୁ
ଏ ତାହାର ରଥଗୋଟି ଆସୁଅଛି ଦୂରୁ ।
ଇନ୍ଦ୍ର ଦେବତାର ଏକ କୁବେରଙ୍କ ରଥ
କି ଅବା ଭୀମସେନ କି ଅବା ମନମଥ ।
ଏହା ବସ୍ତୁର ସାତ୍ୟକ ଭେଟି ସମ୍ମୁଖରେ
ଦ୍ରୋଣଙ୍କୁ ଯେ ଶରବୃଷ୍ଟି କଲା ଧାଡିଜାରେ ।
ଦ୍ରୋଣଙ୍କ ପାଖରେ ଥିଲେ ଯୋଦ୍ଧା ଦୁଇକୋଟି
ଧାଡିଜାରେ ବେଢ଼ିଲେ ସେ ସାତ୍ୟକ ରଥଟି ।
ନରାସ ବାଣ ଗୋଟିଏ ମାଇଲେ ସାଥରି
ପାରତନ୍ତ୍ର ରାଜା ଯୋଦ୍ଧା ହେଲେ ପଶୁଭସା ।
ଦ୍ରୋଣଙ୍କ ପଛ ଜଗଣ ପାଞ୍ଚସହସ୍ର ରଥୀ
ସାତ୍ୟକକୁ ଓଗାଳିଣ ଶର ସେ ବରନ୍ତି ।
ଅଗ୍ନି ବାଣ ହସ୍ତରେ ପାଞ୍ଚବାଣ ସନ୍ଧି
ଛନ୍ଦଦ୍ୟନ୍ତେ ସାତ୍ୟକର ସେନ୍ଧା ଗଲା ଭେଦି
ସେ ସାତେ ଅଣ୍ଡ ଗଳିଣ ଶନାଙ୍କର ବଳ
ଯୁଝନ୍ତେ ଦ୍ରୋଣ ଯୁଝିଲେ ନ କରିଣ ହେଳା ।
ଏକା ସାତ୍ୟକକୁ ବେଢ଼ି ସର୍ବେ ଯୁଝିଲେ
ସାତ୍ୟକର ଯୁଦ୍ଧଦେଖି ବହୁ ପ୍ରଶଂସିଲେ ।
ସାଧୁ ସାଧୁ ତୋ ପିଅର ସାଧୁ ତୋର ମାତା
କହେ ଗୁରୁ ପ୍ରଶଂସିଲେ ନମ୍ରକରି ମଥା ।
କୃଷ୍ଣ ପାର୍ଥଙ୍କ ପ୍ରତିଜ୍ଞା ତୋର ମହାବଳୀ
ବିଦ୍ୟା ଶିକ୍ଷା ଦେଇଛନ୍ତି ତୋତେ ବନମାଳୀ
କୃଷ୍ଣଙ୍କ ପ୍ରସାଦେ ତୁହି ହେଲୁ ମହାଯୋଧୀ
ସମରେ ଅନବାର ତୁ ଅଣ ଉପରୋଧୀ ।
ଜୀବ ସ୍ୱ ଜିଣିବାକୁ ତୁ ଅଟୁ ସାମରଥ
କୃଷ୍ଣନାମ ସୁମର ତୁ ସମରେ ଶକତା ।
ଏପରି ପ୍ରଶଂସା ସର୍ବେ କରନ୍ତି ମୁଖରେ
ସାତ୍ୟକ ଯୁଦ୍ଧ କରନ୍ତି ପଶି ନଭସ୍ୱରେ ।
ଦ୍ରୋଣ ସେନାପତିଙ୍କୁ ସେ ଜିଣିକରି ଗଲା
ଦକ୍ଷିଣ ଦୁଆରେ ଦୁଃଶାସନକୁ ଭେଟିଲା ।
ବହୁ ସୈନ୍ୟ ଘେନି ତହିଁ ଦୁଃଶାସନ ଥିଲା
ସାତ୍ୟକ ଆସିବା ଦେଖି ପଥ ଓଗାଳିଲା ।

ସାତ୍ୟକ ଭେଟନ୍ତେ ଯାଇ ସେ ଦୁଃଶାସନକୁ
ଅନ୍ଧକାରେ ଶର ଯୋଖି ବନ୍ଧିଲା ତାହାକୁ ।
ତାରପାଶେ ଗଜ ଅଶ୍ୱ ଯୋଦ୍ଧା ଯେତେ ଥିଲେ
ସାତ୍ୟକର ଶରଘାତେ ବହୁତ ପଡ଼ିଲେ ।
ସହସ୍ରେକ ରଥ ଦୁଇସହସ୍ର ଯୋଦ୍ଧା ରଥୀ
ଅଯୁତେକ ଅଶ୍ୱ ପାଞ୍ଚଅର୍ବୁଦ ପଦାତି ।
ଏତେକ ସୈନ୍ୟ ପଡ଼ନ୍ତେ ସାତ୍ୟକର ବାଣେ
ଦାଣ ଯୋଦ୍ଧା ହଟିଲେ ନ ରହିଲେକ ଜଣେ ।
ଦୁଃଶାସନ ସାତ୍ୟକର ଲାଗିଲା ସମର
ପୂର୍ବେ ଯଥା ହେଲା ଯୁଦ୍ଧ ଇନ୍ଦ୍ର ବୃତ୍ରଙ୍କର ।
ସାତ୍ୟକ ଛନ୍ଦିଲା ଘେନେ ବାଣ ତନ୍ଦ୍ରାବଳୀ
ଦୁଃଶାସନ ରଥ ଭାଙ୍ଗି ହୋଇଗଲା ଧୂଳି ।
ହାରଗୁଡ଼ ଆଡ଼ ହୋଇଗଲା ଧାଉଁଷ୍ଟି
ସାତ୍ୟକ ପଛେ ଭଟରେ କରି ଶରବୃଷ୍ଟି ।
ସୁତନୁ ସାରଥି ରଥ ବାହିଲ ତ୍ୱରିତ
ବ୍ୟୂହ ଭେଦଣ ଚଳାଇ ନର୍ଭୟେ ତା ରଥ ।
ଅସଂଖ୍ୟ ସଇନ୍ୟ ଥିଲେ ତାହାର ଭିତରେ
ବହୁତ ଯୋଦ୍ଧା ପଡ଼ିଲେ ସାତ୍ୟକର ଶରେ ।
ଜୟ ଜୟ ହୃଷୀକେଶ ଶଙ୍ଖଚକ୍ରପାଣି
ମହୀ ଭାରହର ତୁହି ଖଣ୍ଡୁ ଦେବସ୍ୱାମୀ ।
ନର୍ମଳ କସଙ୍ଖାରେ ତୁ ହେଉ ନାନା ଜନ୍ମ
ଦୁଷ୍ଟଙ୍କୁ ହନାଗ୍ନି ବହୁ ଏକ ଏକ ନାମ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳାଦ ତୋ ଠାରୁଁ ଉତ୍ପତ୍ତି
ତୁହି ସକଳ ଭିଆଣ କରୁ ଜଗପୃଷ୍ଠ ।
ନରାକାର ପୁରୁଷ ତୁ ଦେବ କୃପାସିନ୍ଧୁ
ସର୍ବ ଆତ୍ମାଙ୍କ ବିଶ୍ୱାସ ତୁହି ଦୀନବନ୍ଧୁ ।
ଧର୍ମ ନବାରଣେ ଘେନି ଦେବଙ୍କ ବଚନ
ଦେବକୀର ଗର୍ଭୁ ପ୍ରଭୁ ହେଲ ଉତପତ୍ତି ।
ଏମନ୍ତ କୁତୂହଳ ଦେଖିବା ନିମନ୍ତେ
ସାରଥି ହୋଇଲେ ପ୍ରଭୁ ଅର୍ଜୁନର ରଥେ ।
କୌତୁକେ ନଧନ କୁମ୍ଭେ କର ଦୟାମୟ
ତୋ ନାମ ସ୍ମରଣ କଲେ ପାପ ହୋଏ କ୍ଷୟ ।
କଳିଯୁଗ ଚାରିଲକ୍ଷ ବତିଶ ହଜାର
ବର୍ଷଯାଏ ନୀଳାଚଳେ ବସତି ତୋହର ।
ଅସଂଖ୍ୟ ମହିମା ତୋର କହୁ ନ ସରଇ
ମାନବ ଜନ୍ମ ମୁଁ ତୋତେ ଗୋଚର ବା କାହିଁ

କୁଟମ୍ଭ ଜଞ୍ଜାଳ ଏଣେ ମାୟାରଜ୍ଜୁ ଫାଶୀ
ଏ ବୃଷ୍ଟି ମୋହ ଜଳରେ ଯାଉଅଛୁ ଭାସି ।
ଯହା ମହା ଋଷିଙ୍କୁ ତୋ ଭାବ ଅଜଣା
ନ ପାଇ ତୋ ଅନ୍ତ ସଦା ହେଉଛନ୍ତି ଦଣା ।
ଭୁବନମିନା ଜ୍ଞାନଦାତା ସର୍ବ ପ୍ରାଣୀଙ୍କର
ତୋ ଜ୍ଞାନ ଅତତେ ସର୍ବ ହୁଏ ଅଗୋଚର ।
ଦେଖି ଦେଖି ମାୟାଜାଲେ ଯାଉଛନ୍ତି ବୁଡି
ସେହି ମୋହରୁ ମନରୁ ନ ପାରନ୍ତି ଛାଡି ।
କେତେକ ତୋହର କୃପାରୁ ହୋଇ ଜ୍ଞାନବନ୍ତ
ସଦା ତୁମ୍ଭ ନାମ ଗାଇ ହୋଇଛନ୍ତି ମତ୍ତ ।
ଯମଦଣ୍ଡ ଭଞ୍ଜିବାକୁ ଯାହାଙ୍କର ଇଚ୍ଛା
ତୁମ୍ଭେ ପ୍ରଭୁ ପୂର୍ଣ୍ଣ କର ତାଙ୍କ ମନୋବାଞ୍ଛା ।
ଇହ ପରଲୋକେ ତୁମ୍ଭେ ଗତିମୁକ୍ତି ଦାତା
ତୁମ୍ଭ ଛଡା ଆଉ ନାହିଁ ତାର ଏ ଜଗତା ।
ଆମ୍ଭେ ପ୍ରଭୁ ମୋତେ ଜାଣ ଆପଣଙ୍କ ଭୃତ୍ୟ
ଯଶୋବନ୍ତ ନନ୍ଦନ ମୁଁ ମୂରଖ ଅତ୍ୟନ୍ତ ।
ଶବ୍ଦମ୍ଭ ଖାଇବାକୁ ଇଚ୍ଛତେ ଉଦର
ଏଣୁ କୃପା କର ପ୍ରଭୁ ଶଙ୍ଖ ଚକ୍ରଧର ।

---

## ବ୍ୟୂହ ଭେଦକରି ସାତ୍ୟକିର ଯୁଦ୍ଧ

କହନ୍ତି ଅଗସ୍ତି ମୁନି ମହା ବ୍ରହ୍ମଚାରୀ
ବୈବସ୍ୱତ ମନୁରାଜା ହୋଇଛନ୍ତି ଶ୍ରୋତା ।
ଯେଉଁ ବ୍ୟୂହ ରଚାଇଲେ ଦ୍ରୋଣ ମହାରଥୀ
ଶ୍ରୀକୃଷ୍ଣ ବିନା କା ଅଛି ଭେଦିବା ଶକତି ।
ମାନବେ ଅଦୃଷ୍ଟ ଅଗୋଚର ବ୍ୟୂହ ସେହି
ପଞ୍ଚମ ଦ୍ୱାରେ ପ୍ରବେଶ ହୋଇଛନ୍ତି ଯାଇ ।
ଦ୍ରୋଣଙ୍କୁ ଜିଣି ସାତ୍ୟକି ରଥ ବେଗେ ଗଲା
ବ୍ୟୂହ ଭେଦକରି ସୈନ୍ୟ ଭିତରେ ପଶିଲା ।
ସେ ବ୍ୟୂହ ଭେଦନ୍ତେ ଏକା ସାତ୍ୟକି ସେ ଯୋଧ
କୃଷ୍ଣ ଅନୁଗ୍ରହେ ସ୍ଫୁରେ ତାଙ୍କୁ ସର୍ବବୁଦ୍ଧି ।
କୌରବ ସଇନ ସର୍ବେ ଅଛନ୍ତି ସେ ସର୍ପ
ଗରୁଡ ସମ ସାତ୍ୟକି ଭଙ୍ଗେ ତାଙ୍କ ଦର୍ପ ।
ପାଞ୍ଚ ସହସ୍ର ଗଜାଙ୍କୁ ଯେହ୍ନେ ଏକା ଯୋଧ
ମନ୍ଥନ କଲା ଯେସନେ ମନ୍ଦର ବାରିଧି ।
ସାତ୍ୟକି ବୀର ସେ ବ୍ୟୂହ ଭେଦ ନ ଜାଣଇ
ନନ୍ଦଘୋଷ ରଥଗତି ପଥ ଦେଖି ଯାଇ ।
ଦେଖେ ମୃତ ପିଣ୍ଡମାନ ପଡ଼ିଛନ୍ତି ତହିଁ
ରକତ ନଦୀ ଭିତରେ ରଥ ନିଏ ବାହି ।
ଆଶ୍ଚର୍ଯ୍ୟ ହୁଅନ୍ତି ସୈନ୍ୟ ଏକରଥ ଗୁହିଁ
ଏ କାହାର ରଥ ବୋଲି ହେଲେ କୁହାକୁହି ।
ଗୋଟିଏ ରଥ ଦେଖିଣ ବେଢ଼ିଲେକ ବଳ
ମାର ମାର ବୋଲି ହେଲା ତହିଁ ମୁଖରୋଳ ।
ଲକ୍ଷେଶ୍ୱର କରି ଆସି ବେଢ଼ିଲେକ ରଥୀ
ଯେ ଯାହାର ଅନୁରୂପେ ନାରାଚ ବହନ୍ତି ।
ଆଧାନ ସନ୍ଧାନ ସର୍ବେ କଲେ ନିରନ୍ତର
ଏକ ଏକ ହୋଇ ସର୍ବେ ମାରନ୍ତି ଅପାର ।
ଏକାକେ ସାତ୍ୟକି ବୀର କରଇ ସମର
ଯେସନେ ସିନ୍ଧୁକୁ ଏକା ମନ୍ଥିଲା ମନ୍ଦର ।
ହସ୍ତର ବ୍ୟଗ୍ର କେ ତାର ଦେଖି ନ ପାରଇ
ନିର୍ଭୟେ ସାତ୍ୟକି ଶର ଅସଂଖ୍ୟ ବର୍ଷଇ ।
ନରାଚ ବାଣ ପେଷନ୍ତେ ସୈନ୍ୟଅଙ୍ଗ ଫୁଟି
ଶରୀରୁ ରକ୍ତ ବହଇ ଯେହ୍ନେ ହୁଏ ବୃଷ୍ଟି ।
ଅର୍ଜୁନଙ୍କ ସମ ସେହୁ ଅଟେ ମହାଯୋଧୀ
କୃଷ୍ଣଙ୍କ ଦୟାରୁ ତାର ବିଚକ୍ଷଣ ବୁଦ୍ଧି ।
ଏକାକେ ସର୍ବ ବଳଙ୍କୁ ବିମୁଖ କରଇ
ବଳ ଭାଜନ୍ତେ ଦେଖିଲେ କୃପାଚାର୍ଯ୍ୟ ତହିଁ ।
ପଶ୍ଚିମ କୋଣକୁ ନୃପ ସହସ୍ରେକ ଥିଲେ
ପାଞ୍ଚସହସ୍ର ଯୋଦ୍ଧା ଥିଲେ ଆସି ସେ ବେଢ଼ିଲେ
ଶତ ଶତ ନାରାଚ ସେ ଯୁଗଇ ଧନୁରେ ।
ବର୍ଷନ୍ତେ ସାତ୍ୟକି ଶର ପେଷିଲେ ସତ୍ୱରେ ।
ବାଣ ପଡନ୍ତେ ଦେଖିଲେ ଦ୍ରୁତ କୃପାଚାର୍ଯ୍ୟ
କୋପଭରେ ବର୍ଷିଲେ ସେ ଖୁରୁପ ନାରାଚ ।
ସାତ୍ୟକି ଶରକୁ କାଟି ଅଇଲା ସେ ମାଡି
ସାରଥି ଉପରେ ପଡନ୍ତେ ସେହି ମୋହେ ପଡ଼ି ।
ମୋହେ ପଡନ୍ତେ ସାରଥି ସାତ୍ୟକି ନିର୍ଭୟେ
ମହାରବେ ଗର୍ଜିଲା ସେ କାଳସର୍ପ ପ୍ରାୟେ ।
କୋପଭରେ ଦଶବାଣ ସେନ ତୀକ୍ଷ୍ଣ ମୁନା
ବର୍ଷନ୍ତେ ଭେଦିଲା ଯେହ୍ନେ କୃପଙ୍କର ସେହ୍ନା ।
ଗୋଟିଏ ଶର ପଡ଼ିଲା ତାହାଙ୍କ ନାଭିରେ
ଧନୁ ଛାଡ଼ି କୃପ ମୋହେ ପଡ଼ିଲେ ଭୂମିରେ ।
ଅନ୍ତରୀକ୍ଷେ ରଥ ଚଢ଼ି ବାହିଲେ ସେ ବେଗେ
ଭେଦିଣ ଶକଟବ୍ୟୂହ ପଶିଲେ ସରାଗେ ।

ରଥ ଧ୍ୱଜ ଅଶ୍ୱ ଆଉ ସଇନ୍ୟ ପଦାତି
ସାତ୍ୟକି ଶରଘାତରେ ହୋଇଲେ ନିପାତ
ଯେତେକ ସଇନ୍ୟ ଅକ୍ଷତ ଭଲେ ଥିଲେ
ସାତ୍ୟକିକୁ ଦେଖି ଆସି ପଥ ନିରୋଧିଲେ ।
ପାଞ୍ଚସହସ୍ର ରଥୀ ସର୍ବେ ହୋଇ ଏକମୁଖ
ଜନ୍ତୁଜନ୍ମା ଶୋକପ୍ରାପ୍ତ ବନ୍ଧି ଶର ତୀକ୍ଷ୍ଣ ।
ବାଛି ବାଛି ଯେ ଯାହାର ଥିଲା ତୀକ୍ଷ୍ଣ ଶର
ସାତ୍ୟକି ପରେ ସକଳେ କରିଲେ ପ୍ରହାର ।
ଦେବତାଙ୍କୁ ଅଗୋଚର ସାତ୍ୟକି ମହିମା
ଉପ୍ଟେ ଅସ୍ତ୍ର ନ ଲଙ୍ଘନ୍ତି ତାହାଙ୍କର ସୀମା ।
ଶସ୍ତ୍ରରେ ଶସ୍ତ୍ର ବାରଣ ହୁଏ ଘଣତାଳ
ଆକାଶେ ଅଦୃଶ୍ୟ ହେଲେ ଦେବ ଦାନବର ।
କଡ଼ୁଆ ଶରେ ଅନେକ ଯୋଦ୍ଧା ଶିର କାଟି
ବେନିଖଣ୍ଡ ହୋଇ ସର୍ବେ ପଡ଼ନ୍ତି ଯେ କୋଟି ।
ଭାରତ ଯୁଦ୍ଧେ ସାତ୍ୟକି ଅତ୍ୟନ୍ତ ଶଭତା
କ୍ଷତ୍ରିୟର ସୁନ୍ଦର ସେ ମହା ବଳବନ୍ତା ।
ଯୁଗାନ୍ତକ କାଳପ୍ରାପ୍ତ କୃଷ୍ଣଙ୍କ ସାନୁଜ
ଦେଖି ରଣେ ଭଙ୍ଗଦେଲେ ସର୍ବ ମହାରାଜ ।
ବିକ୍ରମ ସିଂହ ଯେସନେ ରଣରେ ଅଭଙ୍ଗ
ଗଜ ସମାନ କଠିନ ସାତ୍ୟକିର ଅଙ୍ଗ ।
ଅସ୍ତ୍ର ପଡ଼ି ତାହା ଅଙ୍ଗେ ହେଉଛନ୍ତି ଚୂର
ନିର୍ଭୟେ ସେ ବସିଅଛି ରଥର ଉପର ।
ଲକ୍ଷେକ ରଥୀ ଆଉର ପାଞ୍ଚଲକ୍ଷ ହସ୍ତୀ
ତିନି ଅର୍ବୁଦ ତୁରଙ୍ଗ ଦ୍ୱିକ୍ଷୌଣୀ ପଦାତି ।
ଏତେକ ସୈନ୍ୟ ଘେନିଣ ସୁରସେନ ସ୍ପଷ୍ଟ
ସାତ୍ୟକି ସମ୍ମୁଖେ ମିଳି ଓଗାଳିଲେ ବାଟ ।
ସୂଚିମୁନା ନାରଚରୁ ଘେନି ପାଞ୍ଚଶତ
ଛେଦିଲେ ସେ ମହାଘାରେ ସାତ୍ୟକିର ରଥ ।
ଦିଶାଖା ବାଣ ଘେନିଣ ସାତ୍ୟକି ପଞ୍ଚାଶ
ଶଲ୍ୟଙ୍କର ଶରସବୁ କରିଦେଲେ ଧ୍ୱଂସ ।
ବିନ୍ଧିଲେ ଶଲ୍ୟ ମାଧବ ଅସ୍ତ୍ର ବେଗକର
କଞ୍ଚିତ ଶରେ ସାତ୍ୟକି ତା ଦେଲେ ନିବାର ।
ପୁଣି ସାତ୍ୟକି ମାରିଣ ବଜ୍ରସମ ବାଣ
ଶଲ୍ୟଙ୍କ ଚାରି ଅଶ୍ୱର ଘେନିଲେ ପରାଣ ।
ପୁନଶ୍ଚ ନିର୍ଘାତ ବାଣ ଗୋଟିଏ ବିନ୍ଧିଲେ
ଶଲ୍ୟଙ୍କର ହସ୍ତସ୍ଥିତ ଧନୁକୁ ଛେଦିଲେ ।

ଘାଉ ଘଣ୍ଟରେ ଧାଇଁଲେ ଗଦଗ୍ରସ୍ତ ଶଲ୍ୟ
ଖଣ୍ଡଗଫଳା ଘେନିଣ ଆଗର୍ମିଲେ ଗୋଳ ।
ଅନ୍ତରୀକ୍ଷ ମାର୍ଗରେ ସେ ବୁଲାଇ କୃପାଣ
ସାତ୍ୟକିର ରଥଭେଦି ପିଟିଲେ ବହନ ।
ସୂତ ବଞ୍ଚାଇଲା ରଥ ହୋଇଲା ଆଘାତ
ସାତ୍ୟକି ପ୍ରଶଂସା କଲା ସୂତକୁ ବହୁତ ।
ପ୍ରଜ୍ୱଳିତ କାଳେ ଯେସନ ଆଦିତ୍ୟଙ୍କ ତେଜ
ସାତ୍ୟକି ଉଠିଲେ ପୁଣି ତେସନ ନାଗଜ ।
ସେ ଅସ୍ତ୍ରର ବଡ଼ଯୋଦ୍ଧା ଗଜାରୂଢ଼ ପାଇ
ବିବସ୍ତ୍ର ହୋଇଣ ବହୁଁ ଯାଆନ୍ତି ପଳାଇ ।
ଭୟ କରିଣ ସେଠାରୁ ଯହୁଁ ଗଲେ ଭ୍ରାଜ
ମତ୍ତକ୍ଷଣେ ସାତ୍ୟକି ଯେ ଧାଇଁ ଗଜରାଜ ।
କାଳାନଳ ତେଜ ଜିଣି ସାତ୍ୟକିର ତେଜ
ଭେଟନ୍ତେ ସୈନ୍ୟ ପତଙ୍ଗ ହୁଅନ୍ତି ଦହ୍ୟ ।
ତା ତେଜେ ଯୋଦ୍ଧାଏ ଧନୁ ଧରିଣ ନ ପାର
ରଣ ଛାଡ଼ି ସେଠାରୁ ଗଲେ ଅପସର ।
ରଥ ବାହି ଚଳିଯାଏ କ୍ଷତ୍ରିୟ ଉତ୍ତମା
ପଦ୍ମବ୍ୟୂହ ଓଗାଳିଲେ ବୀର ଅଶ୍ୱତ୍ଥାମା ।
ଘୋର ସମର ଦେଖିଣ ମହାରଥେ ଉଠି
ସେ ବ୍ୟୂହ କରିଲେ ରକ୍ଷା ଦୃଢ଼କରି ମୁଷ୍ଟି ।
ଧାଇଁକାରେ ଧନୁକେ ସେ ଚଢ଼ାଇଲେ ଗୁଣ
ଏକାଳେ ସାତ୍ୟକି ଆସେ ରଥରେ ବସିଣ ।
ଗୋଟିଏ ଯୋଦ୍ଧା ଦେଖିଣ ବିସ୍ମରଇ ଦ୍ରୋଣି
ଆଉ ଏକ ପାର୍ଥ କାହୁଁ ଅଇଲା କି ପୁଣି ।
ଏହା ବିସ୍ମରୁ ହୁଛି ତା ବୀରମୂର୍ତ୍ତି ଦେଖି
ଅଜଗର ସମ ଧନୁ ଗୁଣେ ଶର ଯୋଖି ।
ଲୁହା ଢଙ୍କପକ୍ଷ ଶର ସନ୍ଧି କୋଦଣ୍ଡରେ
ସାତ୍ୟକିର ଉପରକୁ ବିନ୍ଧିଲେ ସତ୍ୱରେ ।
ଦିବ୍ୟଶର ପ୍ରହାରିଣ ଧାମଇଁ ସାତ୍ୟକି
ରେ ରେ କୌରବା ବୋଲିଣ ଉଚସ୍ୱରେ ଡାକି
ବୋଇଲେ ସବୁଙ୍କୁ ଆଜ କରିବି ବିନାଶ
ମୋ ଶର ଅନଳେ ତୁମ୍ଭେ ସର୍ବେ ଦେବ ଶ୍ୱାସ
ଏହା କହି ପଞ୍ଚବିଂଶ ବାଣ ପୂରାଇଣ
ବିନ୍ଧନ୍ତେ ଦ୍ରୋଣି ପାଇଲେ ବହୁତ କଷଣ ।
ଗୁରୁଙ୍କ ନନ୍ଦନ ସେହି କଷା ଜଗଜ୍ଜେଠୀ
ସ୍ୱଗେ ବର୍ଷାଧାର ପ୍ରାପ୍ତ କଲେ ଶରବୃଷ୍ଟି ।

କୃଷ୍ଣଙ୍କ ସାନୁଜ ଧାଏଁ ନିର୍ଭୟ ତ ମତ
ଅଶ୍ୱତ୍ଥାମା ନାଗଚକ୍ରୁ ନାହିଁ ତାର ଶ୍ରାନ୍ତ ।
ସାତ୍ୟକି ଅଶ୍ୱତ୍ଥାମାକୁ ଯୁଦ୍ଧେ ନୋହେ ସର
କୃଷ୍ଣ ତେଜରୁ ସାତ୍ୟକି ଯାଏ ମାର ମାର ।
ପଦ୍ମବ୍ୟୂହକୁ ଭେଦଣ ପାଣ୍ଡବ ଅର୍ଜୁନ
ସୈନ୍ୟ ସଂହାରି ପଶିଲେ କେଶରି ବ୍ୟୂହେଣ ।
ତହିଁ ଅଶ୍ୱ ଗଜ ରଥ ସଇନ୍ୟ ଚହଳ
ମହାରଣ୍ୟ ପ୍ରାୟେ ଦିଶେ କଉରବ ଦଳ ।
ରଥମାନେ ଦିଶନ୍ତ ଯେ ଶାଳବୃକ୍ଷ ପ୍ରାୟେ
ମାତଙ୍ଗମାନେ ଦିଶନ୍ତି ଗିରିବର ପ୍ରାୟେ ।
ଏକଲକ୍ଷୀ ପାଞ୍ଚଲକ୍ଷୀ କେଦଖାଲ ଛତା
ରୂପରେ ସକଳେ ଦିଶୁଅଛନ୍ତି ଶୋଭିତା ।
ଗଜ ଓଟ ଅଶ୍ୱ ଯେ ଖାଙ୍କୁଳଙ୍କ ପ୍ରାୟେ
ତେସନକ ପଟାନ୍ତର କୁରୁଆଠ ହୁଏ ।
ଏତେ ଦଳଙ୍କୁ ଘୋଟିଲ୍ଲ ଏକା ଫାଲଗୁନ
ଜାତ ହୋଇଛି କି ତହିଁ କାଳାନଳ ବହ୍ନି ।
ପାର୍ଥ ଅନଳ ଶିଖାକୁ ଶ୍ରୀକୃଷ୍ଣ ପବନ
ଦହଣ କୌରବଦଳ କରନ୍ତି ଦହନ ।
କପିକେତନ ଧ୍ୱଜରେ ଅଛି ହନୁମନ୍ତ
ତା ଦୃଷ୍ଟିମାନେ ଗଜାଶ୍ୱ ହେଉଛନ୍ତି ହତ ।
ଦୁଃସହ ପ୍ରତିଜ୍ଞା କରେ ପାଣ୍ଡବ ଅର୍ଜୁନ
ନିର୍ଭୟ ଯୁଦ୍ଧ କରଇ ନ ରଖେ ଶରଣ ।
ମହାବାତେ ବୃକ୍ଷୁ ଯେହ୍ନେ ପକ୍ୱଫଳ ଝଡ଼ି
ତହୁଁ ପ୍ର ସଇନ୍ୟମାନେ ଯାଉଛନ୍ତି ପଡ଼ି ।
ପଡ଼ିକା ଯୋଦ୍ଧାକୁ ରକ୍ତକର୍ଦ୍ଦମରେ ଲେଟି
ଭସ ଭସ ଯାଆନ୍ତି ଯେ ହୋଇ ଗୁଟିପିଟି ।
ଅନୁକ୍ଷଣେ ବହୁଅଛି ରୁଧିରର ନଦୀ
ଯେଉଁପରି ଅଚଳରୁ ଗଙ୍ଗା ଆସେ ଭେଦି ।
ସେଥିର ଜଳରେ ଶବ ଭାସେ ମେଳା ମେଳା
ଗଜ ଅଶ୍ୱାଦି ଭସନ୍ତି ଉଠେ ମଳମଳା ।
ସେ ରକ୍ତନଦୀକୁ ଦେଖି ଅଟେ ନନ୍ଦଘୋଷ
କେଁବଟ ହୋଇ କାହାନ୍ତି ନାବ ପୀତବାସ ।
ଶଙ୍ଖ ଶ୍ୱେତ ଘୋଷୀର ଯେ କାମପାଳ ହସ୍ତ
ସେ ନଦୀରେ ବହନ୍ତି ହଂସଯୂଥ ପ୍ରାୟ ।
ଆହେ ବୁଧଜନେ ମୋର ନ ଧେନକ ଦୋଷ
ଜନ୍ମେ ଜନ୍ମେ ଏକା ମୁହିଁ କରଇ ଅଭ୍ୟାସ ।
ସତ୍ୟବତୀ ସୁତ ପରାଶର ଯାର ପିତା
ପରମାତ୍ମା ପୁରୁଷ ଯେ ଯୋଗଧ୍ୟାନେ ଜ୍ଞାତା ।
ମହାପ୍ରଳୟେ ରହନ୍ତି କୃଷ୍ଣଙ୍କ ଉଦରେ
ମହାଯୋଗେ ସାଧନ୍ତି ସେ ସମସ୍ତ ପ୍ରକାରେ ।
ଅନନ୍ତ ଅବତାର ଯେ ଯୋଗରେ ଦେଖନ୍ତି
ପ୍ରଳୟ ଉତ୍ପତ୍ତି ପୁଣି ଭାରତ ଲେଖନ୍ତି ।
ସର୍ବଜନ ଚିନ୍ତାମଣି ଦ୍ୱିଜକୃଷ୍ଣ ଯେହ୍ନ
ସେ ମୁନିଙ୍କ ପ୍ରସନ୍ନେ ମୁଁ ଭାରତ ଲେଖଇ ।
ଜନ୍ମେ ଜନ୍ମେ ସେବଇ ମୁଁ ସେ ମୁନିଙ୍କ ପଦେ
ଶୂଦ୍ରମୁନି ଲେଖେ ଦେବୀ ଶାରଳା ପ୍ରସାଦେ ।

---

## ସାତ୍ୟକି ସହିତ ଭୂରିଶ୍ରବାଙ୍କ ଯୁଦ୍ଧ ଓ ମୃତ୍ୟୁ ଏବଂ ଭୀମଙ୍କର ବ୍ୟୂହଭେଦ

ପୁଣି ରାଜା ପୁଚ୍ଛାକଲେ କହ ତପୋଧନ
ପଦ୍ମବ୍ୟୂହ ଭେଦକରି ପାଣ୍ଡବ ଅର୍ଜୁନ ।
କେଶରିବ୍ୟୂହ ମଧ୍ୟରେ ଝଁପାଇ ପଶିଲେ
ତହିଁ ମଧ୍ୟେ ପଶିକରି କେଉଁ କୃତ୍ୟ କଲେ ।
କହନ୍ତି ଅଗସ୍ତି ମୁନି ହୋଇ ସୁପ୍ରସନ୍ନ
ଯାହା ପଚ୍ଚରିଲ ରାଜା ମନଦେଇ ଶୁଣ ।
ଦ୍ରୋଣ ଯେଉଁ ପଦ୍ମବ୍ୟୂହ କରିଥିଲେ ତହିଁ
ଶତକୋଟି ପାଖୁଡ଼ା ଯେ ତାହାର ଅଛଇ ।
ପାଖୁଡ଼ାକେ ଅବୁଦେକ ଯୋଦ୍ଧା ରହିଛନ୍ତି
ଅନୁକ୍ଷଣେ ଧନୁ ଧରି ନାରାଚ ବିନ୍ଧନ୍ତି ।
କେହ୍ନ ଦଶବଂଶ ମାରେ ନନ୍ଦଘୋଷ ପରେ
ଗୁରୁଆଡ଼ୁ ବରଷନ୍ତି ଦିବ୍ୟ ଅସ୍ତ୍ର ଧାରେ ।
କହନ୍ତେ ଭାରତଯୁଦ୍ଧେ ଅସମ୍ଭବ କଥା
ତାହା ଜିଣିବାକୁ ଏକା ଅର୍ଜୁନ ଶକତା ।
ଅପାର ଯୁଦ୍ଧ କରେ ସେ ସମରେ ନିର୍ଭୟ
ପଦ୍ମପାଖୁଡ଼ାରେ ଛନ୍ତି ନବସସ୍ର ରାୟ ।
ଅସୀସସ୍ର ଯୋଦ୍ଧା ସଙ୍ଗେ ଛନ୍ତି ଏହାଙ୍କର
ସର୍ବ ଅଗ୍ରେ ରହିଛନ୍ତି କର୍ଣ୍ଣ ମହାବୀର ।
ଏ ମଧ୍ୟରେ ଶୁଭେ ଯାର ନାମ ମହାଦାନୀ
କୁଣ୍ଡଳ ମାଗିଲେ ତାକୁ ଦାନ ସସ୍ରଯୋନି ।
ଲଲାଟେ ମୁକୁଟ ଶୋହେ ଶତସୂର୍ଯ୍ୟ ଜ୍ୟୋତି
ଯାର ଭୁଜେ ଶୋଭାପାଏ ବଜ୍ରର ଖଣ୍ଡତ ।

ଶସ୍ତ୍ର ଧରି ଶ୍ରୀକୃଷ୍ଣଙ୍କୁ ପୁଚ୍ଛନ୍ତି ଅର୍ଜ୍ଜୁନ
ଏ ହାର ଆଟୋଉ ଅଛି ସାରବର କର୍ଣ୍ଣ ।
ଦୁଃସହ ପ୍ରତିଜ୍ଞା କରି ସୈନ୍ୟଙ୍କୁ ଆଟୋଉ
ମହାକ୍ରୋଧେ ଯୁଦ୍ଧ କରୁଅଛି ଆଗସର ।
ଶ୍ରୀକୃଷ୍ଣ ପାଦେ ପ୍ରଣମି କହେ ଫାଲଗୁନ
ଭେଦବା କପଟି ଅଛି ବେଳ ଦଣ୍ଡ ତିନ ।
ଆହେ ଜନାର୍ଦ୍ଦନ ବାହ ସମ୍ଭାଳି ରଥକୁ
ଅଦ୍ଧ ନମିଷକେ ମୁହିଁ ଜିଣିବ କର୍ଣ୍ଣକୁ ।
ବଜ୍ରସମ ବାଣ ଚହୁଁ ସକ୍ରୋଧେ ମାଇଲେ
ତାର ଆଘାତେ ବହୁତ ସୈନ୍ୟ ଘୂମାଇଲେ ।
ହାକୋଡ଼ା ଶର ମାଇଲେ ପଡ଼ିଲେକ କୋଟି
ସେନା ଚୋପରେ ଭେଦଣ ରକ୍ତନଦୀ ଉଠି ।
ରଣେ ଅଶକତ ଯହୁଁ ହୋଇଲେ ସଇନ
କର୍ଣ୍ଣ ଓଗାଳିଲେ ଆସି ସସ୍ତ୍ରଯୋଦ୍ଧା ବେଢ଼ ।
ଗିରି ସଦୃଶ ଦିଶନ୍ତି ସେହୁ ସସ୍ତ୍ରରଥୀ
ତାଙ୍କ ମଧ୍ୟେ ମେରୁମୟ କର୍ଣ୍ଣ ସେନାପତି ।
ଦଶଶତେ ବାଣ କର୍ଣ୍ଣ ଗୁଣେ ବସାଇଣ
ବନ୍ଧିଲେକ ପାର୍ଥ ପରେ ଅନଳ ସମାନ ।
ଆସନ୍ତି ସେ ଶରଚୟ ଆକାଶରୁ ଗର୍ଜି
ପ୍ରବଳ ବତାସେ ଯେହ୍ନେ ତରୁପଡ଼େ ଭାଜି ।
ପ୍ରଳୟ ମେଘ ଯେପରି କରଇ ଶବଦ
ଶୁଣିକରି ଯୋଦ୍ଧାମାନେ ହୋଇଲେ ସ୍ତବଧ ।
ତାହା ଦେଖି ଅରଜୁନ ମହାକ୍ରୋଧ କଲେ
ପ୍ରତିବାଣେ କର୍ଣ୍ଣ ଶସ୍ତ୍ର ସକଳ ଛେଦିଲେ ।
ଏ ସମୟେ ଆସି ଏକ ମହାତେଜସ୍ୱି
ଅଦ୍ଭୁତ ରଣକ୍ଷେତ୍ରରେ ଗଲା ଯେ ଦଳସି ।
ସେ ତେଜେ ପାଣ୍ଡବ ବଳ ହୋଇ ଉତ୍ତେଜିତ
କୌରବଙ୍କ ସହ କଲେ ସମର ଅଦ୍ଭୁତ ।
ପୁଣି ପଞ୍ଚବାଣ ଚହୁଁ ଅର୍ଜ୍ଜୁନ ମାଇଲେ
ଦଶଶତ ବାଣେ କର୍ଣ୍ଣ ତାହା ନିବାରିଲେ ।
ବାରୁଣୀ ଅସ୍ତ୍ରକୁ ପୁଣି ବନ୍ଧିଲେ କିରୀଟୀ
ବହୁ ଯୋଦ୍ଧାଙ୍କର ଧନୁ ପକାଇଲେ କାଟି ।
ମୋହନ ଶରକୁ ପୁଣି ବନ୍ଧିଲେ ଅର୍ଜ୍ଜୁନ
ଶମନ ପ୍ରାୟେ ହରିଲେ ସେ ସବୁଙ୍କ ପ୍ରାଣ ।
ସମରେ ସଇନ୍ୟମାନେ ହେଲେ ଅସାକ୍ଷମ
ଶସ୍ତ୍ର ଧରିବାକୁ କେହି ନୋହିଲେକ କ୍ଷମ ।

ଚେତନା ହରାଇ ସର୍ବେ ଆଟୋଳିଲେ ଧସ
ସବୁଙ୍କର ଶରୀରରୁ ବହେ ରକ୍ତଧାସ ।
ରୁଧିରରେ ସବୁଙ୍କର ଦେହ ଜରଜର
ନାଚନ୍ତି ତହିଁ କବନ୍ଧ ଖେଚର ଭୂଚର ।
ପଡ଼ିଲେ ସକଳ ଯୋଦ୍ଧା କେହି ନାହିଁ ସଖା
ରଣରଙ୍ଗେ ମାତିଛନ୍ତି କର୍ଣ୍ଣବୀର ଏକା ।
ନିର୍ଭୟରେ ଧନୁ ଧରି ରାଧାଙ୍କର ସୁତ
ଶରବୃଷ୍ଟି କରେ ଯହିଁ ଅଛନ୍ତି ଅଚ୍ୟୁତ ।
ପୁଣି କର୍ଣ୍ଣ ଆର୍ଦ୍ରାବଳୀ ଅସ୍ତ୍ରକୁ ପେଷିଲେ
ଏକଇ ନାସରେ ପାର୍ଥ ସବୁ ନିବାରିଲେ ।
ପୁଣି ସହସ୍ରେକ ବାଣ ବନ୍ଧିଲେ ରାଧେୟ
ସେ ଶରରେ ପରାଭବ ପାଇ ଧନଞ୍ଜୟ ।
ନବାସ ବାଣ ଯୋଚି ଗୁଡ଼ଦ୍ୟନ୍ତି ପାର୍ଥ
ସେ ଅସ୍ତ୍ର ପଡ଼ିଲା ଯାଇ ରାଧେୟର ରଥ ।
ହାକୋଡ଼ନ୍ତେ ସେହି ଅସ୍ତ୍ର ରଥ ଗଲା ଭଜି
ବଇଠି ହୋଇଣ କର୍ଣ୍ଣ ଉଦ୍ଧରଣ ମଟି ।
ଅନ୍ୟ ରଥ ବେଗେ ଆଣି ଦେଲେକ ସାରଥି
ଧାଡ଼ଜାରେ ତହିଁ ବଢ଼ି ଚଳେ କର୍ଣ୍ଣରଥୀ ।
ତେତେଣେ ଅଶ୍ୱତ୍ଥାମା ସଙ୍ଗେ ସାତ୍ୟକିର ଯୁଦ୍ଧେ
ଅସଂଖ୍ୟ ସୈନ୍ୟ ପଡ଼ିଲେ ରଣକ୍ଷେତ୍ର ମଧ୍ୟେ ।
ବାରୁଣୀ ଅସ୍ତ୍ରକୁ ଧରି ଦ୍ରୋଣ ବ୍ୟକ୍ତେ ପେଷି
କୃପାଣ ଶରେ ସାତ୍ୟକି ତା ଦେଲା ବିନାଶି ।
ଲୁବ୍ଧକ ଅସ୍ତ୍ର ବନ୍ଧନ୍ତେ ବୀରବର ଦ୍ରୌଣି
ଦିବାତେଜ ନାଶକରି ଘୋଟିଲା ରଜନୀ ।
ସାତ୍ୟକି ଅସ୍ତ୍ରରେ ଘୋର ଅନ୍ଧକାର ଦେଖି
ପଦ୍ମବ୍ୟୂହେ ପଶିଲ ଯେ ସମର ଉପେକ୍ଷି ।
ଲୁବ୍ଧକ ଫିଟିଯାଆନ୍ତେ ଦ୍ରୋଣଙ୍କର ବଳ
ସାତ୍ୟକିକୁ ନ ଦେଖି ସେ ଭାଳେ କାହିଁଗଲା ।
ପଦ୍ମବ୍ୟୂହ ମଧ୍ୟେ ଯେତେ ଯୋଦ୍ଧା ରହିଥିଲେ
ସାତ୍ୟକିକୁ ଦେଖିଣ ସେ ଆଗେ ଓଗାଳିଲେ
କୃଷ୍ଣଙ୍କ ସମାନ ସେହୁ ଅଟେ ଧନୁର୍ଦ୍ଧର
ବଞ୍ଚନ ସେ ଦେଇଁ ନାରଚ ଆହା ଅନିବାର ।
ଅସଂଖ୍ୟ ଯୋଦ୍ଧା ତା ଶରେ ପଡ଼ିଲେ ସମରେ
ବାତେ ରମ୍ଭାତରୁ ପ୍ରାୟ ଲୋଟନ୍ତି ମହୀରେ ।
ବହୁ ଯୋଦ୍ଧାଙ୍କୁ ସାତ୍ୟକି ଯାଆନ୍ତେ ବିନାଶି
ରଥ ବସି ଭୂରିଶ୍ରବା ଓଗାଳିଲେ ଆସି ।

ଶାନ୍ତନୁଙ୍କ ଭାଇ ସେହି ଅଟନ୍ତି ମହାରଥୀ
ପାଣ୍ଡବ କୌରବଙ୍କର ଅଜା ସେ ଅଟନ୍ତି ।
ଧାଇଁଲା ଭୂରିଶ୍ରବା ସେ ସାତ୍ୟକିକୁ ଦେଖି
ବର୍ଷିଲା ତୀକ୍ଷ୍ଣ ନାରାଚ ଉପ୍ରୋଧ ଉପେକ୍ଷି ।
ଚଉଷଠି ନାରାଚ ଯୋଚି ବର୍ଷିଲେ ସତ୍ୱର
ସାତ୍ୟକି ତା ନିବାରିଲା କରି ପ୍ରତିଶର ।
ପୁଣି ପୁଣି ଭୂରିଶ୍ରବା ଶର ବର୍ଷେ ରାଗେ
ପ୍ରତି ଅସ୍ତ୍ରରେ ସାତ୍ୟକି ନିବାରଇ ବେଗେ ।
କେହି କାହାକୁ ସମରେ ନୁହନ୍ତି ଯେ ସାନ
ଅସ୍ତ୍ରେ ଅସ୍ତ୍ର ପରିଚାଳ କରନ୍ତି ସମାନ ।
ବଜ୍ର ମୁଦ୍ଗର ଧରି ଭୂରିଶ୍ରବା ବୀର
ସାତ୍ୟକିର ରଥେ ନେଇ ପିଟିଲେ ସତ୍ୱର ।
ମୁଦ୍ଗରର ଆଘାତେ ରଥ ହେଲା ଗୁଣ୍ଡା
ପାଦଗତିରେ ଧାଇଁଲେ ଯଦୁବୀର ଷଣ୍ଢ ।
ଏକହସ୍ତରେ ଗୁର୍ଜ୍ଜ ଏକହସ୍ତେ ଯାଠି
ଭୂରିଶ୍ରବା ପାଖେ ଗଲା ପଛକୁ ନ ହଟି ।
କରେ ଗୁର୍ଜ୍ଜ ବୁଲାଇ ପବନ ବେଗରେ
ଆକଷ ପ୍ରହାରେ ଭୂରିଶ୍ରବାର ରଥରେ ।
ଯେସନେ ନିର୍ଘାତ ଆସି ପଡ଼ଇ ପର୍ବତେ
ତେସନେ ଶବ୍ଦ ଶୁଭିଲା ଶସ୍ତ୍ର ଯେ ପଡ଼ନ୍ତେ ।
ମହା ଅନଳ ଜର୍ଷଣ ଉଠିଲା ଝଟତି
ସମର ବସ୍ତ୍ର ଥିଲା ଯେ ଜଳିଲାକ ଧାଡି ।
ଭୂରିଶ୍ରବାଙ୍କର ରଥ ହୋନ୍ତି ଭସ୍ମମୟ
ରଥୁ ଲୁଦ ପଡ଼ିଲେ ସେ ମନେ କରି ଭୟ ।
ସମରେ ବହେଷୀ ହୋଇ ସେହି ବେନରଥୀ
ଯେସନେ କେତୁ ମଙ୍ଗଳ ସେରୂପେ ଦିଶନ୍ତି ।
ବେଗେ ଯୋଡାଇ ସାତ୍ୟକି ପିଟିଲେ ଗୁର୍ଜ୍ଜ
ସମ୍ଭାଳିଲେ ପରବେ ତା ଶାନ୍ତନୁ ସାନୁଜ ।
ପରଘେ ଗୁର୍ଜ୍ଜ ବାଜ ଉଠିଲା ଅନଳ
ନଶାକର ପର ଝଳ ଦିଶିଲା ଉଜ୍ୱଳ ।
ପୁଣି ସାତ୍ୟକି ଧରଣ ନକନକି ଯାଠି
ରେ ରେ କାର କରଣ ସେ ଆକର୍ଷଣ ଉଠି ।
ଦେଖିକରି ଭୂରିଶ୍ରବା ଧରି ବଜ୍ର କୁନ୍ତ
ପିଟାପିଟି ହେଲେ ଦେନ ଅସ୍ତ୍ର ହେଲା ହତ ।
ପାଦଗତି କରି ପୁଣି ବସୁଦେବ କଳା
ଶ୍ରୀଭୂଜେ ଧଇଲେ ଏକ ଖଡ଼ଗର ଫଳା ।
ଭୂରିଶ୍ରବା ଏକ କରେ ଘେନିଲେ ଆଡ଼ଣ
ଏକ ହସ୍ତରେ ଧାରଣ କରିଲେ କୃପାଣ ।
ଅନ୍ତରୀକ୍ଷ ମାର୍ଗକୁ ସେ ବୁଲାଇଣ ଖଣ୍ଡା
ଭୂରିଶ୍ରବାଙ୍କୁ ପିଟିଲେ ଯଦୁବୀର ଷଣ୍ଢ ।
ଭୂରିଶ୍ରବାଙ୍କ ଜାନୁରେ ସେହି ଖଣ୍ଡା ପଡ଼ି
ତଳେ ପଡ଼ିଗଲା ଖସି ହସ୍ତୁ ଗଲା ଛଡ଼ି ।
ଅସ୍ତ୍ର ଖସନ୍ତେ ସାତ୍ୟକି ଶୂନ୍ୟହସ୍ତ ହେଲେ
ଧାଇଁଯାଇ ଭୂରିଶ୍ରବା ତା ପାଖେ ହୋଇଲେ ।
ମତ୍ତ କେଶରୀର ସମ ଗର୍ଜି ମହାବଳ
ଆକର୍ଷିଣ ଧଇଲେ ସେ ସାତ୍ୟକିର ବାଳ ।
ବାମେ କେଶ ଦକ୍ଷେ ଖଡ଼୍‌ଗ ଧରି ଶିର ଝୁଣ୍ଟି
ବୋଲେ ରେ ପାଣ୍ଡବା ତୋତେ ଯମ ଡାକଇଣି
ଏ କୁରୁସୈନ୍ୟର ବୋଲି ତୁହି କି ନ ଜାଣୁ
ପ୍ରଭୁ ସେବକଙ୍କୁ ତୁହି ଏକା ପ୍ରାପ୍ତେ ମଣୁ ।
ସ୍ମର ଆରେ ପାଣ୍ଡବା ତୋର ମାତା ପିତା ।
ସ୍ମରରେ ମୂର୍ଖମତି ତୋ ଇଷ୍ଟଦେବତା ।
ସ୍ମର ବୋଲି ତାହା'ର କେଶ ଦୃଢେ ଟାଣି
ଉଚେ ଡାକଇ ସାତ୍ୟକି ରଖ ଚକ୍ରପାଣି ।
ଊର୍ଦ୍ଧ୍ୱ ମୁଖରେ ସାତ୍ୟକି ଦେଲା ଯହୁଁ ଡାକ
କପିକେତନେ ଶୁଭିଲା ତାହାର ଯେ ବାକ୍ୟ ।
ଧ୍ୱଜରେ ଥାଇ ବୋଇଲା ପବନନନ୍ଦନ
ରଣେ ବିରଥ ହୋଇ କେ ସ୍ମରେ ଜନାର୍ଦ୍ଦନ ।
ଅତି ଉଚ୍ଚରେ ସାତ୍ୟକି ଗ୍ରହୁ ଥାଇ ଡାକ
ଶରଣ ପଞ୍ଜର ଆହେ ପାର୍ଥ ମୋତେ ରଖ ।
ଏହା ଶୁଣି କୃଷ୍ଣ ବୋଇଲେ ଶୁଣ ସବ୍ୟସାଚି
ରଥ ପଛେ ରହି ପାର୍ଥ ବୋଲି କେ ଡାକୁଛି ।
କେତେ ପୁଣି ଡାକ ଶୁଣି ବୀର ଫାଲଗୁନ
ଗାଣ୍ଡୀବେ ଯୋଚିଲେ ତୀକ୍ଷ୍ଣମୁନା ଶରସେନ ।
କେ କାହାକୁ ପରାଭବ ଦେଉଅଛି ଦୂରେ
କୃ ତାହାର ଭୁଜ କାଟିପକା ସେହିଠାରେ ।
କର୍ଷ୍ଣୀ ଲୋକଙ୍କୁ ତୁ ରକ୍ଷାକର ଏହିକ୍ଷଣି
ପ୍ରହାର କରେ ଯେ ତାର ଭୁଜ ପକା ହାଣି ।
ଏତେ ଶୁଣି ଏମନ୍ତ ପାର୍ଥ ପେଷିଲେ ନାରାଚ
ଧାଡକାରେ ଛେଦିଲା ତା ଭୂରିଶ୍ରବା ଭୁଜ ।
ଭୂରିର ଦକ୍ଷିଣଭୁଜ ଛିଡ଼ି ଭୂମିରେ ପଡ଼ନ୍ତେ
ସାତ୍ୟକିର କେଶ ଧରିଥିଲା ବାମହସ୍ତେ ।

ତା ବାମ ହସ୍ତରୁ ବାଣ ଛଡ଼ାଇ ପକାଇ
ଭୂରିଶ୍ରବାଙ୍କ ଦକ୍ଷିଣ ହସ୍ତୁ ଖଣ୍ଡା ନେଇ ।
ନିଜ ବକ୍ଷକରେ ଧରି ଉଞ୍ଚାଇ ସେକ୍ଷଣି
ଭୂରିଶ୍ରବାଙ୍କର ଦେହ ପକାଇଲା ହାଣି ।
କନ୍ଧରୁ ତାହାର ମୁଣ୍ଡ ପଡ଼ିଲାକ ଛିଡ଼ି
ରହିଲା ତା କଳେବର ଉକଟରେ ଚଢ଼ି ।
ତହୁଁ ସାତ୍ୟକି ଧାଇଁଲା ସିଂହଗତି ଜାଣି
କେଶର ବ୍ୟୂହ ମଧ୍ୟରେ ଭେଟେ ଚକ୍ରପାଣି ।
ଶ୍ରୀକୃଷ୍ଣ ସନ୍ତୋଷ ହେଲେ ସାତ୍ୟକିକି ଦେଖି
ବୋଇଲେ ଏକା ଆଇଲୁ ଠାକୁରେ ଉପେକ୍ଷି ।
ପ୍ରଣାମ କରି ସାତ୍ୟକି କୃଷ୍ଣଙ୍କର ପଦେ
ବୋଲେ ଯୁଧିଷ୍ଠି ବିସ୍ମୟ ବହୁ ଶଙ୍ଖ ଶବ୍ଦେ ।
ନ ଶୁଣନ୍ତେ ପାଞ୍ଚଜନ୍ୟ ଶଙ୍ଖର ଶବଦ
ଧର୍ମଙ୍କ ନନ୍ଦନ ତେଣୁ ହୋଇଣ ବିଷାଦ ।
ମୋତେ ଆଜ୍ଞା କଲେ ଯେ ସନ୍ନିଧିକୁ ଯାଇ
କି ଅଛି ମୋର ଅର୍ଜୁନ ଜୀବନେ କି ନାହିଁ ।
ଯାଅ ତୁ ସାତ୍ୟକି ବେଗେ ଭେଟ ଫାଲଗୁନ
ଶୁଣିଣ ବାରତା ତାକୁ ଦିଅ ବେଗେ ଆଣି ।
ତେଣୁ ମୁଁ ଗମନ କଲି ଏକ ରଥପରେ
ଅନେକ ନିରୋଧ ମୋତେ ପଡ଼ିଲା ବାଟରେ ।
ଶ୍ରୀକୃଷ୍ଣ ବୋଇଲେ ସଙ୍ଗେ ନ ଆଣିଣ ସଖା
ଦ୍ରୋଣ ଦ୍ରୌଣିକି ଜିଣିଲୁ କପରି ତୁ ଏକା ।
ସାତ୍ୟକି ବୋଇଲା ଦେବ ତୁମ୍ଭର ପ୍ରସାଦେ
ଦ୍ରୋଣ ଦ୍ରୌଣିକି ଜିଣିଲି ମୁହିଁ ଅପ୍ରମାଦେ ।
ଶଲ୍ୟ କୃପ ଆଚାର୍ଯ୍ୟହିଁ ଜିଣିଲି ସବୁନ୍ତ
ଆସନ୍ତେ ମୁଁ ଭୂରିଶ୍ରବା ଦେଇଥିଲା ଶାନ୍ତି ।
କେଶ ଧରି ହାଣିବାକୁ ଧଇଲା ଖଡ଼ଗେ
ତୁମ୍ଭର ନାମ ସ୍ମରିଣ ଡାକିଲଇଁ ବେଗେ ।
ଅଦଭୁତେ ଏଜନର ଅଇଲା ବେଗରେ
ଭୂରିଶ୍ରବା ଭୁଜ କାଟି ଫିଙ୍ଗିଲା ଭୂମିରେ ।
ହସ୍ତ ଯାନ୍ତେ ତା ଖଡ଼ଗେ କାଟିଲି ତା ଶିର
ପ୍ରାଣ ତେଜି ପଡ଼ିଲା ସେ ବୃଦ୍ଧ ମହାବୀର ।
ସାତ୍ୟକି ମୁଖରୁ ଶୁଣି କଥା ଅମଙ୍ଗଳ
ପାର୍ଥ ବେନି ନେତ୍ରୁ ବହିପଡ଼େ ଅଶ୍ରୁଜଳ ।
ଶ୍ରୀକୃଷ୍ଣ ବୋଇଲେ ବୁଦ୍ଧି ଶୁଣ ଅରଜୁନ
କେବଣ କାରଣେ କାହୁଁ ବିକଳ ତୋ ମନ ।

ପାର୍ଥ ବୋଇଲେ ହେ ଦେବ କୁରୁରାଜାସୁତ
ପ୍ରପିତାମହ ଆମ୍ଭର ଅଟେ ମାନ୍ୟଯୁକ୍ତ ।
କି କାରଣେ ଯୁଧିଷ୍ଠିର ଆରମ୍ଭିଲେ ଯୁଦ୍ଧ
ଅଧର୍ମେ ପ୍ରପିତାମହ ଆମ୍ଭେ କଲୁ ବଧ ।
ଏମନ୍ତ କହି କାନ୍ଦନ୍ତେ ଦୁଃଖେ ସବ୍ୟସାଚୀ
ଗୋବିନ୍ଦ ବୋଇଲେ ଏହି ଚିନ୍ତା ନୁହେଁ କିଛି ।
ତୃତୀୟ ପ୍ରହର ଆସି ହୋଇଲାଣି ଦିନ
କଳନା ନୋହିଲା କେତେ ଛନ୍ତି କୁରୁସୈନ୍ୟ
ଯଦ୍ୟପି ଜୟଦ୍ରଥେ ନ ପାଉଁ ଲେଉଡ଼ି ଆମ୍ଭେ
ଆପେ ନାଶଯିବୁ ଲେଉଡ଼ି କି ବନ୍ଧୁ କୁଟୁମ୍ବେ ।
ଅର୍ଜୁନ ଶୋକ ନିବାରି ଦେବ ନାରାୟଣ
ପାଞ୍ଚଜନ୍ୟ ଶଙ୍ଖଶବ୍ଦ କଲେ ଘନ ଘନ ।
ସେହି ଶଙ୍ଖ ଶବ୍ଦ ଗୋଟି ଗଲା ଧାଡ଼ିକାରେ
ଜୟବାଣୀ ସମ୍ଭାରିଲା ଯୁଧିଷ୍ଠି କର୍ଣ୍ଣରେ ।
ସେହି ଜୟ ଶବ୍ଦ ଶୁଣି ଦେବ ଧର୍ମରାୟ
ପାର୍ଥ ଯୁଦ୍ଧକରେ ବୋଲି ଆନନ୍ଦ ହୃଦୟ ।
ମାର ମାର ବୋଲି ଶବ୍ଦ କରେ ଖଙ୍ଗଧର
ଯୁଧିଷ୍ଠି ହୃଦ ବିକଳ ହୋଇଲା ଅନ୍ତର ।
ଏହା ଶୁଣିଣ ସାନନ୍ଦ ହେଲେ ସୁରଜଣ
ଧନ୍ୟ ଧନଞ୍ଜୟ ବୋଲି ଭାଷିଲେ ବଚନ ।
ପାର୍ଥ ଏକା ଥିଲେ ଯହୁଁ ବେନିରଥୀ ହେଲେ
ପଦ୍ମକେଶର ବ୍ୟୂହରେ ଧସାଇ ପଶିଲେ ।
ବଢ଼ିଲା ସମର ଦେଖୁ ଦେଖୁ ମହାଘୋର
ଶର ଆଚ୍ଛାଦିତ କଲେ ଦିଶେ ଅନ୍ଧକାର ।
ବୈଷ୍ଣବ ଅସ୍ତ୍ରକୁ ପାର୍ଥ ଗାଣ୍ଡିବ୍ୟରେ ଟାଣି
କର୍ଣ୍ଣ ରଥୀ ସାରଥିକି ପକାଇଲେ ହାଣି ।
ସୂତହୀନ ହୋଇ କର୍ଣ୍ଣ କରେ ଶରବୃଷ୍ଟି
ଚକ୍ଷୁବନ୍ଦ କରେ ତହୁଁ ଅଗ୍ନିକଣା ଉଠି ।
ଶରଙ୍କର ଯିବାଗତି ବିଦ୍ୟୁତେଜ ଜାଣି
କଳିଙ୍ଗା ମାସରେ ଯେହ୍ନେ ବରଷଇ ପାଣି ।
ପାକରେ କର୍ଣ୍ଣର ପଞ୍ଚସହସ୍ର ବଳ ଧନୁ
ସହସ୍ରେ ଶର ବାନ୍ଧିଲା ସିନ୍ଧୁପୁର ସୂନୁ ।
ଖର୍ପି ନାଗତ ବାନ୍ଧିଲେ ସାର ଧନଞ୍ଜୟେ
ସନ୍ଧେୟ ମୋହ ହୋଇଲା ସେ ଅସ୍ତ୍ରର ଘାଏ ।
ବାନ୍ଧନ୍ତେ ନାଗଠ ପାର୍ଥ ଲୋଟନ୍ତି ସଇନ୍ୟ
କଟାନ୍ତ ଫୁଟନ୍ତି ବାଣେ ପାଆନ୍ତି କଷଣ ।

ରଥୀ ଗଜ ପଦାତିଏ ହୋଇ ଖଣ୍ଡ ଖଣ୍ଡ
ନାଚନ୍ତି କବନ୍ଧ ସମ ଛିଡ଼ନ୍ତେଣ ମୁଣ୍ଡ ।
ଆହେ ବୁଧଜନେ ଏହି ଅସଂଖ୍ୟ ସମର
ଅନୁକର ଲେଖିବାକୁ ଶକ୍ତି ଅଛି କାର ।
ଗିରିଜା ପ୍ରସନ୍ନ ହୋଇ ବାକ୍ୟ ଦ୍ୟନ୍ତି ଚନ୍ତି
ତେଣୁ ମୁଁ ପଦଯୋଡ଼ଣ ଭାରତ ଲେଖଇଁ ।
ସମର କରନ୍ତେ ହେଲା ଚୌଦଣ୍ଡ ବେଳ
କେଶରବ୍ୟୂହେ ଲାଗିଛି ସମସ୍ତ ପ୍ରବଳ ।
ଏଣେ ଧର୍ମ ଯୁଧିଷ୍ଠିର ଭାଳନ୍ତି ବସି
ତଉତ ସତ ବେଳର ହୋଇଲାଣି ଆସି ।
ଭୀମକୁ ଡାକି ଭାଷନ୍ତି କୋଳନ୍ତ ଏ ଗିର
ଚୌଦଣ୍ଡ ବେଳ ଆସି ହେଲେ ଦିନକର ।
ଅର୍ଜୁନ ବାରତା ମୁହିଁ ନ ପାଇଲି ଭଲେ
ପାର୍ଥ ନାଶିବ ଜୟଦ୍ରଥେ ନ ମାଇଲେ ।
ପ୍ରତିଜ୍ଞା ସାଧନ ହେବ ଅଟେ ଜଗତ୍କେଠି
ନ ମାରିଲେ ଆଉର କି ଆସିବ ଲେଉଟି ।
ଯାଅ ତୁହି ବୃକୋଦର ଯହିଁ ଅଛି ପାର୍ଥ
ତା ଶୁଦ୍ଧ ବାରତା ଆଣି ଜଣାଅ ଉଚିତ ।
କୃଷ୍ଣଙ୍କ ଛାମୁରେ କହି କହିବୁ ମୋ କଥା
ଅଧର୍ମ ଯୁଦ୍ଧ କରଣ ମାରୁ ସେ ସର୍ବଥା ।
ବଡ଼ ଅଧର୍ମୀ କୌରବେ ନ କରୁ ଉପରୋଧ
ଆପଣା ନିଧନେ ଧର୍ମେ ନ ବଳାଅ ସଧ ।
ଶସ୍ତ୍ର ନିବାରଣେ ପାର୍ଥ କରୁ ଯେ ସଂଗ୍ରାମ
ଜୟଦ୍ରଥେ ବଧି ପଛେ ପାଳୁ ସର୍ବଧର୍ମ ।
ଦିବସରେ ମାରୁ ଅବା ରଜନୀରେ ମାରୁ
ସମରରେ ପାର୍ଥ ଟିକେ ହେଳା ଯେ ନ କରୁ
ଏହାପରି କହନ୍ତେଣ ଧର୍ମ ଯୁଧିଷ୍ଠିର
ତାଙ୍କ ବାକ୍ୟ ଶୁଣି ଉଠିଁ ଗଲେ ବୃକୋଦର ।
ଜୟସେନ ଲୌହରଥ ସାଜହେଲା ଆଣି
ବହୁରତ୍ନ ମଣିରେ ସେ ହୋଇଛି ମଣ୍ଡଣି ।
ରଥ ପତାକାରେ ବହୁମୁକ୍ତା ଅଛି ଖଞ୍ଜି
ଯେହ୍ନେ ଅରୁଣ ଆଦିତ୍ୟ ରଥ ଯାଏ ସାଜି ।
ବାଛି କୃଷ୍ଣବର୍ଣ୍ଣ ଦଶ ଅଶ୍ୱକୁ ଯୋଚିଲା
ଦୁର୍ଗାଙ୍କୁ ସୁମରି ଭୀମ ରଥେ ବିଜେ କଲା ।
ଜୟସେନ ରଥ ବାହନଏ ଶୂନ୍ୟପଥେ
ପବନ ବେଗରେ ଅଶ୍ୱେ ଚଳନ୍ତି ଉରତେ ।

କଉରବ ଥାଟ ମଧ୍ୟେ ହେଲା ରଥବର
ମିଳିଲା ମାରୁତି ବ୍ୟୂହ ପ୍ରଥମ ଦୁଆର ।
ଭରଦ୍ୱାଜଙ୍କ ନନ୍ଦନ ସେହି ଦ୍ୱାରେ ଥିଲେ
ଭୀମ ଆସିବା ଦେଖିଣ ଆଗେ ଉଗାଳିଲେ ।
ପଞ୍ଚବଶ ନାରାଚ ସେ ବସାଇ ଧନୁରେ
ଆକର୍ଷି ଛାଡିଲେ ବେଗେ ଭୀମଙ୍କ ଉପରେ ।
ଶର ଆସିବାର ଦୂରୁ ଦେଖିଣ ମାରୁତି
ଲୌହଦଣ୍ଡ ଧନୁ ଧରି ଶର ଛନ୍ଦେ ଧାତି ।
ଷରସ ନାରାଚ ପୁଣି ପାବକ ଛାଡ଼ିଲେ
ଦ୍ରୋଣ ଦିବ୍ୟଅସ୍ତ୍ର ପେଷି ତାହା ନିବାରିଲେ ।
ତା ପ୍ରତିଶର ନ ଜାଣେ ବୀର ଭୀମସେନ
ଦ୍ରୋଣଙ୍କର ଶସ୍ତ୍ରେ ଭୀମ ବାଣ ହେଲା ଚୂର୍ଣ୍ଣ ।
ମହାକ୍ରୋଧେ ସେ ଆଚାର୍ଯ୍ୟଙ୍କର ନ.ଡି
କେନକରେ ଗଦା ଘେନି ଧାଇଁଲା ତଡ଼ିତ ।
ବୋଲଇ ଯେ ଭାଳବର ଶୁଣ ଭୀମସେନ
ସର୍ବସଂହାରଣେ କିବା ଆସୁଛି ଶମନ ।
ଭେରେବାର ଶବ୍ଦ କରି ଭୀମସେନ ଉଠି
ଦ୍ରୋଣଙ୍କର ରଥେ ନେଇ ଗଦାବର ପିଟି ।
ଗିରିବର ଭାଙ୍ଗିବାକୁ ସମର୍ଥ ଯେ ଭୀମା
ଗଦାପଡ଼ି ଦ୍ରୋଣଙ୍କର ରଥ ହେଲା ଚୂନା ।
ପୁନଃପୁନଃ ଗଦା ତୋଳି ପିଟେ ବୀରଭୀମ
ତା ଦେଖି ଘୁଞ୍ଚିଲେ ଦ୍ରୋଣ ଦେଖି ତା ସଂଗ୍ରାମ
ଦ୍ରୋଣକୂଳେ ଥିଲେ ପାଞ୍ଚ ଅତିବ୍ରତ ରଥୀ
ଗୋଡ଼ାଇ ପିଟିଲା ଭୀମ କରି ଯାବଗତି ।
କାସଭଗ୍ନ ପକ୍ଷୀ ଯେହ୍ନେ ପଳାବନ୍ତି ଡରେ
ଭଟ୍ଟେ ଯୋଦ୍ଧାଏ ପଳାନ୍ତି ସେହି ପରକାରେ
ମୃଣାଳ ଷଣ୍ଡ ଯେସନେ ଧାଏଁ ଗଜରାଜ
ଗଦା ପ୍ରହାରେ ଅନେକ ରଥ ଗଲା ଭାଜି ।
ଏହାପରି ବହୁସୈନ୍ୟ କରିଣ ନିଧନ
ଦ୍ୱିତୀୟ ଦ୍ୱାରେ ପ୍ରବେଶ ହେଲେ ଭୀମସେନ ।
ସେ ଦ୍ୱାରକୁ ଜଗିଅଛି ବୀର ଦୁଃଶାସନ
ତାର ସଙ୍ଗେ ଛନ୍ତି ଶତନମଲ୍ଲି ତ ସଇନ୍ୟ ।
ବୃକୋଦର ରଥଧ୍ୱଜ ପତାକାକୁ ଦେଖି
ଦୁଃଶାସନ ଆଡ଼ହେଲା ସେ ଦ୍ୱାର ଉପେକ୍ଷି ।
ସୈନ୍ୟବଳ ପଳାଇଲେ ଏଣେତେଣେହୋଇ
ଭିତରେ ପଶିଲେ ଭୀମ ରଥକୁ ଚଳାଇ ।

ସୃଗଳ ପଲରେ ଯେହ୍ନେ ପଶେ ମତ୍ତବ୍ୟାଘ୍ର
ସେପରି ଯାଆନ୍ତି ଭୀମ ରଥ ବାହି ଶୀଘ୍ର ।
ସୈନ୍ୟ ପଳାଇବା ଦେଖି କୃପ ଆଉ ଶଲ୍ୟ
ହସ୍ତୀ ଚଢ଼ି ଓଗାଳିଲେ ଏହି ବେନି ମଲ୍ଲ ।
ମତ୍ତଗଜ ଚଳାଇଣ ଉଠେ ବେନି ଧାପେ
ପୃଥ୍ୱୀ ଟଳମଳ ହେଲା ଭୀମସେନ କୋପେ ।
ମତ୍ତଗଜ ଦେଖି ଯଥା ସିଂହ କରେ ରାଗ
ସେହିପରି ଭୀମ ସିଂହ ଦେଖି ହେଲେ ଆଗ ।
ଲୋହ ଗିରିର ସଦୃଶ ଦିଶେ ଭୀମକାୟ
ନୟନ ବୁଲାଇ ଧାଏଁ କାଳସର୍ପ ପ୍ରାୟ ।
କାଆଁନ କାଆଁନ ଭାର ଗଦା ବେନି ହାତେ
ଯୋଦ୍ଧା ହୋଇ କେ ରହିବ ତାହାଙ୍କ ସାକ୍ଷାତେ
ବେନି ଗଦା ବୁଲାଇଣ ଆକର୍ଷିଣ ପିଟି
ଛକଳ ବତାସେ ଯେହ୍ନେ ଉତ୍ପାଟନ ଲୋଟି ।
ଯୋଜନେ ଉସାର ହୋଇ ବଢ଼ି ଅଛି କାୟ
ରକତରେ ବିଲେପନ ପଦନ ଛନୟ ।
ଯୋଜନେକ ଆୟତନେ ପଡ଼ିଲେ ନୃପତି
ରୁଧିରରେ ବିଲେପନ ହୋଇଲେ ସବୁନ୍ତି ।
ସୈନ୍ୟଙ୍କର ଭଗ୍ନ ଦେଖି ଶଲ୍ୟ ସାମରଥ
ଭୀମପରେ ଶର ବୃଷ୍ଟି କଲେ ଅପ୍ରମିତ ।
ପୁନଶ୍ଚ ସନ୍ଧାନ କଲେ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ଭୀମ ବାମଅଙ୍ଗେ ପଡ଼ି ହୋଇଯାଏ ଚୂର୍ଣ୍ଣ ।
ବାଣାଘାତେ ଅଗ୍ନିକଣା ଉଠଇ ଝିଇକ
ନର୍ଭୟରେ ବୃକୋଦର ଧାଏଁ ଡାକ ଡାକ ।
ସପତବେଳ ପ୍ରହାର କଲେ ସେ ନାରାଚ
ଭୀମଅଙ୍ଗେ ପଡ଼ି ସର୍ବ ହୋଇଗଲା ଭଙ୍ଗ ।
ପର୍ବତେ ପଥର ପଡ଼ି ଯେହ୍ନେ ହୁଏ ଚୂର୍ଣ୍ଣ
ବୃକୋଦରର ଶରୀର ଅଟେ ସେ ସମାନ ।
ବେଳ ଉତ୍ତର ଦେଖିଣ ଭୀମସେନ ଉଠି
ଶଲ୍ୟ କୃପଙ୍କୁ ଗଦାଏ ଗଦାଏ ସେ ପିଟି ।
ବଜ୍ରାଘାତେ ହସ୍ତୀ କୁମ୍ଭସ୍ଥଳ ଗଲା ଭାଜି
ମହାମତ୍ତ ନାଗ ଦୁଇ ପଡ଼ିଲେ ଗରଜି ।
ବାହନ ବିହୁନେ ଦୁହେଁ ହେଲେ ପାଦବ୍ରସା
ହାରଛାଡ଼ ଚଢ଼ି ଦୁହେଁ ଗଲେ ଅପସର ।
ଶକଟକୁ ଯେନ ପଦ୍ମ ବ୍ୟୂହରେ ପଶଇ
ନଶାକାଳେ ତମ ଯେହ୍ନେ କୋଟିଶ ଆସଇ ।

ଦେଖିକରି ପଳାବନ୍ତି କଉରବ ଥାଟ
ସୈନ୍ୟଙ୍କର ଗହଳରେ ନ ପାଆନ୍ତି ବାଟ ।
ରଣରଙ୍ଗା ଭୀମସେନ ସମରେ ଦୁର୍ଜ୍ଜୟ
କାଳଦଣ୍ଡପାଣି ଯାକୁ ଦେଖି କରେ ଭୟ ।
ଶେଳ ଗଦା ମୁଦ୍ଗର ଛେଲ ଚନ୍ଦ୍ରଭାତ
ଲକ୍ଷେଯୋଦ୍ଧା ଏକମୁଖ ହୋଇଣ ମାରନ୍ତି ।
ପାଣି ପର୍ଶୁ କୁଠାର ଯେ ଖଡ୍ଗ କୁନ୍ତ ମୂନା
ଖଣ୍ଡ ବାମଅଙ୍ଗ ପାରେ ଭୀମ ମହାମନା ।
ହସଲଇ ପ୍ରଳୟ ଅଗ୍ନି ସମ ଚକ୍ଷୁବେନି
ଗରଜଣ ଗଦାବର ପିଟଇ ଘା'ବେନି ।
ରକତନଦୀ ବହିଲା ଭୀମସେନ ରଣେ
ପୃଥିବୀକୁ କରଦମ କଲା ଏକା ଜଣେ ।
ସୈନ୍ୟ ଗହଳ ଦେଖିଣ ଯେନି ବେନି ହସ୍ତୀ
ଉର୍ଦ୍ଧ୍ୱବାହୁ କରି ଘାର ପିଟିଲା ସବୁନ୍ତି ।
ହସ୍ତୀଆଦି କରି ସର୍ବେ ହୋଇଲେକ ଧୂଳି
ରଣଷଣ୍ଢ କୋଲି ଏଡ ପଡ଼ିଲା କୋବାଳି ।
ଗଳାରେ କୁଠାର ଦନ୍ତେ ଧରିଣ ତୃଣ
ଶରଣ ରଖ ବୋଲିଣ ଫୁକାରନ୍ତି ସୈନ୍ୟ ।
ଶରଣ ବୋଇଲେ ଭୀମ ଦ୍ୱିଗୁଣ ମାରଇ
ଟିକେ ତାହା'ର ମନରେ ଦୟା ନ ହୁଅଇ ।
କେତେକ ଅଯୁତ କେତେ ରଣରେ ପଶନ୍ତି
ପଞ୍ଚଦଶ ବିଂଶ ବାଣ ନଠାଇ ବିନ୍ଧନ୍ତି ।
ବଜ୍ରରଠାରୁ କଠିନ ଯାହାର ଶରୀର
ସେ ଶରକୁ ଭୀମ ଟିକେ ନ କରେ ଖାତର ।
ଗଦାଧରି ଭୀମସେନ ମାରଇ ଗୋଡ଼ାଇ
ଛଳିବନ୍ତ ଯୋଦ୍ଧାମାନେ ନ ପାରନ୍ତି ରହି ।
ପଳାଇଗଲେ ସଇନ୍ୟ ରଣେ ଭଙ୍ଗଦେଇ
ସୈନ୍ୟଙ୍କ ବିମୁଖ ଦେଖି ଅଶ୍ୱତ୍ଥାମା ଧାଇଁ ।
କଣୟ ନର୍ମିତ ରଥେ ଆରୋହଣ ଦ୍ରୋଣି
ବ୍ୟୂହଦ୍ୱାରେ ସେହି ରଥ ଥୋଇଲା ଆଣି ।

---

### ଅର୍ଜ୍ଜୁନର କେଶର ବ୍ୟୂହରେ ପ୍ରବେଶ ଓ କର୍ଣ୍ଣଦ୍ୱାରା ଭୀମଙ୍କର ପରାଭବ

ଏଥୁଅନ୍ତେ ଶୁଣ ରାଜା ପଦ୍ମବ୍ୟୂହ କଥା
ଅର୍ଜ୍ଜୁନଙ୍କୁ ଓଗାଳିଲା କର୍ଣ୍ଣ ମହାରଥୀ ।

ରଣସ୍ଥ ବଜ୍ରରଥରେ ବିକର୍ଣ୍ଣ ସାରଥି
ଯୋଚିଅଛି ହସ୍ତୀବର ଶାର୍ଦ୍ଦୂଳ ମୂରତି ।
ବିଶାଳ କର୍ଣ୍ଣ ଯେସନେ କନ୍ଦର୍ପ ମୂରତି
କୋଦଣ୍ଡ ସମାନ ଧନୁ କରେ ଧରିଛନ୍ତି ।
ଅସ୍ତ୍ରମାନେ ଦେଖାଯାନ୍ତି ଯେସନେ ଗ୍ରହପତି
ସେହିପରି ଦେଖାଯାଏ କର୍ଣ୍ଣର ମୂରତି ।
ଶ୍ୟାମ ମେଘରେ ବିଜୁଳି ଯେସନେ ପଡ଼ି ଦିଶି
ଅନୁକ୍ଷଣେ କର୍ଣ୍ଣ ଶର ତେସନେ ବରଷି ।
କର୍ଣ୍ଣରୂପ ଦେଖି ପାର୍ଥ ବୋଲନ୍ତି ଶ୍ରୀହରି
ଏହାକୁ ଜିଣିଲେ ବ୍ୟୂହ ଯିବା ନୁହେ ଦୂର ।
ରାଧାର ନନ୍ଦନ କର୍ଣ୍ଣ ବଡ଼ ସାମରଥୀ
ଧାର୍ମିକ ବିବେକ ବୀରପଣେ ଜଗଜ୍ଜିତା ।
ଅର୍ଜ୍ଜୁନକୁ ଶତବାଣ ହାନେ କ୍ଷଣ କ୍ଷଣ
ଶ୍ରୀକୃଷ୍ଣ ସାରଥିଙ୍କି ସେ ମାରେ ଶତବାଣ ।
ଚାରି ଅଶ୍ୱଙ୍କୁ ବିନ୍ଧିଲା ଚାରିଶତ ଶର
ଶତେକବାଣ ହାନେ କପିକେତନ ଉପର ।
ଚାରିଶତ ଶର ହସ୍ତଦ୍ୱୟ ଉପରକୁ
ପାଞ୍ଚଶତ ବାଣ ହାନେ ରଥର ଧ୍ୱଜକୁ ।
ଅସ୍ତ୍ରହରଷିବା ଦେଖି ବୋଲନ୍ତି ଶ୍ରୀଧର
ଦେଖ ପାର୍ଥ ଧର୍ମ ଲଙ୍ଘି କର୍ଣ୍ଣ ହାନେ ଶର
କୃଷ୍ଣଙ୍କ ବଚନ ଶୁଣି କୋପେ ଫାଲ୍‌ଗୁନ
ଅଇବ୍ରତେଜ ନାରାଚ ବିନ୍ଧିଲେ ସେକ୍ଷଣି ।
କର୍ଣ୍ଣର ସମସ୍ତ ଶର ପକାଇଲେ ଛେଦି
ଅର୍ଦ୍ଧଚନ୍ଦ୍ର ବାଣ ପାର୍ଥ ପୁନରପି ବିନ୍ଧି ।
ସେ ଅସ୍ତ୍ରର ପ୍ରତିଅସ୍ତ୍ର ରାଧେୟ କରିଲା
ପାର୍ଥଙ୍କୁ ବିନ୍ଧିବା ଶର ବ୍ୟର୍ଥ କରିଦେଲା ।
ସେହିତା ଶରକୁ ଯହୁଁ ବିନ୍ଧିଲେ ବିଜୟ
ଧାଡ଼ିବାରେ ଛେଦିଲା ସେ କର୍ଣ୍ଣ ବୀରହୟ
ଶର ଆଘାତରେ ଯହୁଁ ବାଜି ପଡ଼ିଗଲେ
ବାକୋଡାସ୍ତ୍ରେ ପାର୍ଥ କର୍ଣ୍ଣ ରଥକୁ ଛେଦିଲେ ।
ଯାଏ ବିରଥୀ ହୋଇଣ ରାଧାର ନନ୍ଦନ
ଅନ୍ୟ ରଥରେ ବସିଣ ଯୁଝିଲା ବହନ ।
ନାର୍ଦ୍ଧାତ ବାଣକୁ ଯୋଚି ହାନେ ମହାରଥୀ
ସ୍ୱର୍ଣ୍ଣମୁନା ବାଣେ ପାର୍ଥ ତାହାକୁ ନିକୋତି ।
ଅର୍ଜ୍ଜୁନ ବିନ୍ଧିଲେ ପୁଣି ମୃଦୁଗର ବାଣ
କର୍ଣ୍ଣ ରଥ ଅଶ୍ୱଙ୍କୁ ସେ କରିଦେଲେ ଚୂର୍ଣ୍ଣ ।

ପୁଣି ଏକ ଅନ୍ୟ ରଥ ଆରୋହଣ କର୍ଣ୍ଣ
ପାର୍ଥ ସଙ୍ଗତରେ ପୁଣି ଆରମ୍ଭିଲା ରଣ ।
କର୍ଣ୍ଣର ଏ ରୀତି ଦେଖି ବୋଲନ୍ତି ମୋହନ
ତୋ ସଙ୍ଗେ ଯୁଦ୍ଧ କରିବା ନୁହେଁ ପ୍ରୟୋଜନ
ପୁଣ ପୁଣ ହାରି ତୁହି ନ ପାଉଛୁ ଲାଜ
ଯାଅ ଅପସରି ତୋର ମୃତ୍ୟୁ ନାହିଁ ଆଜ ।
ପ୍ରତିଜ୍ଞା କରିଛି ପାର୍ଥ ଜୟଦ୍ରଥ ପାଇଁ
ନୋହିଲେ ତୁହି କି ଆଜ ଯାନ୍ତୁ ପ୍ରାଣନେଇ
ଏତେ କହି ଜଗନ୍ନାଥ ବାହୁଣ ତୁରଙ୍ଗ
କେଶର ବ୍ୟୂହ ଭିତରେ ପଶିଲେକ ବେଗ ।
ଦେଖିଲେ ମାନଗୋବିନ୍ଦ ତୁଲେ ସର୍ବ ଭାଇ
ଅଲମ୍ବୁଷ ଅଳାୟୁଧ ଜଗିଛନ୍ତି ତହିଁ ।
ବୀରବାହୁ ସୁବାହୁ ଯେ କଳିଙ୍ଗ ନୃପତି
ଏମାନେ ମଧ୍ୟ ସେଠାରେ ରହିଣ ଅଛନ୍ତି ।
ଶୁକବ୍ରହ୍ମା ଶ୍ରୁବବ୍ରହ୍ମା ବେନ ମହାବଳ
ଦରଦସେନ କାଉଁସଦେଶ ନୃପାଳ ।
କିହ୍ଲୁଡ଼ ନହ୍ଲୁଡ଼ ଦେଶ ଉଡ଼ଙ୍ଗ ଭୂଷଣ୍ଡି
ଅସଂଖ୍ୟ ଯୋଦ୍ଧା ସେଠାରେ ସର୍ବେ ପରଚଣ୍ଡ
ଅଶୀ ମତଭୂତ ଯୋଦ୍ଧା ଦୁର୍ଯ୍ୟୋଧନ କୁଳେ
ସୂଚିବ୍ୟୂହକୁ ଏମାନେ ଜଗି ରହିଥିଲେ ।
ଗୋବିନ୍ଦ ବୋଇଲେ ଆହେ ବୀର ଧନଞ୍ଜୟ
ଦେଖ ପୁଣି ରହିଅଛି ଏଥେ କୁରୁଚୟ ।
ଅନେକ ଦେଶର ରାଜାମାନେ ଛନ୍ତି ରହି
ଜୟଦ୍ରଥ କାହିଁ ଅଛି ସେ ତ ଦିଶୁନାହିଁ ।
ପାର୍ଥ ବୋଇଲେ ଏହା ମୁଁ ଜାଣେ ଦାମୋଦର
ଶକଟ ବ୍ୟୂହ ଭେଦିବା ନୋହିଁ ଦୁସ୍ତର ।
ଏଥିର ଭିତରେ ହେବ ପଦ୍ମବ୍ୟୂହ କଲ
ଶତପାଖୁଡ଼ା ମଧ୍ୟରେ କେଶର ରଚନା ।
କେଶର ଭିତରେ ସୂଚିବ୍ୟୂହ ଏକ ରଚି
ସୂଚି ଅଗ୍ରମଧ୍ୟେ ଜୟଦ୍ରଥ ଅଛି ଲୁଚି ।
ତାହା ଭେଦିବି ନିଶ୍ଚୟ ଜାଣ ଜଗନ୍ନାଥ
ତୁମ୍ଭ ପ୍ରସାଦେ ପାଇବି ମୁହିଁ ଜୟଦ୍ରଥ ।
କୃଷ୍ଣ ବୋଇଲେ ବାହୁଛି ମୁହିଁ ହୟ ବର
ଉତ୍ପ୍ରୋଧ ଗ୍ରଡ଼ଣ ଯୁଦ୍ଧକର ଶସ୍ତ୍ର ଧର ।
ହଜେ କୁ ମରକୁ ଲେଉଡ଼ି ସୋଦର କପାଇଁ
ରିପୁ ବିନାଶନେ କର୍ଣ୍ଣା ଦୟାକରୁ ତୁମ୍ଭ ।

କୃଷ୍ଣଙ୍କ ବଚନ ଶୁଣି କ୍ରୁଦ୍ଧ ଫାଲଗୁନ
ଦ୍ୱନ୍ଦମ ମୂର୍ତ୍ତି ଧରିଣ ଶରହସ୍ତେ ଘେନ ।
ଗାଣ୍ଡୀବ ଧନୁରେ ଯୋଖି ବିନ୍ଧେ ଧନଞ୍ଜୟ
ଝଟକନ୍ତ ସେ ନାରାଚେ ବିଦ୍ୟୁତେଜ ପ୍ରାୟ ।
ଯେଉଁପରି ସର୍ପ ଯାଇ ବିବରେ ପଶଇ
ସେହ୍ନା ଭେଦି ଯୋଦ୍ଧାଙ୍କର ଶରୀରେ ଫୁଟଇ
ସେ ନାରାଚ ଯୁଦ୍ଧେ ବହୁ ଯୋଦ୍ଧାଏ ପଡ଼ିଲେ
ପୁଣି ପୁଣି ଧନଞ୍ଜୟ ଶର ବିନ୍ଧୁଥିଲେ ।
ଦୁର୍ଯ୍ୟୋଧନ ଆଜ୍ଞାହେଲା ସର୍ବ ଯୋଦ୍ଧା ଗଇ
ଏକାକେ ଏହାକୁ ଜିଣି ନ ପାରିବ ତେହ୍ନ ।
ଧର୍ମ ଅଧର୍ମ ବୋଲିଣ କିଛି ନ ବିଚାର
ଏକମୁଖ ହୋଇ ତୁମ୍ଭେ ଏହାକୁ ଶର ମାର ।
ରାଜାଜ୍ଞା ପାଇ ସକଳ ଯୋଦ୍ଧାଏ ବେଢ଼ିଲେ
ଦଶବଂଶ ଶର ଯୋଖି ଏକକେ ବିନ୍ଧିଲେ ।
ମାରଧାର ପ୍ରାୟ ବୃଷ୍ଟି ହୋଇବାରୁ ଶର
ଆକାଶେ ଅଦୃଶ୍ୟ ହେଲେ ଦେବ ଦିନକର
ଅପର୍ଯ୍ୟାପ୍ତ ଶରବୃଷ୍ଟି ଦେଖି ଧନଞ୍ଜୟ
ଛେଦିଲେ ନାରାଚ ଶରେ ସେହି ଅସ୍ତ୍ର ଚୟ ।
ସାତ୍ୟକିର ଯୁଦ୍ଧକଥା କହି ତ ନ ପାରି
ସଂଗ୍ରାମ ଦେଖି ପ୍ରଶଂସା କରନ୍ତି ମୁରାରି ।
ଏକ ଏକ ନାରାଚରେ ସୈନ୍ୟଅଙ୍ଗ ଫୁଟି
ଗଜ ଅଶ୍ୱ ଯୋଦ୍ଧାମାନେ ପଡ଼ନ୍ତି ଯେ ଲୋଟି
ଯେତେ ଯୋଦ୍ଧା ପ୍ରବେଶନ୍ତି ଆସି ତାର ଆଗେ
ରୋମ ରୋମକେ ନାରାଚ ବିନ୍ଧେ ଅତି ବେଗେ
ଯାହା ନାମ ଧରି ସେହି ବିନ୍ଧେ ଶରକୋଟି
ସେଠାରୁ ସେ ନ ଚଳିଣ ପଡ଼େ ମହୀଲୋଟି ।
ବହୁତ ସମର କରେ ସେହି ଏକାକରେ
ଆବର ଅର୍ଜୁନ ଆସି ପଶିଲା ସମରେ ।
ଏମନ୍ତ ସମୟେ ଯାଇ ବୀରବର ଭୀମ
ପଦ୍ମବ୍ୟୂହ ଭେଦନ୍ତେ ସେ ଘେରେ ଅଶ୍ୱତ୍ଥାମା
ଇନ୍ଦ୍ରଙ୍କ ସମାନ ମୂର୍ତ୍ତି ଦିଶେ ଗୁରୁସୁତ
ନବକଣି କୁନ୍ତ ସେହୁ ଧରିଅଛି ହସ୍ତ ।
ଆରେକ ହସ୍ତେ ଗାଣ୍ଡିବ ସମ ଏକ ଧନୁ
ଶଙ୍କସ୍ତର ତୁଣ ପ୍ରାୟ ଦିଶେ ଦ୍ରୋଣସୂନୁ ।
ରୁଦ୍ରଙ୍କ ସମାନ ସେହି ଅଟେ ମହାବଳୀ
ଦ୍ୱିଜାସି ବର ମାଗିଲା ଖଟି ଅଂଶୁମାଳୀ ।

ଅଭେଦ୍ୟ କବଚ ଯାର ଜିଣି ଇନ୍ଦ୍ର ସେନା
ଦେବତାଙ୍କୁ ଯୁଦ୍ଧେ ସେହୁ ନ କରେ ଗଣନା
ଗୁଣରଙ୍ଗ ମଧ୍ୟରେ ସେ ଅଟଇ ଅଜେୟ
ତେଣୁ ତାକୁ ମୁକୁଟ ନ ବାନ୍ଧେ କୁରୁରାୟ ।
ଭୀମସେନ ଡାକେ ଦୃଷ୍ଟି ଅଶ୍ୱତ୍ଥାମା ମୁଖ
ଅଶ୍ୱତ୍ଥାମା ବୋଲେ ଭୀମ ହୋଇଲୁ ନରେଖ ।
ଦୁଃଶା ଦୁର୍ଯ୍ୟୋଧନ ପରି ମୋତେ ତୁ ନ ଯୁଝି
ଭାରତ ସମରେ ଏକା ହୋଇ ତୁ ନ ଯୁଝି ।
ଅଶ୍ୱତ୍ଥମା ବାକ୍ୟ ହେଳ କମ୍ପାଇଣ ଭୀମ
ଓଷ୍ଠ ଭିଡ଼ି କୋପେ ଗୃହେଁ ହୋଇ ଚମ ଚମ ।
କାଳଦଣ୍ଡ ସମ ଗଦା ଘେନି ବେନିହସ୍ତେ
ଧାଇଁଣ ପିଟିଲା ଭୀମ ଅଶ୍ୱତ୍ଥାମା ରଥେ ।
ପର୍ବତ ନ ସହେ ଯେଉଁ ଗଦାକର ଘାତ
ଏକା ପ୍ରହାରେ ଭାଜିଲା ଅଶ୍ୱତ୍ଥାମା ରଥ ।
ସେହିକ୍ଷଣି ଅନ୍ୟ ରଥ ଆରୋହିଣ ଦ୍ରୋଣି
ଭୀମସେନ ସାକ୍ଷାତରେ ରଥ କଲା ଆଣି ।
ଦେଖି ବୃକୋଦର ଉଠେ ରାଗେ ଶିର ଧୁଣି
କାଳଦଣ୍ଡ ପ୍ରହାରିଲା ଦ୍ରୋଣୀ ରଥେ ପୁଣି ।
ମହାବଳିଷ୍ଠ ପାଣ୍ଡବ ବୀରବର ଖଣ୍ଡା
ଅଶ୍ୱତ୍ଥାମା ରଥ ଘୋଟି କରିଦେଲା ଗୁଣ୍ଡା ।
ପୁନରପି ଗଦାବର ବୁଲାଇ ପିଟିଲା
ଭୀମ ମହାଅଙ୍ଗେ ପଡ଼ି ଗୁଣ୍ଡା ହୋଇଗଲା ।
ତହୁଁ ଗଜେକ ଆରୋହି ଅଶ୍ୱତ୍ଥାମା ରଥୀ
ରାଗେ ଭୀମକୁ ମାଇଲା ଅମୋଘ ଶକତ ।
ସହସ୍ର କିରଣ ସମ ସେ ଅସ୍ତ୍ରର ତେଜ
ତାରଘାଏ ମୋହଗଲା ପବନ ଆତ୍ମଜ ।
ଶକତର ଘାୟେ ଭୀମ ମହୀରେ ଲୋଟନ୍ତି
ଗଜୁ ଅଶ୍ୱତ୍ଥାମା ଓହ୍ଲାଇଣ ସାମ୍ନୋଡ଼ନ୍ତି ।
ଅପାର ପ୍ରତିଜ୍ଞା କରୁଥିଲୁ ଆରେ ଭୀମ
କଣ୍ଠିତ ଯୁଦ୍ଧେ ହୋଇଲୁ କପାଁ ଅସାକ୍ଷମ ।
ଖଡ଼ଗକୁ ବୁଲାଇଣ ଅଶ୍ୱତ୍ଥାମା ଗର୍ଜି
ମୋହ ତେଜି ଭୀମସେନ ଉଠେ ଘନଗାଜି ।
ଯେସନେକ ଗିରିବର ପଡ଼ିଣ ଉଠନ୍ତି
ଉଠିଣ ଅଶ୍ୱତ୍ଥାମାକୁ ଘୋଟିଲା ମାରୁତି ।
ଧାଇଁ ତହୁଁ ଅଶ୍ୱତ୍ଥାମା ବୁଲାଇଣ ଖଣ୍ଡା
ଭୀମ ଅଙ୍ଗେ ପଡ଼ି ହୋଇଗଲା ମସିଗୁଣ୍ଡା ।

ପୁଣି ଗୁରୁତନୁ ବୁଲାଇ ଭୀମକୁ ପିଟିଲା
ଭୀମ ବାମ ଅଙ୍ଗେ ପଡ଼ି ତାହା ଗୁଣ୍ଡା ହେଲା ।
ନବକଣ୍ଟି କୁନ୍ତ ବୁଲାଇଣ ବୀର ଦ୍ରୋଣି
ଭୀମସେନ ଅଙ୍ଗେ ତାହା ପ୍ରହାରିଲା ଆଣି ।
କୁନ୍ତ ପ୍ରହାରନ୍ତେ ତାହା ସହିଣ ମାରୁତି
ହସିଣ ଅଶ୍ୱତ୍ଥାମାକୁ ବଚନ ବୋଲନ୍ତି ।
ଏତେବେଳେ ମୋର ଗଦାଘାତ ସହ ଦ୍ରୋଣି
ତେବେ ଜାଣିବା କପଟୀ ଅଟୁ ବୀରମଣି ।
ଗୁରୁପୁତ୍ର ବୋଲି ତୋର ଅପାର ସହିଲି
ଜ୍ୟେଷ୍ଠଭ୍ରାତା ବୋଲି ଜାଣି ହେଳା ଯୁଦ୍ଧ କଲି
ସମ୍ଭାଳ ଏଥର ତୁମ୍ଭେ ବୋଲି ସେ ଗଦାକୁ
ଧାଡ଼କାରେ ପିଟେ ନେଇ ସେ ଅଶ୍ୱତ୍ଥାମାକୁ ।
ଉତପାତ କାଳେ ଯେସନ୍ତେ ନିର୍ଘାତ ପଡ଼ଇ
ଭୀମସେନ ଗଦାଘାତେ ଦ୍ରୋଣି ମୋହଯାଇ ।
ତହୁଁ ଭୀମ ବୋଲେ ସୁଖେ ଶୋଇଥାଅ ଭାଇ
ତୁମ୍ଭେ ତ ଗୁରୁଙ୍କ ପୁତ୍ର କିସ କହିବଇଁ ।
ପରାସ୍ତମେ ଅଶ୍ୱତ୍ଥାମା ମୋହେ ଅଛି ପଡ଼ି
ଚକ୍ରବ୍ୟୂହ ପାଶେ ଭୀମ ଗଲେ ଜୟ ରଡ଼ି ।
ବହୁରଥ ଗଜ ଅଶ୍ୱ ସଇନ୍ୟ ପଡ଼ନ୍ତି
ଅସଂଖ୍ୟ ଦଳ ଭେଦିଣ ଭୀମସେନ ଯାନ୍ତି ।
ଶକଟ ବ୍ୟୂହ ଭେଦନ ଭୀମ ନ ଜାଣଇ
ଅର୍ଜୁନ ଗଲା ପଥକୁ ନିରେଖି ଗମଇ ।
ରଥ ଗଜ ଅଶ୍ୱ ବହୁ ପଡ଼ିଣ ଅଛଇ
ଯେ ଅବା ଜୀଇଁଛି ଭୟେ ପଡ଼ିଅଛି ତହିଁ ।
ଭୀମ ବଳେ କରିଛି କି କାଳଦଣ୍ଡ ସେନ
ଭୀମ ଭୀମରଡ଼ି ଘାତେ କମ୍ପଇ ମେଦନ ।
ଯଦ୍ୟପି ତହିଁ ଅଛନ୍ତି ମହା ମହା ରଥୀ
ଭୀମସେନ ସଙ୍ଗେ ଯୁଦ୍ଧ କରି ନ ପାରନ୍ତି ।
ପଳାନ୍ତି ସୈନ୍ୟ ନିର୍ଭୟ ରୂପ ତାଙ୍କ ଦେଖି
ରଥ ଗଜ ଅଶ୍ୱଆଦି ସମସ୍ତ ଉପେକ୍ଷି ।
ପୁନଶ୍ଚ ଗଦା ବୁଲାଇ ଚଉକତି କ୍ଷେପି
ଏକଇ ପାଣ୍ଡବ ଭଉରବ ବଳ ବ୍ୟାପି ।
ପଳାନ୍ତି ସଇନ୍ୟମାନେ ହୋଇ ନିରମାଖୀ
ସୈନ୍ୟ ଭଜିବାର ଦେଖି କର୍ଣ୍ଣବୀର ଦେଖି ।
ଅର୍ଜୁନ ଅପରାଜୟେ ହାରି ଯାଉଥିଲା
ଭୀମସେନଙ୍କୁ ଦେଖିଣ ପଥ ନିରୋଧିଲା ।

ନାରାଚ ଗୁଣେ ବସାଇ ଭୀମକୁ ଆକର୍ଷି
ଲୁହାର ପଞ୍ଚ ନାରାଚ ଯହୁଁ ଦେଲା ପେଷି ।
ଆସନ୍ତେଣ ଭୀମସେନ ପାତି ବାମଅଙ୍ଗ
ଲୁହାର ଶର ପଡ଼ିଣ ମୁନ ହେଲା ଭଙ୍ଗ ।
ପୁଣି ତୂଣୀରୁ କାଢ଼ିଣ ତୀକ୍ଷ୍ଣ ତୀକ୍ଷ୍ଣ ବାଣ
ଭୀମକୁ ସନ୍ଧାନ କରି ବିନ୍ଧେ ବୀରକର୍ଣ୍ଣ ।
ଅସଂଖ୍ୟ ଶର ଆସିବା ଦେଖିଣ ମାରୁତି
ତୀକ୍ଷ୍ଣ ନାରାଚ ମାରି ସେ ଛେଦେ ତତ୍କ୍ଷଣାତ
ରଣେ ମହାମଲ୍ଲ ସେହି ସମରେ ନ ହଟି
ଆର୍ଦ୍ର ।ବଳ ଶର ସେକ ଭୀମ ରଥେ ପିଟି ।
ଭୀମସେନ ପ୍ରହାରିଲା କାଳବର ଗଦା
ସେ ଆଘାତେ କର୍ଣ୍ଣ ରଥ ଭାଙ୍ଗି ହେଲା ପଦା
ପୁଣି ଆରେକ ନାରାଚ ପୁରାଇଣ କର୍ଣ୍ଣ
ଭୀମସେନ ଉପରକୁ ବିନ୍ଧିଲେ ବହନ ।
ପାଦଗତି କରି ଭୀମ ମହାବେଗେ ଉଠି
ପୁନଶ୍ଚ କର୍ଣ୍ଣ ରଥରେ ଗଦାବର ପିଟି ।
ଗଦା ପଡ଼ନ୍ତେ କର୍ଣ୍ଣର ରଥ ହେଲା ଚୂନା
ରଣେ ବିହରେ ପାଣ୍ଡବ ବୀରବର ହେନା ।
ପୁଣି ଆରୋହଣ କରି କର୍ଣ୍ଣ ଏକରଥ
ଭୀମସେନର ଉପରେ ହୋଇ କୋପଚିତ୍ତ ।
ସ୍ୱର୍ଣ୍ଣମୁନା ଅସ୍ତ୍ର କାଢ଼ି ବିନ୍ଧିଲା ସେ ପାଞ୍ଚ
ଭୀମ ଅଙ୍ଗେ ପଡ଼ିଲେ ସେ ନାରାଚ ପ୍ରପଞ୍ଚ ।
ସେମେ ସେମେ ଶର ଭୀମ ଦେହେ ଗଲା ଗଳି
ବେଗେ ଗରଜି ଉଠିଲା ଭୀମ ମହାବଳୀ ।
ବୁଲାଇଣ ଗଦାବର ପିଟେ ବୀରଖଣ୍ଡା
କର୍ଣ୍ଣର ରଥ ଭାଜିଣ ହେଲା ମସିଗୁଣ୍ଡା ।
ଶୁଣ ଆହେ ଚଇତନ କର୍ଣ୍ଣ ଯଦିପଣ
ଆରେକ ରଥରେ ସେହି ଆରୋହି ତତ୍କ୍ଷଣ ।
ପୁଣି କ୍ଷୁର୍ପ ନାରାଚ ସେ ବିନ୍ଧିଲେ ଯେ ଧରି
ପଡ଼ିଲା ଭୀମ ଉପରେ ଗରଜନ କରି ।
ବେନସୋଦର ସେ ଦୁହେଁ ଅଟନ୍ତି ଅଭେଦ
ଯଦି ବୁଝି ରଖିବାରେ କପଟେ ଯୁଦ୍ଧ ।
ଦୁହିଙ୍କର ସମର ସେ ଅଟେ ଅକଳନା
ଦୁହେଁ ମହାମଲ୍ଲ କେହି ନୁହନ୍ତି ଯେ ଊଣା ।
ଧାମଇ ସେ ବୃକୋଦର କୋପେ ଗଳପାଜ
ଗଦାବର ଘାତେ ଗଲା କର୍ଣ୍ଣ ରଥ ଭାଜ ।

ରଣେ ଅପମାନ ପାଇ ଗନ୍ଧାରୀ ନନ୍ଦନ
ପାଦଗଣ୍ଡରେ ଧାଇଁଲା ଧରି ଧନୁର୍ବାଣ ।
ବାମକରେ କମାଣ ସେ ଧରି କୋପେ ଉଠି
ଭୀମସେନ ଉପରକୁ କଲା ଶରବୃଷ୍ଟି ।
ଭୀମ ଉପରେ ପଡ଼ିଲା ତୀକ୍ଷ୍ଣମୁନା ଶର
ପ୍ରତି ରୋମକୁ ରୁଧିର ବହିଲା ପ୍ରଖର ।
ଶରଘାତେ ବୃକୋଦର ହେଲା ଅସାସ୍ଥମ
ତାହା ଦେଖି କର୍ଣ୍ଣବୀର ଧାଏଁ ଚମ ଚମ ।
ତର୍ଜ୍ଜନ ଗର୍ଜ୍ଜନ କରେ କ୍ଷତ୍ରୀ ମହାମଲ୍ଲ
ବାମକରେ ଧଇଲା ସେ ବୃକୋଦର ବାଳ ।
ଡାହାଣ କରେ କୃପାଣ ଧରି ବୋଲେ କର୍ଣ୍ଣ
ରେ ରେ ପାଣ୍ଡବ ଆଜ ମୁଁ ନେବଇ ତୋ ପ୍ରାଣ
ଏ କୌରବ ସିନ୍ଧୁ ବୋଲି ନ ଜାଣୁ କି ଭୀମା
ଏ ସୈନ୍ୟ ସାଗରେ ପଶି ଦେଖାଉ ଗାରିମା
ପଶ୍ଚିମ ଦ୍ୱାରର ରାଜା ପରାକ୍ରମେ ତୁ ବୁଝୁ
ସେହି ସାହସରେ ଆସି ଏକା ହୋଇ ଯୁଝୁ
ବ୍ୟୂହ ଭେଦ ନ ଜାଣି ତୁ ପଶିଲୁ ମରିବୁ
ପାଣ୍ଡବ ଶିଶୁ ସମ୍ଭବ ବୁଡ଼ିବରେ ବାବୁ ।
ହରି ବ୍ରହ୍ମା ବିଷ୍ଣୁ ଆଜ କେ ରଖିବ ରଖୁ
ତୋ ପ୍ରାଣ ନେବଇ ମୋର ପ୍ରତିଜ୍ଞା ସେ ଦେଖୁ
ଶମନ ହାତେ ପଡ଼ିଲୁ ଆଜ ତୋର କାଳ
ଫେରିଣ ଯିବୁ କି ଆଉ ତୋର ନିଜ ଆଳ ।
ପ୍ରତିଜ୍ଞା କରଇ କର୍ଣ୍ଣ ଭୀମ ବାଳ ଧରି
ଡାହାଣ କରେ ଖଡ଼ଗ ଧକ୍ଷଣ ଉଦ୍ଧରି ।
ହସନ୍ତେ ହସେ ରାଇମଲ୍ଲି ବୋଲଇରେ ଭୀମ
ମୋହର ଆଗରେ ଆଜ ସରିଲା ଗାରିମା
ରେ ଭୀମ ଗର୍ଜ୍ଜନ କରୁଥିବା ମତ୍ତହସ୍ତୀ
କେଶରୀ ଦେଖିଲେ ତାର ହୁଏ କେଉଁ ଗତି
ଅନେକ ଆରମ୍ଭ କରୁଥାଇ ଯେ ଶୃଗାଳ
ବ୍ୟାଘ୍ରକୁ ଦେଖିଲେ ତାର କିସ ଆଉ ବଳ ।
ମହା ଗର୍ଜ୍ଜନ ଇନ୍ଦୁର କରଇ ବିବରେ
ଭଗ୍ନ ହୋଇ ପାରଇ କି ମଞ୍ଜାରୀ ସମ୍ମୁଖରେ ।
ଫଣା ଟେକି ଗରଜନ କରୁଥାଏ ନାଗ
ରହିଣ ପାରଇ କି ସେ ବୈନତେୟ ଆଗ ।
ନ ଜାଣି ଅଇଲୁ ଯେବେ ପ୍ରାଣ ହରାଇଲୁ
ସଦାଧର୍ମ ପାଳି ଏବେ ଅଧର୍ମରେ ଗଲୁ ।

ଅଭିମନ୍ୟୁ ବଧକଲୁ ବୀର ଦୁଃଶାସନ
ଜୟଦ୍ରଥେ ବାଧା ଦେଇ ସେ କଲୁ ନିଧନ ।
ସଦା ମିଥ୍ୟା କଥା କହୁ କରନ୍ତି ଯେ ପ୍ରାଣୀ
ମନୁଷ୍ୟଙ୍କୁ ଭଣ୍ଡିଲେ କି ଧର୍ମ ହୁଏ ଜାଣି ।
ସତ୍ୟବନ୍ତଙ୍କୁ ଦେଖାଇ ଦେଲୁ ଅସଦ୍‌ବାଟ
ସେହି ଦୋଷେ ଆରେ ଭୀମା ହେଲୁ ମୁଣ୍ଡକାଟ
କହୁ କହୁ କୋପେ କର୍ଣ୍ଣ ହୋଇଣ ଅନଳ
ବୋଇଲାରେ ଭୀମା ଆଜି ପୂରିଲା ତୋ କାଳ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ତିନି ଭୁବନରେ
ଯେତେ ଛନ୍ତି ଦେବ ଆଉ ନାଗଲୋକ ନରେ ।
ଏ ସଙ୍କଟେ ରାଜା ମାନତକ୍ଷବର୍ତ୍ତୀ
କୌରବ ମାନୋଦ୍ଧାରଣ ମୂର୍ତ୍ତି କର୍ଣ୍ଣ ରଥୀ ।
ସୁମରରେ ଭୀମା ତୋର ଯେ ଇଷ୍ଟ ଦେବତା
ସୁମରରେ ଭୀମା ତୋର ଯେତେ ପିତାମାତା ।
କର୍ଣ୍ଣର ଏହି ନିଷ୍ଠୁର ବଚନକୁ ଶୁଣି
ସୁମରଣା କଲେ ଭୀମ କୁନ୍ତୀ ମହାରାଣୀ ।
କୁନ୍ତୀ କୁନ୍ତୀ କହନ୍ତେଣ ପବନ ଦୁଲାଳ
ଭୀମ କେଶ ଛାଡ଼ିଦେଲା କର୍ଣ୍ଣ ମହାବଳ ।
ଯାହା ସତ୍ୟ କରାଇଛି ମାତା ମୋତେ ପୂର୍ବେ
ତା କଥା ଲଙ୍ଘନ ମୁହିଁ ନ କରିବି ଏବେ ।
ଜୀବନ ଥାଉଁ ଥାଉଁ ଏହା ଲଙ୍ଘିବି କେମନ୍ତ
କୃଷ୍ଣ ପାର୍ଥ ଆଗେ ଯାଇ କହ ଏ ବୃତ୍ତାନ୍ତ ।
ଆଉ କେବେ ନ ପଶିବୁ ଏ ଘୋର ସମରେ
ପଶିଲେ ବର୍ତ୍ତି ନ ଯିବୁ ଜାଣିଥା ମନରେ ।
କେଶ ଛାଡ଼ନ୍ତେ ସାସ୍ଥାମ ବୀର ବୃକୋଦର
ବେନିକରେ ଧଇଲା ସେ ଗଦା କାଳବର
ଶତସିଂହ ସୁମରିଣ ଭୀମ ଗଜଗାଜ
କର୍ଣ୍ଣର ମୁଖକୁ ଚାହିଁ କହଇ ଗରଜି ।
ପିତାସମ ମାନ ତୋତେ କରନ୍ତି ଉପ୍ରୋଧ
ତେଣୁ କି ଜିଣିଲୁ ମୋର ସଙ୍ଗେ କରି ଯୁଦ୍ଧ ।
ପାଞ୍ଚଥର ମୁହିଁ ରଥ ଭାଙ୍ଗିଲି ତୋହର
ପ୍ରାଣ ନ ନେଇଲି ଯେଣୁ ତୁ ମୋର ସୋଦର
କୁନ୍ତୀ ଜ୍ୟେଷ୍ଠପୁତ୍ର ବୋଲି ପାଳିଲି ମୁଁ ଧର୍ମ
ମାତା ନୋଧେ ଉର ବଳି ହେଲାର ସଙ୍ଗ୍ରାମ ।
ଯେବେ କି ରଣରଙ୍ଗରେ ମୋ ସମ୍ମୁଖରେ ମିଳ
ଜାଣିବା ତୋ କ୍ଷତ୍ରବୃତ୍ତି କେତେ ତୋର ବଳ

କର୍ଣ୍ଣ ବୋଲେ ଉପେକ୍ଷିଲି ଯାହାକୁ ମୁଁ ରଣେ
ତାକୁ କପାଇଁ ବଧିବ ଅଶାସ୍ତ୍ର ବିଧାନେ ।
କୋପରେ ଗର୍ଜି କହଇ ପବନତନୟ
ରହଗିଣ୍ଡ ସମ ତାର ଦେଖାଯାଏ କାୟ ।
କାଳାନ୍ତକ ରୂପ ଭୀମସେନର ଯେ ଦେଖି
ରଣେ ପଳାଇଲେ କର୍ଣ୍ଣ ସମର ଉପେକ୍ଷି ।
ସମସ୍ତ ଯୋଦ୍ଧାଏ ପଳାଇଲେ ରଣତେଜି
ଭିତରେ ପଶିଲା ବୃକୋଦର ଚଳଗାଜ ।
କର୍ଣ୍ଣ ସଙ୍ଗରେ ଅନେକ ଯୋଦ୍ଧାଙ୍କୁ ସଂହାରି
ଭୟେ ଯୋଦ୍ଧାମାନେ ତହୁଁ ଗଲେ ଅପସରି ।
ଭୀମ ରଣରେ ପଡ଼ିଲେ ବହୁତ ଯେ ଥାଟ
ଏକା ପାଣ୍ଡବ ଯେ କୁରୁସୈନ୍ୟ କଲା ନଷ୍ଟ ।
କେଶର ବ୍ୟୂହେ ମାଇଲା ଅନେକ ସଇନ
ଶୂନ୍ୟେ ଯାଇ ଭେଟିଲା ଯେ କୃଷ୍ଣ ଫାଲଗୁନ ।
ଗୋବିନ୍ଦ ବୋଇଲେ ଭୁ ହୋ ଶୁଣ ଧନଞ୍ଜୟ
ଭୀମ ଏଠିକ କରିଲାଣି ସବୁ ସୈନ୍ୟକ୍ଷୟ ।
ଶୁଣିଣ ଅତି ଆଶ୍ଚର୍ଯ୍ୟ ହୋଇଲା କିରୀଟୀ
ବୃକୋଦର ମୂର୍ତ୍ତି ଅଛି ଭୀମର ପ୍ରକଟି ।
ରଥେ ଥାଇ ନମସ୍କାର କରିଣ ବୋଲଇ
ଯୁଧିଷ୍ଠିରଙ୍କୁ କପାଁ ଛାଡ଼ି ଅଇଲ ଗୋସାଇଁ ।
ଭୀମସେନ ବୋଇଲା ରେ ଶୁଣ ଫାଲଗୁନ
ଯୁଧିଷ୍ଠି ବିକଳ ହେଲ ଅବସାନ ଘେନ ।
ପ୍ରତ୍ୟେକ ହେଳଆଉଁ ପଠାଇଲେ ମୋତେ
ତୁମ୍ଭର କୁଶଳବାର୍ତ୍ତା ନେବାର ନିମନ୍ତେ ।
ଭୀମାର୍ଜୁନ ସାତ୍ୟକି ଏ ତିନି ମହାବୀର
ବ୍ରହ୍ମା ରୁଦ୍ର ଇନ୍ଦ୍ର ଏଠିକ କଳିକି ପ୍ରକାର ।
ରଣରଙ୍ଗେ ପଶିଛନ୍ତି କବା ଦିଗପାଳେ
କେ ଆନ ଜିଣିବ ତାଙ୍କୁ ସମରର ତୋଳେ ।
ଗୋବିନ୍ଦ ବୋଇଲେ ଆହେ ଶୁଣ ବୃକୋଦର
ଶକଟ ଭେଦିଣ ପଦ୍ମବ୍ୟୂହର ଭିତର
କେଶର ବ୍ୟୂହ ଭିତରେ ସୂଚିବ୍ୟୂହ ରଚି
ସେ ବ୍ୟୂହ ମଧ୍ୟରେ ଜୟଦ୍ରଥ ଲୁଚିଅଛି ।
ଅସଂଖ୍ୟ ଅଗୋଚର ଏ ଦୁର୍ଲ୍ଲଭ ଚରିତ
ଏ ବ୍ୟୂହ ଭେଦନେ ଏକା ତୁମ୍ଭ ସାମରଥ ।
ଭୀମ ବୋଲେ ତୁମ୍ଭେ ଦେବ ପ୍ରଳୟାନ୍ତ କର
ତୋତେ କେଉଁ କଥା ଦେବ ଅଛି ଅଗୋଚର
ସୃଷ୍ଟି ସ୍ଥିତି ଯେ ପ୍ରଳୟ ରଚନା ତୋହର
ଆଦି ମଧ୍ୟ ଅନ୍ତ ତୁମ୍ଭ ଜାଣୁ ଦେବେଶ୍ୱର ।
ଏକା ତୁ ସକଳ ଜନ୍ତୁ ତୋ ତହୁଁ କେ ନାହିଁ
ଜଳ ସ୍ଥଳ ପାତାଳରେ ଦେଖିବାକୁ କାହିଁ ।
ଏ ସଂସାର ଅଟଇ ଯେ ମହା ଜଳ ସିନ୍ଧୁ
ଏଥୁ ତାରିବାକୁ ଦେବ ତୁମ୍ଭ ଆନ୍ତ ବନ୍ଧୁ ।
ବ୍ରହ୍ମା କ୍ଷତ୍ରୀ ବୈଶ୍ୟ ଶୂଦ୍ର ଜ ତ ଆଦିକରି
ଦୁଃସହ ସଙ୍କଟୁ ତାରିବାକୁ ଯେ କାଣ୍ଡାରି ।
ମନ ବଚନ କର୍ମରେ ଭାବିଲି ମୁଁ ଯାହା
ପ୍ରଳୟାନ୍ତକ ଶ୍ରୀକୃଷ୍ଣ ମୋତେ ଦୃଷ୍ଟ ସାହା ।
ସମୟେ ସମୟେ ହୃଦଗତେ ଦୁଃଖୀପାଇଁ
ମହୀଭର ଧ୍ୱଂସ ରାମକୃଷ୍ଣ ବେନିଭାଇ ।
ସମସ୍ତଙ୍କୁ ଦିଅ ଧର୍ମ ଅର୍ଥ କାମ ମୋକ୍ଷ
କାଳଦଣ୍ଡ ନାଶକରୁ ତୁମ୍ଭ ଯେ ପ୍ରତ୍ୟକ୍ଷ ।
ଜ୍ଞାନେ ଅଜ୍ଞାନେ ବଚନେ କର୍ମେ ଯେ ଥରେ
ହୃଦଗତେ ଭାବଇ ମୁଁ ଏକା ଜଗନ୍ନାଥେ ।
ରାଗ ମୋହ ଅହଙ୍କାର ହିଂସା ଅପବାଦୁ
ଏଥିରୁ ତରିବି ନାଥ ତୋହର ପ୍ରସାଦୁ ।
ନୃତ୍ୟ ଗୀତେ କିଏ ତୋର ରଞ୍ଜିପାରେ ମନ
ହୃଦଗତେ ଧରିଛି ତୋ ଶଙ୍ଖ ଚକ୍ର ଚିହ୍ନ ।
ମହାଭାରତ ଚରିତ ଇନ୍ଦୁଦ୍ୱିଷ୍ଟ ମଧ୍ୟେ
ମୂର୍ତ୍ତି ପ୍ରକାଶ କରିଲି ଏ ଭାରତ ଯୁଦ୍ଧେ ।
ବ୍ରଜସାର ବଲ୍ଲଭ ଯେ କଷ୍ଟା ଜଗଜ୍ଜେଠି
ଶୁଭ୍ରମୁନ୍ନ ଶାରଳା ଯେ ମହୀପାଦେ ଲେଟି ।
ଜୟ ମାତ ସରସ୍ୱତୀ ବୀଣାଜଣା ବାଣୀ
ଜୟମାତ ସରସ୍ୱତୀ ବସ୍ତୁର ଭରଣୀ ।
ତୋହର ବୀଣା ଶୁଣିଣ ବସ୍ତୁ ମୋହ ହୋଇ
ସବୁବେଳେ ତୋତେ ପାଶେ ରଖିଥାନ୍ତି ସେହି
ଏହାକୁ ଯେ ପଢ଼େ ଶୁଣେ ଧାର୍ମିକ ସେ ଜନ
ଅଇଶ୍ୱର୍ଯ୍ୟ ପୁତ୍ର ପୁଣି କଲ୍ୟାଣବର୍ଦ୍ଧନ ।
ସକଳ ଦୋଷ ମେ ହର ନ ଘେନିବ ଚିତ୍ତେ
ବ୍ୟସ୍ତ ହୋଇବ ମାନସ ଗହନ ଲେଖନ୍ତେ ।
ତେଣୁକରି ଲେଖିଲି ମୁଁ ଠିକ ଠିକ କରି
ସିଦ୍ଧ ଶାରଳା ପ୍ରସାଦେ ଭାରତ ବିସ୍ତରି ।
ବହ୍ମାରିଣ କହିବାକୁ କିସ ମୋ ଶକତି
ମୂର୍ଖ ହୋଇ ରଚୁଅଛି ଘେନ ପୁତ୍ର ଗୌରୀ ।

ଯାହା ଇଚ୍ଛେ ଦେଉଛନ୍ତି ଅନ୍ନପୂର୍ଣ୍ଣା ମାତ
ହେ ବୁଧଜନେ ମୁଁ ମୂର୍ଖ ପୁଣି ଅପଣ୍ଡିତ ।
ବୃଷ୍ଣାନବାସୀ ଅଟଇ ମୂର୍ଖବଂଶେ ଜାତ
ଜ୍ଞାନୀଜନଙ୍କ ସଙ୍ଗରେ ନାହିଁ ମୋ ସଙ୍ଗତ ।
ଗ୍ରାମର ପାଠଶାଳାରେ ପଢ଼ିନାହିଁ ଭଲେ
ନକଟେ ଶାସନେ ନାହିଁ ପୌରାଣିକ କୁଳେ ।
ଝଙ୍କଡ଼ ନବାସୀ ଚଣ୍ଡୀ ଶ୍ରୀ ସାରଳା ସେବ
ତାହାଙ୍କୁ ପ୍ରସନ୍ନେ ମୁହିଁ ବୋଲଉଛୁ କବ ।
କରିନାହିଁ ବହୁସେବା ତାହାଙ୍କୁ ପାଦରେ
ଅଦଭୁତେ ଆଜ୍ଞାହେଲା ମୋତେ ସ୍ୱପନରେ ।
ମୋହର ହୃଦ ମଧ୍ୟରେ ବସି ମହାମାୟୀ
ସକଳ ପୁରାଣମାନ ଦେଉଛନ୍ତି କହି ।
ବିଷ୍ଣୁ ପୁରାଣ ମାର୍କଣ୍ଡ ପୁରାଣାଦ କରି
ସବୁ ପୁରାଣେ କହିଲେ ସେ ମା ଶାକମ୍ବରୀ ।
ତାଙ୍କର ଆଜ୍ଞାରେ ମୁହିଁ ସମସ୍ତ ଲେଖିଲି
ଏତେ ପୁରାଣକୁ ମୁହିଁ ପ୍ରକାଶ କରିଲି ।
ଶ୍ରୀଚଣ୍ଡୀ ଶାରଳାଙ୍କର ଭୃତ୍ୟର ମୁଁ ଭୃତ୍ୟ
ଶାରଳା ଦାସ କହଇ ଭାରତ ଚରିତ ।

---

## ଜୟଦ୍ରଥ ବଧ

ପୁଣି ରାଜା ଅଗସ୍ତ୍ୟଙ୍କ ପାଦତଳେ ପଡ଼ି
ପୁଛାକଲେ ଶୁଦ୍ଧହୋଇ ବେନକର ଯୋଡ଼ି ।
କହ ମୁନି ତେଣେ ପାର୍ଥ କଲେ କେଉଁ କୃତ୍ୟ
ଏହା ଶୁଣିଲେ ମୋହର ତୋଷ ହେବ ଚିତ୍ତ ।
କହିଲେ ଅଗସ୍ତି ମୁନି ଶୁଣ ହେ ରାଜନ
କେଶର ବ୍ୟୂହେ ପ୍ରବେଶ ବାସବ ନନ୍ଦନ ।
ସେ କେଶରବ୍ୟୂହେ ଯେତେ ରାଜାମାନେ ଥିଲେ
ନାନା ଅସ୍ତ୍ର ବନ୍ଧ ପାର୍ଥ ପଥ ନିରୋଧିଲେ ।
କେରଳ ଦେଶର ରାଜା କାଶୀ କଉଶିକ
ମହୋଦର ଭୂପାଳ ଯେ ମରୁ ବର୍ତ୍ତିନକ ।
ବରଦସେନ ମଦନସେନ ବିରୂପାକ୍ଷ
ଭଇରବ ଦେଶରେ ସେ ରାଜା ଜୃଦ୍ରପକ୍ଷ ।
ବଜ୍ରଗିରି ନରରାଜ କଣଯ୍ୟ ଭୂମନ୍ତ
ଅରବିନ୍ଦ ମହ୍ଲାର ସେ ଭୂତଦେଶ ମନ୍ତୁ ।
ଭୂବ ଜ କନାଉଜ ଉତ୍କଦେଶ ଦଣ୍ଡଧର
ଜନ ତିହୁତ ଆଦିର ମନ୍ଦ ଅନୁସାର ।
ଏତେ ଦେଶ ରାଜା ବେନ ମାନଚକ୍ରବର୍ତ୍ତୀ
ବାଲ୍ମୀକ ହୋମଦତ୍ତ କଳିଙ୍ଗ ନୃପତି ।
ଏହାଙ୍କର କୁଳେ ଛନ୍ତି ମର୍ଦ୍ଦ ତେଜ ବୀର
ଗଜେନ୍ଦ୍ର ରଥ ଆଦର ଅଶ୍ୱ ନିସାଗର ।
ବତିଶ କ୍ଷଉଣୀ ସୈନ୍ୟ ଏହାଙ୍କର ମୂଳେ
ଅର୍ଜ୍ଜୁନଙ୍କୁ ସ୍ୱରଆଡ଼େ ବେଢ଼ିଲେ ସକଳେ ।
ଅଳମ୍ବୁଷ ଅଳାୟୁଧ ଦୁର୍ଦ୍ଧର୍ଷ ଦୁର୍ମନ
ଦୁର୍ବିନ୍ଦ ଯେ ଦୁରନ୍ତକ ଦୁର୍ବାଳ ଦୁକର୍ଣ୍ଣ ।
ଏତେକ ଭାଇଙ୍କୁ ବେନ ରାଜା ଧାର୍ତ୍ତରାଷ୍ଟ୍ର
ସୈନ୍ୟ କୁଳେ ଆବୋରିଛୁ ସେହି ବ୍ୟୂହଗୋଷ୍ଠି
ପଞ୍ଚଦଶ ଗଡ଼ବେଳ ହୋଇଲାଣି ଚହିଁ
ଜୟଦ୍ରଥ ଚକ୍ରବର୍ତ୍ତୀ ନ ଦିଶଇ ତାହିଁ ।
ଅଗମ୍ୟ ଗହନ ଥାଟ କିଏ ପାରୁ କଳି
ଯୋଜନେ ବିସ୍ତାର ପଦ୍ମ କେଶରର ସ୍ଥଳୀ ।
ବ୍ୟୂହ ପ୍ରମାଣ କହିବି ବୁଝ ଆହେ ରାଜ
କହନ୍ତେ ଅନ୍ତ ନୁହଇ ସେ ଭାରତ ଯୁଦ୍ଧ ।
ସଂକ୍ଷେପେ ସବୁ କହଇ ତୋହର ଅଗ୍ରତେ
ରାଜାଏ ଶର ବର୍ଷିଲେ ଅର୍ଜ୍ଜୁନ ସାକ୍ଷାତେ ।
ଅନେକଶତ ଭାଇ ସଙ୍ଗେ ବେନ କୁରୁପତି
ଅର୍ଜ୍ଜୁନର ଆଗେ ଆସି ମିଳିଲେ ଝଟତି ।
ନବସସ୍ର ରଥୀ ଏକସସ୍ର ରାଜା କୁଳେ
ଅଶୀଲକ୍ଷ ଯୋଦ୍ଧା ଭୀମସେନଙ୍କୁ ବେଢ଼ିଲେ ।
ଦୁଇସସ୍ର ରଥୀ ଗଦାଭିଡ ଅଇବ୍ରତେ
ବେଢ଼ି ପ୍ରହାର କଲେ ସେ ନନ୍ଦଘୋଷ ରଥେ
ସମସ୍ତଙ୍କୁ ବହୁ ଶସ୍ତ୍ର ବନ୍ଧଇ ଅର୍ଜ୍ଜୁନ
ମତ୍ତହସ୍ତୀ ଯୋଦ୍ଧାମାନେ ପଡ଼ ହନ୍ତ ଚୂର୍ଣ୍ଣ ।
ଯେସନେ ଗିରିରେ ମାଡ଼ ପଡ଼ ହନ୍ତ ଚୂର୍ଣ୍ଣ
ଯୋଦ୍ଧାଙ୍କ ଶସ୍ତ୍ରକୁ ତେସନେକ ଭୀମସେନ ।
ଶର ବନ୍ଧ ବନ୍ଧ ସଙ୍ଗେ ହୋଇଲେ ବିମୁଖ
ଧନୁ ଧରି ନ ପାରଣ ହୋଇଲେ ନରସ୍ତ ।
ରଥ ଘୋଡ଼ ମାରି ଭୀମ ଡେଇଁଲେ ବେଗେ
ଯୁଗଳ ପଲକୁ ବ୍ୟାଘ୍ର ଧାଏଁ କି ସବେଗେ ।
ବା'ନ ବା'ନ ଭର ଗଦା ବେନ ବେନ ହସ୍ତେ
ପିଟନ୍ତେ କୌରବଦଳ ଶୋଇଲେ ସମସ୍ତେ ।
ନାରତ ବନ୍ଧନ୍ତେ ବଗ ଦିଶଇ ଅନ୍ଧାର
ନିର୍ଭୟରେ ଯୁଦ୍ଧ କରେ ବାସବ କୁମର ।

ସ୍ୱସ୍ତେ ପାର୍ଥ ଅଟଇ ମହାଧନୁର୍ଦ୍ଧର
ତାଙ୍କ ଅସ୍ତ୍ରେ ଅସ୍ତ୍ର ମାର କରନ୍ତ୍ୟନ୍ତ ଦୂର ।
କୌରବ ରାଜା ଯୋଦ୍ଧାଙ୍କ ଶର ସର୍ପଚୟ
ପାର୍ଥଶର ନାଶ କଲେ ହୋଇ ବୈନତେୟ ।
ସତ୍ୟକର ଯୁଦ୍ଧକଥା କହୁଛ ନ ଶୁଣ
ଯାହାର ଛାଇ ଅଟନ୍ତି ଦେବ ଦଇତ୍ୟାରି ।
ଯୋଦ୍ଧାଙ୍କୁ ଘୋଟି ରହିଲା ବାଣ ଜାଳାବଳ
ଆକାଶରେ ଅଦୃଶ୍ୟ ଯେ ହେଲେ ଅଂଶୁମାଳ
ବହୁସୈନ୍ୟ ଲେଟାଇଲେ ଭୀମ ଗଦା ପିଟି
ବାତ ବସାତେ ଯେସନେ ଉଦ୍ୟାନ ଲୋଟି ।
ତେହ୍ନେ ମହୀଂର ପଡନ୍ତି କୌରବଙ୍କ ଥାଟ
ମୃତପିଣ୍ଡ ପାହାଳରେ ରୁଦ୍ଧ ହେଲା ବାଟ ।
ଡାହାଣରେ ବୃକୋଦର ବାମରେ ସାତ୍ୟକି
କୃଷ୍ଣଙ୍କ ସଙ୍ଗରେ ଇନ୍ଦ୍ର କୁବେର ଯତେ କି ।
ଖଡଗ କୁଠାର ଆଦି ଅସ୍ତ୍ରଘରତାକେ
ଉଠଇ ଅନଳ ଶିଖା ଗଗନ ମଣ୍ଡଳେ ।
ଧ୍ରୁବମଣ୍ଡଳ ପର୍ଯ୍ୟନ୍ତ ହୁଏ ଶରଜାଳ
ହେଲାଣି ତଉଦ ଘଣ୍ଟ ଦଣ୍ଡ ଶେଷକାଳ ।
ପାହାଡ ବନ ସ୍ୱରସ୍ୱେ କୁରୁରାଜ ସୈନ୍ୟ
ଦେଖି ନ ପାରଲେ ଯହୁଁ ଜୟଦ୍ରଥ କର୍ଣ୍ଣ ।
ନନ୍ଦଘୋଷ ରଥେ ଥିଲା ଯାର ହନୁମନ୍ତ
କଣ ପୁଚ୍ଛିଲେ ତୋତେ କି ଦଶେ ଜୟଦ୍ରଥ
ହନୁମନ୍ତ ବୋଲେ ଦେବ ଅଛୁ ଗୋପ୍ୟ ହୋଇ
କାହିଁ ରହିଅଛୁ ସେହି ମୋତେ ନ ଦିଶଇ ।
ଦୁସ୍ତର ଏ ବ୍ୟୂହ ଦେବ ବଡଇ ଗହନ
ଏ ବ୍ୟୂହ ଭେଦିବା ଅଟେ ଅତ୍ୟନ୍ତ କଠିନ ।
ସୈନ୍ୟବଳ ଯେଣୁ ଏଥେ ଯତେ କୁରୁଇଶ
କୁ ହେବ ତହେଁ ସବୁଙ୍କୁ ଦେଖେ କର ନାଶ
କଉରବ ବଳ କିଛୁ ହୋଇଲେ ନପାତ
ପାହାଡ ଛାଡିଲେ ଦେଖାଯିବ ଜୟଦ୍ରଥ ।
କୃଷ୍ଣ ବୋଇଲେ ପୂର୍ବରୁ ଲଭିଛୁ ନିୟମ
ଦେଖିଛୁ ତ ଧୃଷ୍ଟପର୍ବେ କୋପ କଲେ ରାମ ।
ଏକ୍ଷଣି ସବୁଙ୍କ ମୂର୍ଦ୍ଧି ବନାଶି ପାରଇ
କେବଳ ବଳରାମଙ୍କ କୋପକୁ ଡରଇ ।
ହନୁମନ୍ତ ବୋଲେ ଶୁଣ ହେ ମଧୁସୂଦନ
ତୁ ଆଉ ଆଉ ଅର୍ଜୁନ ହେବ କି ଦହନ ।

ତସ୍ତେ ମୂର୍ଦ୍ଧି ଆଉଁ ଯେବେ ପାର୍ଥ ଯିବ ନାଶ
ଧିକ ଆମ୍ଭେ ଖାଇବାର ପ୍ରୟୋଜନ କିସ ।
ପ୍ରଭୁ କୃଷ୍ଣେ ସୃଷ୍ଟି ସ୍ଥିତି ପ୍ରଳୟ କରତା
ତୋତେ କି ଘଟଇ ଅଟେ ଏହୁ ସ୍ତୁତିକଥା ।
ହନୁମନ୍ତ ଠାରୁ ପ୍ରଭୁ ଶୁଣିଣ ଏସନ
ସେହିକ୍ଷଣି ଚକ୍ରକୁ କଲେକ ଉଚନ ।
ପାର୍ଥ ଜାଣି ନ ପାରିଲେ ଚକ୍ର ଗଲା ହରି
ବୋଇଲେକ ଆଛ ସୂର୍ଯ୍ୟକୁ ଉହାଡ଼ କରି
ନାରାୟଣଙ୍କ ଆଜ୍ଞାରେ ଚକ୍ର ଗଲା ବେଗେ
ସୂର୍ଯ୍ୟ ତେଜ ବୁଡ଼ାଇଲା ରହି ଶୂନ୍ୟମାର୍ଗେ ।
ସନ୍ଧ୍ୟାସମ ମଧ୍ୟାହ୍ନେ ଅନ୍ଧାର ଦିଶିଲା
ସକଳ ଜନ ଭାବିଲେ ସୂର୍ଯ୍ୟ ଅସ୍ତ ଗଲା ।
କଉରବ ଥାଟରେ ଯେ ଶୁଭେ ଜୟ ଜୟ
ଯୁଦ୍ଧ ରହୁ ବୋଲି ଆଜ୍ଞା ଦେଲା କୁରୁରାୟ ।
ଦିବା ଅସ୍ତ ହୋଇ ଯହୁଁ ହୋଇଲା ରଜନୀ
ପ୍ରତିଜ୍ଞା ବ୍ୟର୍ଥ ହୋଇଲା ପାଣ୍ଡବ ଫାଲ୍ଗୁନ
ଅସ୍ତ୍ର ଶସ୍ତ୍ର ରଖିଦେଇ ସକଳ ସଇନ
ଦେହୁଁ ରକ୍ତ ଛଡାଇଲେ ଗଙ୍ଗାରେ ପଶିଣ ।
ନିଷ୍ଫଳ ହୋଇଲା ଯହୁଁ ପ୍ରତିଜ୍ଞା ପାର୍ଥର
କୃପ ଶଲ୍ୟ କର୍ଣ୍ଣ ଆଦି ଗଲେ ତା ପାଖର ।
ମାନଗୋବିନ୍ଦ ସକଳ ରାଇଙ୍କ ସଙ୍ଗରେ
ଶକୁନିସହ ପ୍ରବେଶ ଅର୍ଜୁନ ପାଶରେ ।
ଅର୍ଜୁନର ମୁଖ ଚାହିଁ ଦୁଃଖେ କୁରୁରାୟ
ତା ବଳକ ବୋଲି ଭାଳେ ମାରେ କରହାୟ
ଦ୍ରୋଣର ମହିମା କାହୁଁ ଜାଣୁ ଜାଣୁ କୁହି
ଏପରି ପ୍ରତିଜ୍ଞା ବୃଥା କଲୁ କାହିଁ ପାଇଁ ।
ଜୟଦ୍ରଥେ ମାରିବାକୁ ଏ ପ୍ରତିଜ୍ଞା କଲୁ
ତୋରପର ଯହିଁ ହୋଇ ବନାଯୁଦ୍ଧେ ମଲୁ ।
କୃଷ୍ଣ ମଇନ୍ତ୍ରେ ତୋହର ଆଉ ବ୍ରତଧାଇ
କୃଷ୍ଣ ସହିତେ ସେମାନେ ବଞ୍ଚିବେ କି ସେହି
ଏ ସମୟେ ପାର୍ଥ ବୋଲେ ଶୁଣ ଦାମୋଦର
ପ୍ରତିଜ୍ଞା ନିଷ୍ଫଳ ଏବେ ହୋଇଲା ମୋହର ।
ଚିତା ଆରୋହଣ ପ୍ରଭୁ କରି ହେ ଉଚିତ
ପଶିବ ଅନଳ ମଧ୍ୟେ ରହୁ ମୋର ସତ୍ୟ ।
ଅର୍ଜୁନ ବଚନ ଶୁଣି ବୋଲନ୍ତି ମୁରାରି
ଜୟଦ୍ରଥକୁ ମାରିବା ଗଲେ ଯୁଦ୍ଧକରି ।

ତ୍ରିବରୁ ଯେଉଁ ବିଧାନ କଲ ପ୍ରଜାପତି
ଦିବସ ଯାଉ ଅଛଇ ତାର ଅଟେ ରତି ।
ଗତ ଦିବସ ଏ ଦୁଇ ଜାଣ ବୁଦ୍ଧି ଏକା
ଶ୍ରୁତି ଯୁଗରେ ଏ କଥା ହୋଇଅଛି ଲେଖା ।
ଦ୍ୱନ୍ଦ୍ୱଯୁଦ୍ଧେ ଯେବେ ତାକୁ ମାରି ନ ପାରିବୁ
ତେବେ କୁଣ୍ଡ ଅନଳରେ ନିଶ୍ଚେ ଝାସ ଦେବୁ
ଶୁଣି ବୋଇଲେ ଶସ୍ତ୍ର ନ ଧରୁ କପା ପାର୍ଥ
ଥାଉ ଅବା ଲକ୍ଷ ଥିବ ସେହି ଜୟଦ୍ରଥ ।
ଭୀମସେନ ବୋଲେ ଶୁଣ ମାନଚକ୍ରବର୍ତ୍ତୀ
ସୈନ୍ୟ ସଜାଅ ଯୁଝିବା ଆଜ ଦିବାରାତି ।
ଭୀମ ବାକ୍ୟେ ବୋଇଲେ ରାଜା ଦୁର୍ଯ୍ୟୋଧନ
ପାର୍ଥ ମୁଖେ କହୁ ସତ୍ୟ କଲା ମୁଁ ଲଙ୍ଘନେ ।
ଯେବେ ଧନଞ୍ଜୟ ସତ୍ୟ ଧର୍ମକୁ ଲଙ୍ଘିବ
ତେବେ ଏହି ରଜନୀରେ ନିଶ୍ଚେ ଯୁଦ୍ଧ ହେବ
ଏହା କହି ଦୁର୍ଯ୍ୟୋଧନ ବୋଲେ ହେ ବିବସ୍ତି
କ୍ଷତ୍ରିୟ ପ୍ରତିଜ୍ଞା ତୋର ଏଥର କି ଅଛି ।
କ୍ଷତ୍ରି ହୋଇକରି ଯେବେ ନ ରଖିବ ଧର୍ମ
ବ୍ରାହ୍ମଣ ହୋଇ ଯେବେ ସେ ନ ପାଳିବ କର୍ମ
ଯୋଗୀ ହୋଇଣ ଯଦ୍ୟପି ନ ସାଧଇ ଯୋଗ
ମନ୍ତ୍ରୀ ସୁବୁଦ୍ଧି ନ କହେ ଯେବେ ରାଜା ଆଗ
ପଣ୍ଡିତ ହୋଇଣ ଯେବେ ଛାଡ଼େ ଧର୍ମପଥ
ସ୍ତ୍ରୀ ହୋଇ ଯେବେ ପରପୁରୁଷରେ ରତ ।
ରାଜା ହୋଇଣ ବଞ୍ଚଇ ଯେବେ ପରଜାଙ୍କୁ
ସ୍ୱର୍ଗରେ ବାସ ନ ମିଳେ ଏପରି ଲୋକଙ୍କୁ ।
ତୁ ଯେ ପ୍ରତିଜ୍ଞା କରିଲୁ ସୂର୍ଯ୍ୟ ଅସ୍ତଯାଏ
ନ ମାରିଲେ ଜୟଦ୍ରଥ ସମରେ ନିଶ୍ଚୟେ ।
ଅନଳ ଜାଳି ମରିବ ଏକଥା ମୋ ସତ୍ୟ
ଏତେବେଳେ କାହିଁପାଇଁ ହେଉଛୁ ନିସତ ।
ଏବେ ସମର କରନ୍ତେ ସୂର୍ଯ୍ୟ ଅସ୍ତ ଗଲା
ଯେବଣ ପ୍ରତିଜ୍ଞା କରି ନିଷ୍ଫଳ ହୋଇଲା ।
କ୍ଷତ୍ରିୟର ପ୍ରତିଜ୍ଞା ଯେ ପାଷାଣର ଗାର
ଏହା ଜାଣୁ ଜାଣୁ ତୁହି ଲଙ୍ଘୁ କି ପ୍ରକାର ।
କ୍ଷତ୍ରିୟ ହୋଇଣ ଯେବେ ପ୍ରତିଜ୍ଞା ଲଙ୍ଘିବ
ତେବେ ଏ ସଂସାର କେଉଁ ପରାୟେ ଚଳିବ ।
ସତ୍ୟ ଲଙ୍ଘି ପୃଥିବୀର ମାତୃପିତୃ ସିନ୍ଧୁ
ରାଜା ହୋଇଣ ଯେବେହିଁ ହୋଇବ ଅସାଧୁ ।
ମାତା ପିତାଙ୍କ ଯେବେ ନ ଆଦରଇ ସୁତ
ସ୍ୱଜନ ହୋଇ ଯେବେ କି ଦ୍ୱିଜେ ଅଭକତ
ଅଗ୍ନି ଦେବତା ହେବେ କି ଲଙ୍ଘେ ଗୃହବାସ
ଧନ ଥାଉଁ ପିତୃ ଲୋକେ ଜଳେ ଯେ ନିରାଶ
ସ୍ତ୍ରୀ ହୋଇ ଯେବେ ନୋହେ ପତିରେ ଭକତା
ଧନବନ୍ତ ହୋଇ ଯେବେ ନ ହୋଇଲେ ଦାତା
ଏ ସଂସାରେ ଏତେ କଥା ଯଦ୍ୟପି ଲଙ୍ଘିବ
ବେଦ ଶାସ୍ତ୍ର ପୁରାଣାଦି ମିଥ୍ୟା କି ହୋଇବ ।
ମାନଗୋବିନ୍ଦ ବଚନେ ବୋଲେ ଫାଲଗୁନ
କେ ଏହା ଲଙ୍ଘିବ ଜାତ ହୋଇଣ ମେଦିନୀ
ପ୍ରତିଜ୍ଞା ଲଙ୍ଘନ ପାପ କହିଲେ କି ସରି
ଯେତେ ଯୁଦ୍ଧ ସାମଗ୍ରୀ ଅସ୍ତ୍ର ଶସ୍ତ୍ର ଧାରି ।
ବନ୍ଧୁ ଭୀମ ସାତ୍ୟକି ଯେ ଶୋକରେ ଅବଶ
ଅଗ୍ନି ଯୋଗ ନ କଲେ ବେ ଶୋକରେ ଅବଶ
ମୃତ୍ୟୁ ବାଟେ ଅଗ୍ନି ଦାନ କରଇ ଯେ ସଖା
କୁଟୁମ୍ବର ମଧ୍ୟରେ ଯେ ତାକୁ କରି ଲେଖା ।
ଶୁଣି ଦୁଃଶାସନ କର୍ଣ୍ଣ ଦୁର୍ଜୟ ଦୁଃସହ
ଦାଠ ଆଣି ଗଦାକଲେ ବହନ୍ତୁ ବହୁଳ ।
ମାନଗୋବିନ୍ଦ ତହିଁରେ ଲଗାଇଲ ବହ୍ନି
ତାଙ୍କୁ ସୋଦର ବୋଲିଣ ପ୍ରଶଂସେ ଫାଲ୍‌ଗୁନି
ଶ୍ରୀକୃଷ୍ଣଙ୍କୁ ବୋଲେ ପାର୍ଥ ଆଜ୍ଞା ଦିଅ ନାଥ
ଜନ୍ମେ ଜନ୍ମେ ତୁମ୍ଭ ପାଦେ ରହୁଥାଉ ଚିତ୍ତ ।
ଶ୍ରୀକୃଷ୍ଣ ବୋଇଲେ ଆହେ ଶୁଣ ଫାଲଗୁନ
ଶତ୍ରୁର ବଚନେ କପା ଝାସ ମନେ ଘେନ ।
ଦେଖ ହେଉଛନ୍ତି ସର୍ବେ କପଟ ସାନନ୍ଦ
କପଟ କଲା ବଦନେ ସେ ମାନଗୋବିନ୍ଦ ।
ତୁ କ୍ଷତ୍ରି ଯୋଦ୍ଧା ବୀରବର ରଣରଙ୍କା
ଶତ୍ରୁର ଅସତ୍ୟ ବାକ୍ୟେ ନ କର ତୁ ଶଙ୍କା ।
ପୂର୍ବପର ସମରକୁ କରି ଆଚରଣ
ମାରି ନ ପାରିଲେ ହେବ ଅନଳେ ଦହନ ।
ଅର୍ଜ୍ଜୁନ ବୋଇଲେ ଦେବ ନିୟମ ଯେ କଲି
ଜୟଦ୍ରଥ ନ ମାରିଲେ ଭସ୍ମ ହେବି ବୋଲି ।
ସତ୍ୟଭଗ୍ନ କରେ ଯେଉଁ ପ୍ରାଣୀ ତାହିଁ ଗତି
ଲଭଇ ନର୍କରେ ସେହି ବହୁତର ଶାସ୍ତି ।
ଆହେ ନାରାୟଣ ମୋତେ ନ କର ନିଷେଧ
ନିଶ୍ଚୟ ଅଗ୍ନି ମଧ୍ୟରେ ହୋଇବି ମୁଁ ଦଗ୍ଧ ।

ମଣ୍ଡିବାକୁ ଅନଳରେ ପଶୁଛି ଅର୍ଜୁନ
ହରଷ ବସ୍ତ୍ରେ ଧାଇଁଛନ୍ତି ବହୁଜନ ।
ଷଟସେଇମଲ୍ଲି ଶରଣପଞ୍ଜୁର ସାରଥି
ଅର୍ଜୁନ ଅଟଇ ପୁଣି ତ୍ରୈଲୋକ୍ୟର ସାଧୁ ।
ବହୁ ଅଗୁରୁ ଚନ୍ଦନ କାଷ୍ଠ ବହିଆଣି
ଦେଉଛି ଅଗ୍ନିରେ ପକାନ୍ତି କୌରବ ସଇନ ।
ଏତକୁ ଆରେକ ପୁଣି ବେଗେ ଉଡେ ତାକେ
ଆସ ଦେଖିବା ଅର୍ଜୁନ ପଶିବ ପାବକେ ।
ଖଡା ଯୋଦ୍ଧାମାନେ ବହୁ ହୁଅନ୍ତି ବଦଳ
ଏହା ପସ ଛନ୍ଦୀ ଏବେ ପଶିବ ଅନଳ ।
ଶକୁନ ତାକେ ବ୍ୟୂହରୁ ଆସ ଜୟଦ୍ରଥ
ଦେଖିବା ଅନଳେ ଦଗ୍ଧ ହେଉଅଛି ପାର୍ଥ ।
ସର୍ବେ କହନ୍ତି ଅର୍ଜୁନ ମୁଖକୁ ଅନାଇ
ଜଗଜ୍ଜନ ଯୋଦ୍ଧର ଏ ଦରଶ ଅଟଇ ।
ସଞ୍ଜୟ ଶକୁନ ଧୃତରାଷ୍ଟ୍ରଙ୍କର କୁଳେ
ଲକ୍ଷସସ୍ର ରଥୀ ସେନ ଜୟଦ୍ରଥ ଗଲେ ।
ଅନେକ ସମ୍ପର୍କେ ସିନ୍ଧୁଦେଶ ଅଧିପତି
ଅନଳ ଜାଳିବା ସ୍ଥାନେ ମିଳିଲା ତଡ଼ିତ ।
କୃଷ୍ଣ ବୋଇଲେ ଅଇଲା ଦେଖ ଜୟଦ୍ରଥ
ପ୍ରତିଜ୍ଞା ନଷ୍ଟକେ ଭୋଳ ହୋଇ ଆନନ୍ଦିତ ।
ବହୁତ ଆନନ୍ଦ ହୁଏ ସିନ୍ଧୁରାଜା ସୁତ
କୌରବଙ୍କ ସଙ୍ଗେ ଉଲ୍ଲସ ହୋଇ ଆନନ୍ଦିତ ।
ତତକ୍ଷଣେ ଅରଜୁନ ଦିବ୍ୟଦେହ ହୋଇ
ଶ୍ରୀଫଳ ଯୋଡ଼ିଏ ନିଜ କରେ ଘେନିଛଇ ।
ଅଗ୍ନିରେ ପଶିବ ବୋଲି ବାସବର ଶିଷ୍ୟ
ଲକ୍ଷେକ ମୁକୁତା କରେ ହୋଇ ସେ ପ୍ରବେଶ
ଶ୍ରୀକରେ ଶ୍ରୀଫଳ ଘେନି ପାର୍ଥ ବୁଲେ ବହ୍ନି
ପଶିବାକୁ ଦୃଢ଼ବ୍ରତ କଲା ଫାଲଗୁନ ।
ଜୟଦ୍ରଥ ଆସି ବୋଲେ ଶୁଣ ହେ ଫାଲଗୁନ
କ ଯୋଗେ ଅଇଲୁ ଏବେ ମରଣକୁ ଘେନ ।
ତୋହର ବୈରୀ ଅଟନ୍ତି ଧୃତରାଷ୍ଟ୍ର ଯୋଏ
ଅଧର୍ମ ମାର୍ଗ ଲୋଡ଼ କୁ ମୋତେ ତୁ ଅନ୍ୟାୟେ
ଧର୍ମକୁ ଛାଡ଼ି ଅଧର୍ମେ କରିଲୁ ତୁ ଆଶା
ବହନ୍ତା ପୁତ୍ରର ତୋତେ କରିଲା ନିରାଶା ।
କେତେବେଳ କରିବୁ ତୁ କଲୁ ଏ କୁକର୍ମ
ମନ ଜାଣି ଶାସ୍ତି ତୋତେ ଦେଉଅଛି ଧର୍ମ ।

ଦୁର୍ଜନେ ରହୁ କହଣ ସାଧୁ ଲୋଡ଼ୁ ମାର
ଅକାଳରେ ହେ ଶାନ୍ତବା ମନ୍ତ୍ର ଯୋଡ଼ିକର ।
ଶକୁନ ବୋଇଲା କୃଷ୍ଣ ଯାହାର ସାରଥି
ଶକଟବ୍ୟୂହ ଭେଦ ନ ପାରିଲା ତା ରଥୀ ।
ଅଖ ତକବାଟେ ଯେବେ ଭେଦନ୍ତା ପ୍ରଥମେ
ପାଖ ପଡ଼ରେ ମିଳନ୍ତା ଆସ୍ଥ ସନ୍ନିଧାନେ ।
ନ ଜାଣିବାପଣେ ବ୍ୟୂହ ନ ପାରିଲୁ ଭେଦ
ମରଣ ତ ନକୁ ହେଲା ବସସ୍ଥିତ ବୁଦ୍ଧି ।
ପ୍ରତିଜ୍ଞା କଲୁ ତୁ ଯାହା ମତ୍ତଗର୍ବପଣେ
ବିବାଗ୍ରହ ବୋଲି କର୍ଣ୍ଣ ନ ବୋଇଲୁ ରଣେ
ଆଦ୍ୟନ୍ତ ଏ ଜୟଦ୍ରଥ ଅଟେ କୃଷ୍ଣ ସଙ୍ଗ
ଏହାଯୋଗେ ତୁମ୍ଭର ଯେ ବୋହିଲାକ ଭଙ୍ଗ ।
ଭୀମସେନ ବୋଲେ ହାତେ ଶସ୍ତ୍ର ଧର ପାର୍ଥ
ଉଭୟ ସନ୍ଧ୍ୟାରେ ମାର ଏହି ଜୟଦ୍ରଥ ।
ମୋତେ କପାଇଁ ନ କହୁ ଆରେ ଫାଲଗୁନ
ଏଣ୍ଡି ପିଟନ୍ତି ଜାଳବର ଗଦା ଘେନ ।
ଅର୍ଜୁନ ବୋଇଲେ ଦେବ ହେବ କି ନ ଜାଣା
ଧର୍ମ ଲଙ୍ଘି ରଖାଇବ କଥା ଏହୁ ଗବ ।
ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତେ ଯେବେ ପାଞ୍ଚିଥାନ୍ତି ମାର
ତଣେ ଜୟ ଜୟ ଧ୍ୱନି ଶୁଭନ୍ତା ମୋହର ।
କ୍ଷଣେକ୍ଷି ଆଦିତ୍ୟଦେବ ଥାନ୍ତେ ଯେବେ ରହି
ଏହଣି ତାକୁ ମାରନ୍ତ ରଖନ୍ତା କେ ନାହିଁ ।
ଅରଜୁନର ପ୍ରତିଜ୍ଞା ଶୁଣି ନାରାୟଣ
କାଳଚକ୍ର କାଢ଼ିଦେଲେ ଆକାଶୁ ତକ୍ଷଣ ।
ପଶ୍ଚିମ ଦିଗରେ ଦିଶିଲେକ ମାର୍ତ୍ତଣ୍ଡ
ଦେଖିଲେକ ବେଳ ଅଛି ଦୁଇ ତିନ ଦଣ୍ଡ ।
ସମସ୍ତ ଯୋଦ୍ଧାଏ ଦେଖି ହୋଇଲେ ଆଶ୍ଚର୍ଯ୍ୟ
କହନ୍ତି ଅର୍ଜୁନ ମୁଖ ଚାହିଁ ଦେବରାଜ ।
ପାର୍ଥଙ୍କୁ ଚାହିଁ କହିଲେ ହସି ଜନାର୍ଦ୍ଦନ
ପ୍ରତିଜ୍ଞା ନଷ୍ଟକେ କିପାଁ ହୋଇଲୁ ଦହନ ।
ଶକୁନ ଚାହିଁ କହିଲା ଶ୍ରୀକୃଷ୍ଣ ବଦନ
ଏ ସବୁ କୂଟ କପଟ ତୋହର ଭିଆଣ ।
ହରି କହିଲେ ସକଳ କହୁ କୁହ ସତ୍ୟ
ଅସ୍ତ ଗହନେ ଅଦୃଶ୍ୟ ଥିଲା ଏ ଆଦିତ୍ୟ ।
ଅବର ସୈନ୍ୟମାନଙ୍କ ଉଡ଼ି ପାଦଧୂଳି
ଆଚ୍ଛାଦିତ ହୋଇଥିଲେ ଦେବ ଅଂଶୁମାଳି ।

ସଂଗ୍ରାମ ଶେଷ ହୁଅନ୍ତେ ଧୂଳି ବିଶ୍ରାମିଲା
ସେ କାରଣୁ ସୂର୍ଯ୍ୟରଶ୍ମି ପ୍ରକାଶ ହୋଇଲା ।
ଗଦାଧର ସେନା ଭୀମ କରନ୍ତି ଗର୍ଜନ
ଭୟେ ଗଜ ପଳାଇଲେ କୌରବ ସଇନ ।
ଗୋବିନ୍ଦ ବୋଇଲେ ବେଗେ ଅସ୍ତ୍ର ଧର ପାର୍ଥ
ଦଶସହସ୍ର ରଥୀ କୂଳେ ମାର ଜୟଦ୍ରଥ ।
ଦୁର୍ଯ୍ୟୋଧନ ବୋଲେ ଏହା କଟକୂଟ କଥା
ଲଙ୍ଘନ କରୁଛ ତୁମ୍ଭେ ଧର୍ମକୁ ସର୍ବଥା ।
କୃଷ୍ଣଯୁଗରେ ଯେ ଧର୍ମ ଅଟଇ ପ୍ରଧାନ
ପ୍ରତିକାର ନାହିଁ ଧର୍ମ କଲେକ ଲଙ୍ଘନ ।
ମୂର୍ଖି ସତ୍ୟେ ପ୍ରଭଞ୍ଜା ଯେ ଭକ୍ଷଣ ଅଛଇ
ଏମା ଯୁଦ୍ଧେ ପାଣ୍ଡବଙ୍କ ଭୂମି ନ ଦିଅଇ ।
ଭୀଷ୍ମ ନାଶଗଲା ଭୂରିଶ୍ରବାହିଁ ପଡ଼ିଲା
ଅନେକ ବାନ୍ଧବ ମଲେ ଦୁର୍ଦ୍ଦଶାହିଁ ଗଲା ।
ଯଦି ରଣେ ପଡ଼ିବେ ମୋ ଅନେଶତ ଭାଇ
ଗ୍ରାମେ କର ପାଣ୍ଡବଙ୍କୁ ନ ଦିଅଇ ମହୀ ।
ଗୋବିନ୍ଦ ବୋଇଲେ ତୋର ମହିମାକୁ ଧନ୍ୟ
କ ସୁଲକ୍ଷଣେ ତୋତେ ମାତା କରିଥିଲା ଜନ୍ମ ।
କୁନ୍ତିପର ଭୀମସେନ କମନ୍ତଣେ ଦେଲୁ
ପୁରଞ୍ଜନ ହାତେ ବିଷଲଡ଼ୁ ଖୁଆଇଲୁ ।
ଭୁଞ୍ଜି କୁଟକାକର ଯହୁଁ ହେଲା ଅସାଷ୍ଟମ
ଜଳେ ଫିଙ୍ଗିଲୁ ନାଗୁଣୀ ଖାଇବ ବୋଲଣ ।
ଜତୁଘର ଭିଆଇଲୁ ଥିଲୁ ଧର୍ମବାଟେ
ଜଳି ସଜଳସ ଗୃଆଧୂତ ଛଣପଟେ ।
ପାଣ୍ଡବେ ମରନ୍ତୁ ବୋଲି ସନ୍ଦେହ ଦେଲୁ ପୋଡ଼ି
ପ୍ରାଣ ପାଇଲେ ସେ ସୁଡ ଦଘୀଷରେ ପଡ଼ି ।
କମନ୍ତି ଗାନ୍ଧାରସେନ ବଂଶକୁ ଆଣିଲୁ
ନେଇ ପଥର ଘରେ ତାହାଙ୍କୁ ଭରିଲୁ ।
ଅନେଶତ ଜଣ ତାର କୁଟୁମ୍ବ ସହିତେ
ଅନ୍ନ ନ ଦେଇ ମାରିଲୁ ଧର୍ମୀ କୁ ଜଗତେ ।
ସେ ପଥର ଘରୁ ଧର୍ମେ ବଞ୍ଚିଣ ଶକୁନ
ଧାର୍ମିକ ପୁରୁଷ ତୁମ୍ଭେ କର୍ମମନ୍ତ୍ରୀ ଘେନ ।
ଚକ୍ରବ୍ୟୂହ ସମରେ ତ କଲ ଧର୍ମବୃତ୍ତି
ଅଭିମନ୍ୟୁକୁ ବେଢ଼ିଲେ ଦଶସହସ୍ର ରଥୀ ।
କେଡ଼ି ତାକୁ ମାରିଲେ ଯେ ଦଶସହସ୍ର ସଙ୍ଗେ
ଦୁଃଶାଳୁ ଯାଇ ପେଷିଲୁ ତୁହି ଭୁଲୁସଙ୍ଗେ ।
ଧାଇଁଯାଇ ଦୁଃଶା ଗଦା ପଡ଼ନ୍ତୁ ପିଟିଲା
ସେ ଆଘାତେ ଅଭିମନ୍ୟୁ ମହୀରେ ଲୋଟିଲା ।
ମୋହର କୁମର ତକେ ଘଟେ ଯେତେବେଳେ
କେଡ଼ି କଷଣ ମାରିଲେ ତାକୁ ତେତେବେଳେ
ଜୟଦ୍ରଥ ଗଦା ପିଟେ କୁମର ବୁକୁରେ
ତୁମ୍ଭ ଧର୍ମ ଜଥପାଦ କହିଲେ ନ ସରେ ।
ସବୁବେଳେ ଧର୍ମପଥେ ତୁମ୍ଭେ ଥାଅ ରହି
ପୁତ୍ରଶୋକେ ଧନୁଧରେ ଅର୍ଜ୍ଜୁନ ନ ସହି ।
ଅର୍ଜ୍ଜୁନ ଧନୁ ଧରନ୍ତେ ଭୀମ କୋପେ ଉଠି
ଦନ୍ତରେ ଅଧର ଚାପି ଘୂରାଇ ତରାଟି ।
ବେଳଗଦା ବୃନ୍ଦଗଣ ଉଠି ଝିଉଝୁଣି
କୃତାନ୍ତକ ରୂପ ଦେଖି ଭାଜିଲେ ସଇନ ।
ଦଶସହସ୍ର ରଥୀ କୁଳେ ସିନ୍ଧୁ ନରନାଥ
ଭୟେ ପଳାଇଲେ ସର୍ବେ ହୋଇ ଇତସ୍ତତଃ
ଦୁର୍ଯ୍ୟୋଧନ ବୋଲେ ବେନି ଦୁଇଘଡ଼ି ଅଛି
ପଳାଇ ତୁ ପ୍ରାଣରଖ କେଉଁଠାରେ ଲୁଚି ।
ଜୟଦ୍ରଥ ବୋଲେ ମୋର ସୈନ୍ୟ ରଖ ସସ୍ତେ
ରଥ ତେଜ୍ୟାକରି ଏବେ ପଳାଉଛୁ ପାସ୍ତେ ।
ଉପ୍ୱରେ ପଳାଇ ତହିଁ ଗଲା ଜୟଦ୍ରଥ
ବସ୍ତ୍ର ଅସମ୍ଭାଳ ତାର କେଶ ମୁକୁଳିତ ।
ଭୀମ ସାତ୍ୟକି ଏ ଦୁହେଁ ସୈନ୍ୟବଳ ଧ୍ୱଂସି
ଦଶସହସ୍ର ଯୋଦ୍ଧାଙ୍କୁ ମାରିଲେ ଆକର୍ଷି ।
ନନ୍ଦଘୋଷ ତେଜ୍ୟାକରି କୃଷ୍ଣ ଫାଲଗୁନ
ଗୋଡ଼ାଇଣ ଜୟଦ୍ରଥେ ଅସ୍ତ୍ର ଶସ୍ତ୍ର ସେନ ।
ଇନ୍ଦ୍ରପ୍ରଶସ୍ତ ନାମରେ ଏକଇ ପର୍ବତ
ତହିଁରେ ପଳାଇଣ ଯାଏ ଜୟଦ୍ରଥ ।
ପାର୍ଥ ଡାକନ୍ତି ଏ ରହ ସିନ୍ଧୁ ଅଧିପତି
ମୃତ୍ୟୁକାଳେ ଲୁଚିଲେ କି ଘୁଞ୍ଚେ ଜନ୍ତୁପନ୍ତ ।
ଭଗ୍ନିକି କହିଲି ରହି ପଶିଲୁ ସମରେ
ବଂଶ ନାଶିଲୁ ମାରିଣ ବାଳୁତ କୁମରେ ।
ପାର୍ଥ ଅସ୍ତ୍ର ଛାଡ଼ିଦେଲେ ହସ୍ତୁ ଯେତେବେଳେ
ଅଗ୍ନି ଆକ୍ଷେପଣ କଲେ ଯମୁନାର କୂଳେ ।
ତାହା ଦେଖି ଧାତକାରେ ଦୂତ ଧାଇଁଗଲା
ଯୁଧିଷ୍ଠିର ଆଗେ ସବୁ ବାରତା କହିଲା ।
ସ୍ୱାମି ଯୁଦ୍ଧକାଳୁଁ ସୂର୍ଯ୍ୟଦେବ ଅସ୍ତହେଲେ
ସଂଗ୍ରାମ ତେଜି ଅର୍ଜ୍ଜୁନ ଶସ୍ତ୍ର ଯେ ଛାଡ଼ିଲେ ।

କଉରବଙ୍କର ଆଗି ଲଗାଇଲେ ବହ୍ନି
ଅନନ୍ତେ ଝାସିବ କୃଷ୍ଣ ଭାଇ ଫାଲଗୁନ ।
ଏହା ଶୁଣି ଯୁଧିଷ୍ଠିର ହୋଇଲେ ଦୁଃଖିତ
ନକୁଳ ସହଦେବଙ୍କୁ ସେନାଣ ସହିତ ।
ଯୁଦ୍ଧସ୍ଥାନକୁ ଧାଇଁଲେ ହୋଇ ଉଦବେଗ
ଶିଖଣ୍ଡୀ ଯେ ଧୃଷ୍ଟଦ୍ୟୁମ୍ନ ଗଲେ ତାଙ୍କ ସଙ୍ଗ ।
ଦ୍ରୁପଦ ନୃପତି ଶଙ୍ଖଉତ୍ତର ବିରାଟ
ପକ୍ଷ ସେନ ଧାଇଁଲେ ଏ ପାଣ୍ଡବଙ୍କ ଥାଟ ।
ସିନ୍ଧୁରାଜାକୁ ଯତ୍ନିକ ଧରିଛନ୍ତି କିରୀଟୀ
ଇନ୍ଦ୍ରପ୍ରସ୍ଥ ଗିଣ୍ଡତଳେ ହେଲେ ଭେଟାଭେଟି ।
ଶୁଭ ଶକୁନେ ଭେଟିଲେ ଯାଇଁ କୃଷ୍ଣ ପାର୍ଥ
ଅତି ଆନନ୍ଦରେ ସର୍ବେ ହେଲେ କୃତକୃତ୍ୟ ।
ଗୋଡ଼ାଇ ଭେଟିଲେ ଯହୁଁ କୁରୁ ସୈନ୍ୟବଳ
ଉଭୟବଳ ଥାଟରେ ହୋଇଲା ଗହଳ ।
ଅର୍ଦ୍ଧଚନ୍ଦ୍ର ବାଣ ଘେନ ସ୍ୱଗତେ କିରୀଟୀ
ଜୟଦ୍ରଥ ଧନୁ କୋଣ ପକାଇଲା କାଟି ।
ଶୂନ୍ୟହସ୍ତେ ଜୟଦ୍ରଥ ହୋଇଅଛି ଉଭା
ବିଦ୍ୟାଧର ପଶ୍ଚବସ୍ତ୍ରିକ ବଣେ ଅତି ଶୋଭା ।
ଜୟଦ୍ରଥ ବୋଲେ ଶୁଣ ଆହେ ପାର୍ଥ ବୀର
କ୍ଷରଣ ଭକ୍ଷଣ ବାନା ଉଡ଼ଇ ତୋହର ।
ତୋହର ବଇରୀ ଯେବେ ନିଅସ୍ତ୍ର ହୁଅଇ
ନ ମାର ତାହାକୁ ଯୁଦ୍ଧ ଭୁବି ବସ୍ୟାକହି ।
ଯିଠିହବ ଏବା ମୁଖେ ଅଙ୍ଗୁଳି ଭରଇ
ଏପର ଶତ୍ରୁକୁ ପାର୍ଥ ନ ମାରୁ ଯେ ବୁଦ୍ଧି ।
ତୋହର ହୋଇ ମୁଁ ଥାଏ ଏ ପ୍ରାଣକୁ ଘେନ
ତୁ ଯେ କ୍ଷତ୍ରିୟମାନଙ୍କ ଅଟୁ ଶିରୋମଣି ।
ଦ୍ରୌପଦୀ ହରଣ କାଳେ କଲୁ ସାଉବେଣି
ସେହିଦିନୁ ମୁଁ ତୋହର ଭୃତ୍ୟର ଭୃତ୍ୟଟି ।
ଶିରେ କରଦେଇ ବୋଲେ ରଖ ମୋତେ ପାର୍ଥ
ଏମନ୍ତ ଶୁଣି ବାସବ ହେଲେ ସ୍ତମ୍ଭୀଭୂତ ।
ଅର୍ଜୁନ ବୋଇଲେ ହରି କପାଁ କଲୁ ହସ୍ତ
ଏହାକୁ ମାଇଲେ କଷ୍ଟ ପାଇବ ସମ୍ପଦ ।
ସମ୍ପଦ ନିମନ୍ତେ ଯେତେ ନାଶେ ବନ୍ଧୁଜନ
ପରଲୋକେ ସେତେ ହୁଏ ନରକେ ପତନ ।
ଗୋବିନ୍ଦ ବୋଇଲେ ତୁ ଯେ ପର ଉପକାରୀ
ଶରଣ ରଖୁ ଏହାକୁ ନିଜ ପ୍ରାଣ ବାଉ ।

ଆଦ୍ୟରୁ ଏହି ପ୍ରତିଜ୍ଞା କିପାଁ କଲୁ ପାର୍ଥ
ତୁ ପ୍ରତିଜ୍ଞା ଲଙ୍ଘି ହୋଇବୁ କି ଅଧଃପାତ ।
ଅଗ୍ନି ମଧ୍ୟେ ପଶିବୁ ତୁ ଯାଇ ଯେତେବେଳେ
କି ଉହିବ ପାଣ୍ଡବଙ୍କ ତହିଁ ରଣଗୋଳେ ।
ପୂର୍ବଶତ୍ରୁ ତୋର କେହ୍ନେ ସ୍ୱାକୁ ଯୁଦ୍ଧ ବୁଦ୍ଧି
ଯେ ଏହା ନ କରେ ନଷ୍ଟେ ନର୍କରେ ପଡ଼ଇ ।
ଏହିକ୍ଷଣି ଗଲେ ପାର୍ଥ ପଡ଼ିବ ପ୍ରମାଦ
କିପାଇଁ ମଉନ ହେଲୁ ବେଗେ ଶିରଚ୍ଛେଦ ।
ତୋର ପ୍ରତିଜ୍ଞା ନିମନ୍ତେ କରଅଛୁ ଏହା
ଏହିକ୍ଷଣି ବୃକୋଦର ବଦାରିବ ହିଆ ।
ସାତ୍ୟକି ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଶିନରାଜ
ଏହିକ୍ଷଣି ମାଂସ ତାର ପକାଇବେ ପିଞ୍ଜି ।
ଅନ୍ୟାୟେ ବଧିଲା ଯେଣୁ ମୋହର ଭଣଜା
ଚକ୍ରରେ ଛେଦିବ ଶିର ବୁଦ୍ଧି କଲେ ତେଜ୍ୟା ।
ମାୟାଧର ପ୍ରଭୁ ନାନା ମାୟା କଥା କହି
ଅର୍ଜୁନର ହୃଦମଧ୍ୟେ ପ୍ରବେଶିଲେ ଯାଇଁ ।
ତହୁଁ ପାର୍ଥ ପେଷିଲେକ ଶର କାଳଦଣ୍ଡ
ପ୍ରଖରେ ଉଠିଲା ଅତି ହୋଇଣ ପ୍ରଚଣ୍ଡ ।
ନିରପେକ୍ଷ ବାଣ ଗଲା ରଣ ରଙ୍ଗେ ଘୋଟି
ଜନ୍ମେ ପଡ଼ ଜୟଦ୍ରଥ ଶିର ଦେଲା କାଟି ।
କନ୍ଧରୁ ମସ୍ତକ ଛିଡ଼ି ଭୂମିରେ ପଡ଼ଣ
ପୁଣି ସେ ମୁଣ୍ଡ କନ୍ଧରେ ଲାଗିଲା ବହନ ।
ରୋଷଭରେ ଜୟଦ୍ରଥ ଧାମେ ଖଳରାଜ
କରେ କୃପାଣ ବୁଲାଇ ଅତି ରୋଷେ ଗଜ ।
ପୁଣି ପାର୍ଥ ଖୁର୍ପିଶର ବିନ୍ଧିଲେକ ଟାଣି
ଜୟଦ୍ରଥ ଶିର ବେଗେ ପକାଇଲେ ହାଣି ।
ଭୂମିରେ ପଡ଼ିଣ ମୁଣ୍ଡ ଲାଗିଲାକ ଯାଇଁ
ପୁଣି ପାର୍ଥ ଶର ମାରି ଦେଲେକ ଛିଣ୍ଡାଇ ।
ପୁଣ ଛିଡ଼ି ପୁଣ ମୁଣ୍ଡ ଲାଗଇ ଉରତେ
କାଟିଲା ଅନେକବାର ପାର୍ଥ ଏହିମତେ ।
ଏହା ଦେଖି ଉଖି ଦେଇ ପାର୍ଥ ଧନୁଶର
କାହୁଁ ପାଇଲା ଏ ବର କହ ଚକ୍ରଧର ।
ସହଦେବଙ୍କ ମୁଖ ଚାହିଁ ପୁଚ୍ଛିଲେ ଅଚ୍ୟୁତ
କହ ମନ୍ତ୍ରୀବର ଏହା କେଉଣ ଚରିତ ।
ସହଦେବ ବୋଇଲେକ ଶୁଣ ଚକ୍ରପାଣି
ଏଥିର ଚରିତ୍ର କେବ ଅଛଇ ମୁଁ ଜାଣି ।

ଦ୍ରୌପଦୀଙ୍କୁ ହରନେଲା ଏଣୁ ସେତେବେଳେ
ଜୟଦ୍ରଥେ ଭୀମ ଧରି ମାଡ଼ଣ କରିଲେ ।
ରୁହାଇଲେ ଦେବ ଧର୍ମ ମୁଣ୍ଡକୁ ମୋଡ଼ନ୍ତେ
ଛଡ଼ାଇ ନେଇ ତାହାକୁ ଦୁଃଶୀଳା ନିମନ୍ତେ
ସଙ୍ଗେ ଅର୍ଜ୍ଜୁନ ଏହାକୁ ନର ଘାତଦେଣି
ମୁଣ୍ଡଣ କଲେ ତାହାର ଚୋଟିକୁ ନ କାଟି ।
ଭୀମସେନ ଗଳାଇଲେ ଦୁଇ ଜାନୁତଳେ
ବୋଲନ୍ତ ଏ ପାଣ୍ଡବଙ୍କ ଭୃତ୍ୟ ସର୍ବକାଳେ ।
ଅପମାନ ପାଇଣ ନ ଗଲା ସିନ୍ଧୁ ଦେଶେ
ତପେ ବସିଲାକ ଯାଇ ଶିବ କଇଳାସେ ।
ଦୃଢ଼ ଯୋଗାସନେ ଚିନ୍ତାକର ବିଶ୍ୱନାଥ
ଦ୍ୱାଦଶ ବରଷ ତପ କଲା ଜୟଦ୍ରଥ ।
ପ୍ରସନ୍ନ ହୋଇଣ ଶିବ ତା ପାଶେ ମିଳିଲେ
ଯେ ବର ମାଗିବୁ ମାଗ ବୋଲିଣ କହିଲେ ।
ଜୟଦ୍ରଥ ବୋଲେ ପ୍ରଭୁ ଏହି ବର ଦେବେ
ସମରରେ ସରି ମୋତେ ନୋହିବେ ପାଣ୍ଡବେ
ଈଶ୍ୱରଙ୍କୁ ବୋଇଲା ସେ ଦୁଃଶୀଳାର କାନ୍ତ
କୃଷ୍ଣସହ ଜିଣିବି ମୁଁ ପାଣ୍ଡବ ସମସ୍ତ ।
ଶିବ ବୋଇଲେ ବାଞ୍ଛିଲୁ ତୁ ଦୁଃସହ ବର
ଅର୍ଜ୍ଜୁନେ ବାଧା ହୋଇଲେ ରକ୍ଷା ନାହିଁ ତୋର
ସମରେ ଜିଣି ପାରିବୁ ଯୁଧିଷ୍ଠିର ଦେବ
ଆବର ଭୀମ ନକୁଳ ଆଉ ସହଦେବ ।
ହର ବ୍ରହ୍ମା ଇନ୍ଦ୍ର ଆଦି କୁବେର ସହିତେ
ସମର କରିଣ ମାରି ନ ପାରିବେ ତୋତେ ।
ହର ଦିଗପାଳ ଯେବେ ହେବେ ଏକ ଜଣେ
ନିଶ୍ଚୟ ଶିରଚ୍ଛେଦନ ହୋଇବେ ତୋ ରଣେ
ଶୁଣି ଜୟଦ୍ରଥ ପୁଣି କହଇ ଏସନ
ଛିଡ଼ନ୍ତେ ମୁଣ୍ଡ ଲାଗିବ ମୋର ପୁଣ ପୁଣ ।
ଶିବ ବୋଇଲେ ତୋହର ଲାଗିବ ଯେ ଶିର
ମୁଣ୍ଡ ପଡ଼ିବଟି ଯେବେ ତୋ ପିତା ହସ୍ତର ।
ଉତ୍ତର ସାଗରେ ତୋର ପିତା ତପ କରେ
ତା ତପ ଭଙ୍ଗିବା ଯାଏ ଲାଗିବ ଜନ୍ମରେ ।
ଜୟଦ୍ରଥ ବୋଲେ ପ୍ରଭୁ କହିଲ ଅସାଧ୍ୟ
ଜାଣିବ ନା ମୁଁ କେମନ୍ତେ ହୋଇବ ମୋ ବଧ
ପ୍ରଭୁ ବାକ୍ୟରେ ଉତ୍ତର ଦେଲେଟି ଧୂର୍ଜଟି
ତୋର ମୃତ୍ୟୁ ଲେଖ ଅଛେ ପାଣ୍ଡବ କଷଟୀ ।

ରଥ ଗଜ ଅଶ୍ୱ ପରେ ଚଢ଼ିଣ ନ ଥିବ
ପାଦଗତ ହୋଇ ତୋତେ ଶର ଯେ ପେଷିବ
ବ୍ରହ୍ମା ବିଷ୍ଣୁ ଶିବ ହୋଇଥିବେ ଅବତାର
ଏସନକ ରୂପେ ତୋତେ କରିବେ ସଂହାର ।
ଗଜ ନୋହିଥିବ ପୁଣି ଦ୍ୱିଜ ନୋହିଥିବ
ପିନାକ ସମାନ ଧନୁ ତାର କରେ ଥିବ ।
ମୋର ପାଶୁପତ ଶରେ ଛେଦିବ ତୋ ଶିର
ମୁଣ୍ଡ ପଡ଼ିବ ଯାଇ ତୋ ପିତାର ହସ୍ତର ।
ଭସ୍ମ ହେଉ ବୋଲି କହି ପକାଇ ଦିଅନ୍ତେ
ତୋହର ମୁଣ୍ଡ ଦହନ ହୋଇବ ଏମନ୍ତେ ।
ସହଦେବ କହିଲେକ ଜଗନ୍ନାଥ ପାଶ
ଏହିପରି ଜୟଦ୍ରଥ ହୋଇବ ବିନାଶ ।
ଅର୍ଜ୍ଜୁନ ଯେବଣ କାଳେ ହୋଇଲେ ସଞ୍ଚାର
ବ୍ରହ୍ମାଙ୍କର ମୁଣ୍ଡ ଆଉ ବିଷ୍ଣୁଙ୍କ ରୁଧିର ।
ଈଶ୍ୱର ବିଭୂତି ଦେବ ଉପାଇଲେ ପିଣ୍ଡୁଳ
ବାସବର ଆତ୍ମା ଦେଇ ଅର୍ଜ୍ଜୁନଙ୍କୁ ତୋଳ ।
ବଧିରେ ଅର୍ଜ୍ଜୁନ ଏହି ସୁରଙ୍କର କାୟ
ଗାଣ୍ଡୀବ ଧନୁକୁ ଦେଇଛନ୍ତି ଦେବରାୟ ।
ପାଶୁପତ ଶର ଦେଇ ଅଛନ୍ତି ଈଶାନ
ସନ୍ଧ୍ୟାକାଳ ହେଉଅଛି ଦେଖ ବର୍ତ୍ତମାନ ।
ସହଦେବ ବାକ୍ୟ ଶୁଣି କୃଷ୍ଣ ଜଗନ୍ନାଥ
ଗାଣ୍ଡୀବେ ପାଶୁପତାସ୍ତ୍ର ଯୋଚିଲେକ ପାର୍ଥ ।
ଆକର୍ଣ୍ଣ ପର୍ଯ୍ୟନ୍ତ ଗୁଣ ଓଟାରି କଷଟୀ
ଛାଡ଼ନ୍ତେ କାଟିଲା ଜୟଦ୍ରଥ ମୁଣ୍ଡ ଗୋଟି ।
ଉଡ଼ାଇ ଦେଲେ ସେ ମୁଣ୍ଡ ପବନାସ୍ତ୍ର ସାତେ
ମୁଣ୍ଡ ପଡ଼ିଲା ଆକାଶୁଁ ବୃଦ୍ଧର ହସ୍ତେ ।
ନୟନ ବୁଜି ପ୍ରସାରିଥିଲା ସେହୁ କର
ତହିଁରେ ପଡ଼ିଲା ଯାଇ ଜୟଦ୍ରଥ ଶିର ।
ଭସ୍ମହେଉ ବୋଲି ପାଡ଼ିଦ୍ୟନ୍ତେ କରାଞ୍ଜଳି
ଚାହିଁନ୍ତେ ନେତ୍ର ଅନଳେ ମୁଣ୍ଡ ଗଲା ଜଳି
ଜୟଦ୍ରଥ ପଡ଼ନ୍ତେଣ ପାଣ୍ଡବଙ୍କ ଜୟ
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦ କଲେ ଦେବରାୟ ।
କୁରୁବଳ ସୈନ୍ୟ ଶୁଣି ସ୍ତବଧ ବିସ୍ମୟେ
କ୍ରୋଧେ ଅଧୀର ହୋଇଲା ଦୁର୍ଯ୍ୟୋଧନ ରାୟେ ।
ଜୟ ଜୟ ନାରାୟଣ ଶଙ୍ଖ ଚକ୍ରଧାରୀ
ସିନ୍ଧୁ ସୁତା କମଳାଙ୍କ ହୃଦୟ ବିହାରୀ ।

ଭକ୍ତଙ୍କ କଷଣ ଭୁଞ୍ଜେ ସହି ସେ ନ ପାରି
ତାଙ୍କପାଇଁ ଧର ବାରୁ ନାନା ଅବତାର ।
ଯୁଗେ ଯୁଗେ ତୁମ୍ଭ ଯଶ ରହିଅଛି ପୂରି
ମୁଁ ଛାର ନର ମାତର କିସ ବର୍ଣ୍ଣିପାରି ।
ଧନ୍ୟ ଧନ୍ୟ ଭକ୍ତବତ୍ସଳ ହେ ଦେବ ରମେଶ
ଶାରଳା ଦାସର ରକ୍ଷ ତବପାଦେ ଆଶ ।

---

## ସୁରଥ ରାଜାର ତପସ୍ୟା

ବଲଙ୍କ ଦେଶର ବୈବସ୍ୱତ ମନୁ ରାଜା
ପୁଚ୍ଛାକଲା ଅଗସ୍ତିଙ୍କୁ କରି ଅର୍ଘ୍ୟ ପୂଜା ।
ବଡ଼ ଦୁରାପଦ ଏହି ଯୁଦ୍ଧର ବ୍ୟବସ୍ଥା
ଶୁଣି ଆଶ୍ଚର୍ଯ୍ୟ ହୋଇଲି ଜୟଦ୍ରଥ କଥା ।
ପିତା ତାର କି ନିମନ୍ତେ ଅଛି ତପୀ ହୋଇ
ଉତ୍ତରକୁରେ ବସିଛି କେଉଁ ଫଳପାଇଁ ।
ଏହା ବିସ୍ତାରିଣ ମୋତେ କହ ତପୋବନ୍ତ
ଶୁଣି ମୋର ଭ୍ରାନ୍ତିଟି ଯାଉ ମୋ ଦୁଷ୍କୃତ ।
ବୋଲନ୍ତି ଅଗସ୍ତି ମୁନି ଆହେ ମନୁ ରାଣ
ଯାହା ତୁ ପୁଚ୍ଛା କରିଲୁ ଏକଲୟେ ଶୁଣ ।
ଉତ୍ତପାତ ବଂଶେ ଜାତ ହେଲେ ମହାରଥ
ଏହାଙ୍କ କୁମର ନାମ ନିର୍ମଳ ରଥ ।
ନିର୍ମଳ ରଥର ପୁତ୍ର ନିରଙ୍କୁଶ ରଥ
ପ୍ରତାପ ରଥ ବୋଲିଣ ହେଲା ତାର ସୁତ ।
ତାହାର ନନ୍ଦନ ନାମ ଅଟେ ଅନୁରଥ
ଅନୁରଥର ନନ୍ଦନ ସେ ଭୂମନ୍ୟୁ ରଥ ।
ଭୂମନ୍ୟୁ ରଥର ପୁତ୍ର ନାମ ଶମ୍ଭୁ ମନୁ
ବରଥ ବୋଲିକରି ସେ ହେଲା ତାର ସୁନୁ ।
ବରଥର ପୁତ୍ର ନାମ ହେଲା ଦଶରଥ
ଏହାଙ୍କର ପୁତ୍ର ହେଲା ରାସ୍ୱର ସୁରଥ ।
ସୁରଥ ବାଲ୍ୟକାଳରୁ ଅଟଇ ସେ ତପୀ
ରାଜା ହୋଇ ଦିଗ୍ବିଜୟ କରଇ ଯଦ୍ୟପି ।
ମାରଇ ଦୁଷ୍ଟ ଦାନବ ବଳବନ୍ତ ସାଧି
ମହୀ ଯେ ବୋଲାଇଲା ଏକ ମହାଯୋଧୀ ।
ବଢ଼ଇ ପ୍ରତାପୀ ଏହୁ ସନ୍ଧୁ ଦେଶ ରାଜା
କୁବେର ସମାନେ ଧନ ଧର୍ମେ ପାଳେ ପ୍ରଜା ।
ଧାର୍ମିକ ବିବେକ ପୁଣି ସେ ପରମ ଯୋଗୀ
ତସ୍କର କଳଧ୍ୱଂସନ ସାଧୁଜନ ଭଜୀ ।
ଦଶସହସ୍ର ବର୍ଷ ଭୁଲେ ଦିଗ୍ବିଜୟ କରେ
ପଶି ନ ପାରନ୍ତି ଶତ୍ରୁ ତାହାଙ୍କ ସୀମାରେ ।
ଏହିପରି ସେହି ରାଜା ଦ୍ୱାପର ଯୁଗରେ
ତିନିସହସ୍ର ବର୍ଷ ରାଜ୍ୟ କଲା ମଧୁପୁରେ ।
ସୁରଥ ରାଜାର ଭାର୍ଯ୍ୟା ନାମ ସେ କାନ୍ତାମ୍ବା
ଜୟଦ୍ରଥ ବୃଷ୍ଣିରଥ ହେଲେ ପୁତ୍ର ବେନି ।
ବୃଷ୍ଣିରଥ ଥିଲା କାଳଦମନର କୁଳେ
ଗୋମନ୍ତ ଯୁଦ୍ଧରେ ହରି ତାହାକୁ ବଧିଲେ ।
ସୁରଥ ରାଜାର ମନ୍ତ୍ରୀ ନାମ ଅନିରୁଦ୍ଧ
ଭୂତ ଭବିଷ୍ୟତଜ୍ଞାତା ଅଟେ ସର୍ବସିଦ୍ଧ ।
ସୁରଥ ମହାରାଜା ସେ ବଡ଼ ଭାଗ୍ୟବନ୍ତ
ତାହାର ଥିଲେକ ନବସହସ୍ର ଶତ ସୁତ ।
ରାଜା ହୋଇବାକୁ ଜୟଦ୍ରଥର ସେ ସାଧ
ରାଜେ ମୁହିଁ ହୋଇଲିଣି ଆସି ଅତି ବୃଦ୍ଧ ।
କୁଳମାସ କୃଷ୍ଣପକ୍ଷ ନବମୀର ତିଥି
ମଘା ନକ୍ଷତ୍ର ସେ ଦିନ ଭୃଗୁବାର ଯୁକ୍ତି ।
ବାସ୍ତବ୍ୟ ନାମେ କରଣ ଧୃତିନାମେ ଯୋଗ
ଜୟଦ୍ରଥ ଉଭା ହୋଇଅଛି ରାଜା ଆଗ ।
କୁମରକୁ ଦେଖିକରି ବୋଇଲେ ନୃପତି
କୁଳ କୃଷ୍ଣ ଚତୁର୍ଦ୍ଦଶୀ ଦିନ ପିତୃ ତିଥି ।
ଶ୍ରାଦ୍ଧ ସେ ଦିନ ହୋଇବ ଆରେ ଜୟଦ୍ରଥ
ଗଣ୍ଡା ଏକ ମାତ୍ର ଆଣ ବୋଇଲେ ସୁରଥ ।
ଜୟଦ୍ରଥ ବୋଲେ ମୁଁ ନ ଛାଡ଼େ ଗଣ୍ଡାଜୀବ
ସେ ବୋଇଲା ଯାଉ ମନ୍ତ୍ରୀ ଛଡ଼ାଇଣ ଦେବ ।
ଜୟଦ୍ରଥ ବୋଇଲାକ ଗଣ୍ଡା ନ ପାଇଲେ
ଶ୍ରାଦ୍ଧ ହୋଇବ କି ନାହିଁ ଆନ ଜୀବ ହେଲେ
ସୁରଥର ପୁରୋହିତ ବ୍ରାହ୍ମଣ ସୁଦେବ
ସେ ବୋଇଲା ବନେ ଯେବେ ଗଣ୍ଡା ନ ପାଇବ
ମୃଗ ବାହୁଟିଆ ଶଶା ହରିଣ ଶମ୍ବର
ପଣ୍ଡୁଲ ଖୁରଙ୍ଗ ଆଉ ବଣର ଶୂକର ।
ଖୋଜି ଖୋଜି ନ ପାଇବୁ ଯେବେ ବନେ ହେଉ
ଶ୍ରାଦ୍ଧ ବିଧାନ କରିବା ମୀନ ଛେଳି ମାତ୍ର ।
ଏ ସକଳ ନ ପାଇଲେ ଆଣ ଏକ ବାରହା
ପିତୃକାର୍ଯ୍ୟ ଶ୍ରାଦ୍ଧପାଇଁ ଯୋଗାଇବା ତାହା ।
ସୁରଥ ବୋଲେ ଏହାକ ଯୋଗାଇ ସୁକଲେ,
ସୁଦେବ ବୋଇଲେ ବେଳ ପିତୃକାର୍ଯ୍ୟ ଅଲ୍ପେ

ସୁରଥ ବୋଇଲା ଯେବେ ଏମନ୍ତ ଅଟଇ
ପ୍ରତେ କରିବାକ ଦେଖା ଶାସ୍ତ୍ର ବାଟେ ନେଇ
ସୁଦେବ ପଣ୍ଡା ବୋଇଲା ସତ୍ୟଯୁଗ କଥା
ଶୁଣ ମହାରାଜା ପିତୃ କାର୍ଯ୍ୟର ବାରତା ।
ଦଶାର୍ଣ୍ଣ ଦେଶ ମନୋହର ନାମେ ବନ
ସରଯୂ ନାମେଣ ନଗାଖର ସନ୍ନିଧାନ ।
ମଣିକଣ୍ଠିକା ବୋଲିଣ ଅଛି ପର୍ବତେକ
ତା ଉପରେ ଲୁବ୍ଧନାମେ ପଲ୍ଲୀ ଶବରଙ୍କ ।
ମେଲ୍ଲଭୃସ୍ରା ବୋଲି ଜାତଶବର ଯେ ଯୋଧୀ
ଜଇନ୍ତା ବ୍ୟାଧର ପୁତ୍ର ହିରଣ୍ୟପରାଧି ।
ସେ ବ୍ୟାଧର ଉପୁଜିଲା ଦୁଇକୋଟି ସୁନୁ
ଏକର ନାମ ହିରଣ୍ୟ ଆର ନାମ ହନୁ ।
ହନୁ ନାମା ବ୍ୟାଧର ଯେ ସାତୋଟି ନନ୍ଦନ
ଏଥୁ ଏକଙ୍କର ନାମ ଅଟେ ଅନୁପମ ।
ତନୁ ସୁରତ ଆବର ଶନୁ ସୁରକ୍ଷେତ
ରତ ମୁରତ ଏସନ ସପତ ସନ୍ତତ ।
ପିତୃ ତିଥିରେ ବସାଇ ସେହି ସାତ ସୂନୁ
ଗଣ୍ଡାମାଂସ ଆଣ ବୋଲି ଆଜ୍ଞା ଦେଲା ହନୁ ।
ପିତାର ଆଜ୍ଞାରେ କର ନବେଶିଣ ଶିରେ
ସପତ ବ୍ୟାଧ ପଶିଲେ ଅରଣ୍ୟ ଭିତରେ ।
ଗଣ୍ଡା ବାହୁଟିଆ ଆଦି ଯେତେ ଜନ୍ତୁ ଅଛି
ମୃଗ ଶମ୍ବର ସହିତେ ନ ପାଇଲେ କିଛି ।
ନ ପାଇଲେ ଦବାଗ୍ନେ ଲୋଡ଼ି ହନୁ ପୋଏ
ବାହୁଡ଼ି ଆସନ୍ତେ ପଥେ ଦେଖି ଧେନୁଟିଏ ।
ରକ୍ତନାମେ ବ୍ୟାଧ ବୋଲେ ଫେରିଗଲେ ଅଜ
ଆମ୍ଭ ଶବର ବଂଶକୁ ହେବ ବଡ଼ ଲାଜ ।
ଏ ଧେନୁ ଗୋଟାକୁ ମାରି କାର୍ଯ୍ୟ ଚଳାଇବା
ଚର୍ମ ପକାଇ ଏହାର ମାଂସ ଘେନିଯିବା
ନ କହିବ ପିତାଆଗେ ଏହି ଯେ ଗୋ ମାଂସ
ଏହା ଘେନ ପିତା ପିତୃକାର୍ଯ୍ୟ କରୁ ଶେଷ ।
ଏହିପରି ସବୁ ବ୍ୟାଧେ ଏକ ମନ ହୋଇ
ଧେନୁକୁ ବଧିଲେ ସର୍ବେ ମାରଚ ପୁରାଇ ।
ମାରିଣ ଧେନୁକୁ ତାର ନେଲାଇଲେ ମାଂସ
ସାତ ପୁତ୍ରମାନ ଆଣି ଦେଲେ ପିତା ପାଶ ।
ଯତନ କରି ଶବର ଥୋଇଲା ତା ପଲ୍ଲୀ
ପିତୃଗଣଙ୍କୁ ବାଢ଼ିଲା ଗଣ୍ଡାମାଂସ ବୋଲି ।

ତାର ପଲ୍ଲୀ ନିକଟରେ ଥିଲେ ଯେତେ ବ୍ୟାଧ
ପିତୃଶ୍ରାଦ୍ଧେ ତାର ଘରେ ଖାଇଥିଲେ ବୋଧ
କାଳବଶେ ସାତଜଣ ପାଆନ୍ତେ ମରଣ
ଦୂତମାନେ ନେଇଗଲେ ଯମର ଭୁବନ ।
ଦେଖି ଚିତ୍ରଗୁପ୍ତ ବୋଲେ ଯାଙ୍କୁ ଧରି ନିଅ
ବଧ କରିଛନ୍ତି ଧେନୁ ନରକେ ପକାଅ ।
ଚିତ୍ରଗୁପ୍ତ ଏହିପରି ଦୂତଙ୍କୁ କହନ୍ତେ
ଧରମ ଦେବତା ତାଙ୍କୁ ବୋଇଲେ ଏମନ୍ତେ ।
ନୁହନ୍ତି ଏ ଦୋଷୀ ଛାଡ଼ିଦିଅ ସପ୍ତବ୍ୟାଧ
ପିତୃକାର୍ଯ୍ୟ ଅର୍ଥେ ଏହି କଲେ ଧେନୁବଧ ।
ଏମନ୍ତ ଶୁଣିଣ ଦୂତେ ତାଙ୍କୁ ଛାଡ଼ି ଦେଲେ
ଯମ ତାଙ୍କୁ ତାସପଣେ ନେଇ ବସାଇଲେ ।
ଏ ସପ୍ତ ବ୍ୟାଧଙ୍କ ମାତା ନାମ ଯେ ହରିତା
ଗୋମାଂସ ରନ୍ଧ ବାଢ଼ିଲା ହୋଇଣ ଅଜ୍ଞାତ ।
ସେ ଏକ ନକ୍ଷତ୍ର ହୋଇ ଉଦେ ହେଲା ସ୍ୱର୍ଗେ
ପିତୃକାର୍ଯ୍ୟ ଫଳଶ୍ରୁତି କହିଲୁ ତୋ ଆଗେ ।
ପୁରୋହିତଙ୍କ ବଚନ ଜୟଦ୍ରଥ ଶୁଣି
ଅରଣ୍ୟକୁ ଗଲା ସେହି ମନ୍ତ୍ରୀ ସଙ୍ଗେ ଘେନି ।
ଗଣ୍ଡାଜୀବ ଲୋଡ଼ି ଲୋଡ଼ି ନ ପାଇଲା କାହିଁ
ଏଣେତେଣେ ବୁଲି ବୁଲି ବହୁଶ୍ରମ ପାଇ ।
ବସିଲେ ସେ ଦୁହେ ଯାଇ ଜମ୍ବୁ ବୃକ୍ଷ ତଳ
ସେହିଠାରେ ଜୟଦ୍ରଥ ଧରି ମନ୍ତ୍ରୀବାଳ ।
ବାମହସ୍ତେ କେଶ ଦକ୍ଷକରେ ଖଡ଼୍‌ଗ ଧରି
ବୋଇଲା ଇଷ୍ଟଦେବତା ସୁମର ତୋହର ।
ମନ୍ତ୍ରୀ ବୋଇଲେକ ମୁହିଁ କଲି କେଉଁ ଦୋଷ
ତୋର ଶରଣ ମୋତେ ନ କର ପ୍ରାଣେ ନାଶ
ଜୟଦ୍ରଥ ବୋଇଲା ମୁଁ ହେଉଅଛି ବୃଦ୍ଧ
ବଳ ବପୁକାଳେ ରାଜପଣ କରି ସଧ ।
ତୁ ମନ୍ତ୍ରୀ ପଣ୍ଡିତ ଜାଣୁ ଭୂତ ଭବିଷ୍ୟତ
କପା ବଶ୍ୱର ମୋତେ ନ କଲୁ ନୃପନାଥ ।
ମନ୍ତ୍ରୀ ସତ୍ୟକରି ବୋଲେ ଛାଡ଼ ବାଳ ମୋର
ରାଜା ହେବାପାଇଁ ଯେବେ ଇଚ୍ଛା ଥିଲା ତୋର
ଏ କଥା ଆଗରୁଁ ମୋତେ କହିଥିଲେ ତୁହି
କେତେଦିନରୁ ରାଜ୍ୟରେ ଥାନ୍ତୁ ରାଜାହୋଇ ।
ହେଉ ରାଜାପଣେ ମନ ବଳାଇଲୁ ଯେବେ
ସ୍ୱାମୀଙ୍କୁ ମାରିଣ ତୋତେ ରାଜ୍ୟଦେବି ଏବେ ।

ମନ୍ତ୍ରୀ ବାକ୍ୟେ ଜୟଦ୍ରଥ କୋପ ସମ୍ବରିଲା
ତହିଁ ମନ୍ତ୍ରୀକି ସେକ୍ଷଣ ପୁରେ ପ୍ରବେଶିଲା ।
ମନ୍ତ୍ରୀକି ବକାଇ ପୁଚ୍ଛା କରନ୍ତି ସୁରଥ
କେଣେ ବୃକୋଦରେ ମୋ ପୁତ୍ର କେଉଁ ସାମରଥ
ମନ୍ତ୍ରୀ ବୋଲେ ବନେ ଗଣ୍ଡା ନ ପାଇଲ୍ ତାହିଁ
କେଣେ ବୃକୋଦର କଥା କି କହିବ ମୁହିଁ ।
ମନ୍ତ୍ରୀର ବଚନ ଶୁଣି ସୁରଥ କହଇ
ଗଣ୍ଡାହତା ଆନଗାଡ଼ ନ ଥିଲେ କି ତହିଁ ।
ରାଜା କଥା ଶୁଣି ମନ୍ତ୍ରୀ କହେ କରି କ୍ରୋଧ
ଗଣ୍ଡା ନ ପାଇଲୁ ଆନଗାଡ଼େ କିସ ସାଧ ।
ଶୁଣି ମନ୍ତ୍ରୀ ବୋଲେ ତୋର ପୁତ୍ର ହୁଏ ବୃଦ୍ଧ
ତୋତେ କହୁ ନ ପାରେ ସେ ରାଜ୍ୟଭାର ଶ୍ରଦ୍ଧ
ଜୟଦ୍ରଥେ ରାଜାକରି ତୁଅ ତୀର୍ଥବାସୀ
ମୁହିଁ କିସ ଅରଜିବି ତୋ ପ୍ରାଣ ବିନାଶି ।
ସଜନ ବୟସ ମନ୍ତ୍ରୀ କହିଲା ଏକାନ୍ତେ
ସମସ୍ତେକ ବଧ ଯାଇ ଆସୁ ଅଛି ଯେତେ ।
ରାଜାକୁ ସେକ୍ଷଣ ମନ୍ତ୍ରୀ ଚଳିଲା ନଗାରେ
ରାଜ୍ୟ ଛାଡ଼ି ପଶିଲାକ ଶିବା ମଣ୍ଡଳରେ ।
ସମସ୍ତ ତ୍ୟାଗ କରଣ ଚଳିଲା ସୁରଥ
ପ୍ରାଣ ବଞ୍ଚନେ ପଶିଲା ତପସ୍ୟାକୁ ତୀର୍ଥ ।
ମୁନି କହିଲେ ରାଜନ ଶୁଣ ମନଦେଇ
ଜୟଦ୍ରଥ ଭୟେ ତପ ତା ପିତା କରଇ ।
ଯବ ଜୟଦ୍ରଥ ଆସି ହେବ ମୋର ପାଶେ
ମୁଖ ନ ଚାହିଁବ ତାର ସ୍ମରଣ ମାନସେ ।
ଚକ୍ଷୁ ବୁଜି ସ୍ତମ୍ଭୁ ଧ୍ୟାୟି ନଗରେ ବସିଲା
ଏହି ପରକାରେ ତହିଁ କେତେଦିନ ଗଲା ।
ବନେ ରହିଲେ ଉପବାସେ ମୋ ଦେହ ଜଳଇ
ପୁତ୍ର ରାଜା ହୋଇ ତେଣେ ଐଶ୍ୱର୍ଯ୍ୟ ଭୁଞ୍ଜଇ ।
ଉପବାସେ ଦେହ ଦଗ୍ଧ ହେଉଛି ମୋହର
ମୋ ଯୋଗେ ଜୟଦ୍ରଥର ନ ଛୁଟେ ଶରୀର ।
ସୁରଥ ଏପରି ମନେ ଭାବିଲା ବେଳରେ
ଜୟଦ୍ରଥ ମୁଣ୍ଡ ପଡ଼େ କର ଅଞ୍ଜଳିରେ ।
ଭସ୍ମ ହେଉ ବୋଲି ଦେଖି ଛାଡ଼ିଲା ଅଞ୍ଜଳି
ଜୟଦ୍ରଥର ମସ୍ତକ ତହିଁ ଗଲା ଜଳି ।
ଜୟ କାତ୍ୟାୟିନୀ ମାଗୋ ଶ୍ରୀସର୍ବମଙ୍ଗଳେ
ମନ୍ଦାର ମାଳା ଲମ୍ବଇ ତୋର କଣ୍ଠସ୍ଥଳେ ।
ଜୟ ଜୟ ମାହେଶ୍ୱରୀ ପ୍ରସନ୍ନ ବଦନ
ଶରଣ୍ୟେ ତ୍ର୍ୟମ୍ବକେ ଗୌରୀ ନମୋନାରାୟଣୀ
ଶଇଳନନ୍ଦନୀ ମାଗୋ ଅଟୁ ବାସନ୍ଧି
ଯାହାରେ ପ୍ରସନ୍ନ ହେଉ ତାର ସର୍ବସିଦ୍ଧି ।
ନର ମୁଣ୍ଡମାଳ ମାଗୋ ବିକାଶଇ ହୃଦେ
ପ୍ରସନ୍ନ ହୁଅ ତୁ ମୋତେ ସଦୟ ସାନନ୍ଦେ ।
କାମନା ପୂରଣ କର ତୁହି ମା କାମାକ୍ଷୀ
ଗୁପ୍ତାଗୁପ୍ତରେ ବିହାର କରୁ ସଫଳାକ୍ଷି ।
ନିରାକାର ନିର୍ବିକାରରୂପିଣୀ ତୁ ମାତ
କ୍ଷଣେ କରୁ ମହାକୋପ କ୍ଷଣେ ହେଉ ଶାନ୍ତ ।
ସମ୍ପତ୍ତି ବଢ଼ଇ ମାତ ତୋର ପ୍ରସାଦେ
ମହାବ୍ରତ କହୁଛୁ ବସ ମମ ହୃଦେ ।
ଏତିକ କହୁଛୁ ମାତ ପୂରାଅ ମୋ ଆଶ
କହଇ ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

---

## ରାତ୍ରି ଗୋଳଯୁଦ୍ଧେ ଦ୍ରୁପଦ ରାଜାର ମୃତ୍ୟୁ

ମଦ୍ରରାଜା ପୁଚ୍ଛାକଲେ ମୁନି ଅଗସ୍ତିଙ୍କି
ଜୟଦ୍ରଥ ବଧ ହେଲା ହୋଇଲାକ ରାତ ।
କାଶୀରଥ ଦାଶରଥ ଶତରଥ ତିନ
ପାଣ୍ଡବଙ୍କୁ ଓଗାଳିଲେ ସହସ୍ରରଥୀ ସେନ ।
ସାତ୍ୟକି ଭୀମ ସମରେ ଅତି ଅନର୍ଗଳ
ସୈନ୍ୟ ଦେଖି ଭେଟିଲେ ସେ ଦ୍ୱନ୍ଦ୍ୱୀ ମହାବଳ
ବୀରଙ୍କ ଷଣ୍ଢ ଘଟୋଇମଲ୍ଲ ସେହୁ ଦୁଇ
ବସ୍ତ୍ରରୂପ ବିକାଶିଲେ ମାରିବାର ପାଇଁ ।
ଦ୍ୱନ୍ଦ୍ୱସ୍ଥରେ ନିଶାଭାଗ ହସ୍ତାଯୁଦ୍ଧ ଶ୍ରମି
କର୍ଣ୍ଣରଙ୍କ ବୃକୋଦର ସମରରେ ଭ୍ରମି ।
କଉରବଙ୍କର ସୈନ୍ୟ ବହୁତ ଗହନ
ଭୀମ ସାତ୍ୟକି ମାରନ୍ତେ ଉଠିଲା ଚହଳ ।
ପଡ଼ିଲେ ଏଗାରଅକ୍ଷୌହିଣୀ ରକ୍ତ ହେଲା ବୃଷ୍ଟି
ଯେତେ ସୈନ୍ୟ ଥିଲେ ସବୁ ପାର୍ଥ ଦେଲେ କାଟି
କାରଣ ନ ହେଲା ସୈନ୍ୟ ପଡ଼ି କି ଆପଣେ
ଦୁର୍ଯ୍ୟୋଧନର ଅଗ୍ରତେ କହନ୍ତ ଯେ ଦ୍ରୋଣେ
ଥାଉ ଦୁଆଅ ବୋଲିବ ଆମ୍ଭ କିଛି ଯଶ
ଏ ରଜନୀ ଅନ୍ତେ ଯତ୍ନ ହୋଇବ ଦିବସ ।

ବ୍ୟୂହ ଏକ ଭିଆଇଛ ମାୟାର କୁଣ୍ଡଳୀ
ଭେଦି ନ ପାରିବେ ତାକୁ ବ୍ରହ୍ମା ରୁଦ୍ର ଭଳି ।
ଶୁଣି ହସିଲେ ଶକୁନି ଶଲ୍ୟ କୃପ ବ୍ରହ୍ମା
କର୍ଣ୍ଣ ଆଉ ଦୁଃଶାସନ ଦୁର୍ଜୟ ଦୁଗମ୍ବା ।
ଶକୁନି ବୋଲେ ରଚିଲ ତୁମ୍ଭେ ଚକ୍ରବ୍ୟୂହ
ବହୁଯୋଦ୍ଧା ମରାଇଲ ନିଜ ନାହିଁ କହ ।
ପୁଣି କୌଶଳେ ଶକଟ ବ୍ୟୂହଟି ଏ କଲ
ତହିଁରେ ପଡ଼ିଲେ ଏକାଦଶ କ୍ଷୌଣୀ ବଳ ।
କସ ଅବା କୌରବଙ୍କ ଉଦ୍ଯୋଧ ଭୁମ୍ବର
ସମରେ ନଟେ ପଡ଼ିଲେ ସିନ୍ଧୁ ନରବର ।
କୃପ ବୋଇଲେ ପଳାଇ ଯାଅ ଜୟଦ୍ରଥ
ଦେଶାନ୍ତରେ ରହ ହୋଇ ସମରରୁ କ୍ଷାନ୍ତ ।
ପ୍ରାଣ ରଖିଥାନ୍ତା ଅନ୍ୟ ଦେଶରେ ସେ ପଶି
ଏ ମହାତ୍ମା ରଖାଇଲେ ତାହାକୁ ଆଶ୍ୱାସି ।
ତୋର ବଚନେ ସମସ୍ତେ କରିଲୁ ଭରସା
ରକ୍ଷଣ ସିନ୍ଧୁରାଜନ ହୋଇଲା ନରାଶା ।
ପ୍ରଥମ ଦୁଆରେ ଥିଲୁ ଆପଣେ ଆବୋର
ଅର୍ଜୁନକୁ ଦେଖି ତୁହି ଗଲୁ ଅପସର ।
ଆହେ ଦ୍ରୋଣ ସାତ୍ୟକି ଯେ ଅଟେ ଯେଉଁ ଯୋଧି
ତାହାକୁ ନ ପାରିଲୁ ତୁ ଦୁଆର ନରୋଧି ।
ସେ ପୁଣି ବ୍ୟୂହ ଭେଦିଲା ଯୁଦ୍ଧେ ତୋତେ ଜିଣି
ଏକା ଭୀମ ଧସାଇଣ ପଶିଲାକ ପୁଣି ।
କୁରୁପାଣ୍ଡବେ ଯେତେକଟି ହୋଇଥାନ୍ତେ ମେଳ
ଆଜରେ ସମସ୍ତଙ୍କର ପୂରିଥାନ୍ତା କାଳ ।
ଆହେ ଦ୍ରୋଣ ଜୟଦ୍ରଥ ପ୍ରାଣେ ଦେଲା ନାଶ
ତୋହର ମୁଣ୍ଡେ ପଡ଼ିଲା ଦୁଃଶୀଳାର କଷ୍ଟ ।
ବିଶ୍ୱାସଘାତକ ପଣ କଲୁ ଦ୍ରୋଣଗୁରୁ
ପଳାଇ ଗଲେ ବର୍ତ୍ତିବା ତୋହର ସଙ୍ଗରୁ ।
ହେ ଗୁରୁ ବିଶ୍ୱାସଘାତୀ ଅଟେ ଯେଉଁ ଜନ
ଯାବନେ ଅକୀର୍ତ୍ତି ଥିଲେ ନରକେ ପତନ ।
ଧିକ ଜୀବନ ତୋହର ଆଉ କଥା କହୁ
ଦୁଇବଳ ମଧ୍ୟେ ପଶି ଲଜ୍ଜା ଯେ ନ ପାଉ ।
କୃପ ବୋଲେ କେତେ ମୁଖ ଦେଖାଉଛୁ ଦ୍ରୋଣ
ମୂର୍ଚ୍ଛନା ଫାଟି ନ ଯାଇ ରହୁଛି ତୋ ପ୍ରାଣ ।
କ୍ଷଣେକେ ବର୍ତ୍ତିବା ଧିକ ହୋଇ ମାନଭଙ୍ଗ
ପଳାଯା ଦ୍ରୋଣ ନ ରହ କୌରବଙ୍କ ସଙ୍ଗ ।

ଆହେ ରଇତନ ମାନଯୋଜନ ବୋଧରେ
ଜୟଦ୍ରଥକୁ ସୁମରେ କର ମାର ଶିରେ ।
ଦ୍ରୋଣଙ୍କୁ ବହୁ ହିଂସା କୃପ କଲେ ଯହୁଁ
ସଭରେ ଦ୍ରୋଣ ଉଠିଲେ ଶିର ଧୁଣି ତହୁଁ ।
କାଳଦଣ୍ଡ ପ୍ରାୟ ବେନ ଡୋଳାକୁ ବୁଲାଇ
ଧାଇଁଲାରେ କୃପ କାନ ଧରିଲେକ ଯାଇଁ ।
ବୁଲାଇ କୃପାଣ ଦାନ୍ତେ ଅଧରକୁ ଚାପି
ବୋଇଲେକ ତୋତେ ରଖାଇବୁ କେ ଅଦ୍ୟାପି
ତାଙ୍କ ହସ୍ତକୁ ଧରିଲେ ଯାଇ ଅଶ୍ୱତ୍ଥାମା
ବୋଇଲେ ନ ମାର ବିପ୍ର ଅଟେ କୃପାବ୍ରହ୍ମା ।
ଦୁର୍ଯ୍ୟୋଧନ ବୋଲେ ଯାଇ ଦ୍ରୋଣ କର ଧରି
ଶତ୍ରୁକୁ ଜିଣି ନ ପାରି ନଜେ ମସ୍ତମର ।
ରାଜାର ବଚନେ ଛାଡ଼ିଦେଲେ ତାର କେଶ
ରଣରଙ୍ଗ ଦେଖିବାକୁ ମୋର ବୁଲେ ଆସ ।
କରିବି ସମର ମୁଁ ଯେ ଏ ନିଶାର ମଧ୍ୟେ
ପାଣ୍ଡବଙ୍କୁ ବିନାଶିବ ନିଶ୍ଚେ ଏହି ଯୁଦ୍ଧେ ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ପାର୍ଥ
ମାରି ନ ପାରିଲେ ପ୍ରାତେ ମରିବି ଏ ସତ୍ୟ
କୃପ ବୋଇଲେ ସମସ୍ତ କଥା ଅଟେ ମିଛ
ମରଣ କଥାଟି ସତ୍ୟ ଜାଣୁଅଛୁ ପ୍ରତ୍ୟକ୍ଷ ।
ସଂଜନ୍ତେଣ ସମଦସ୍ତ୍ର ସେନାପତି ଦ୍ରୋଣ
ଚନ୍ଦ ବୋଲି ଡାକ ଦେଲେ ସେ କୃପ ବ୍ରାହ୍ମଣ
କୃପର ବଚନ ଶୁଣି ରହିଲେକ ସେନା
ବୋଲେ ଏକା ଭୀମ ବଳ ନୁହଇ କଳନା ।
ଶକୁନି ବୋଲେ ଯାଇଣ ସମର କରିବା
ଅନ୍ଧକାରେ ପାଣ୍ଡବଙ୍କୁ ବିପର ପାଇବା ।
ଶକୁନି ବଚନ ଶୁଣି ଭରଦ୍ୱାଜ ଶିଷ୍ୟ
ଲଗାନ୍ତେଣ ଗଜଦ୍ୱାଳା ଅନ୍ଧାର ବିନାଶି ।
ଉଜଳେ ପଞ୍ଚାଶ ହୁଳା ଅଶ୍ୱେ ଉଷଦଂଶ
ତମିର ଫାଟି ବଶିଲା ଦିବସ ସଦୃଶ ।
ଦ୍ରୋଣଗୁରୁ ଉଠିଲେକ ଶୁଭଖମ୍ବ ପରେ
ଆହେ ରେ ପାଣ୍ଡବ ବୋଲି ଡାକିଲେ ଉଚ୍ଚରେ
ଶୁଣି ଯୁଧିଷ୍ଠି ନକୁଳ ସହଦେବ ଭୀମ
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଭୁଲେ ସର୍ବସୈନ୍ୟ ।
ଧାମନ୍ତ ପାଣ୍ଡବଦଳ ସଂଗ୍ରାମ ମଣ୍ଡଳେ
ଦ୍ରୋଣଗୁରୁଙ୍କର ଡାକ ଶୁଣି କର୍ଣ୍ଣ ବଳେ ।

ଦ୍ରୁପଦ ବୋଲେ କୌରବ ଆଟେ ଶୁଣହେ ଧୃଷ୍ଟ
ସମରରେ ରଥ ଅର୍ଥ ଜ ହେଲ ଫାଲଗୁନ ।
ଜୟଦ୍ରଥ ଛନଭ୍ରାତ ସହସ୍ରରଥୀ କୁଲେ
ଭୀମ ସାତ୍ୟକ ଯାଇଣ ପଥେ ଉଗାଳଲେ ।
ବୃକୋଦର ଗଦାବର ଧରି ମହାବଳେ
ରଥ ଗଜ ଅଶ୍ୱପଟଳ ପିଟିଲେ ସକଳେ ।
ଗଦା ଉଡାବେ ପ୍ରସ୍ଥାଣ କରେ ଯେତେହେ ଶତ୍ରୁ
କଷ୍ଟଭଇ ଗଜ ରଥ ଭୀମ ମହାବାହୁ ।
ରଣରଙ୍ଗେ ଧଇଲେ ସେ ଭୀମ ବୀରବର
ଗଦାଘାତେ ରଥ ଗଜ କରିଦ୍ୟନ୍ତି ଚୂର ।
ହସ୍ତିରଥ ଦାସରଥ କାଶୀରଥ ତିନ
ଭୀମକୁଳେ ରଣକଲେ ଗଦାଯୁଧ ଘେନ ।
ଶର ଗଦା ଖଡ୍‌ଗ ଅସି ଘେନ ଦାସରଥ
ଭୀମକୁ ପ୍ରହାର କଲ ହୋଇ କୋପରତ ।
ଦେଖି ମାରୁତ ପାଳିଲେ ନିଜ ବାମଅଙ୍ଗ
ଭଜଯାନ୍ତେ ସର୍ବଅସ୍ତ୍ର ରଣେ ହେଲ ଭଙ୍ଗ ।
ରେରେକାର ଶବଦକୁ କରିଣ ମାରୁତ
ହସ୍ତିନାଥ ପ୍ରତେ ଗଦା ପିଟିଲେକ ଧାଇ ।
ଗଦା ପିଟନ୍ତେ ଫାଟିଲା ତାର ବଜ୍ରଦେହା
ରଥସହ ତାହା ଦେହ ହୋଇଗଲା ଚୂନା ।
ହସ୍ତିରଥର ମରଣେ କାଶୀରଥ ବେଗେ
ଗଦାଘେନ ପିଟିଲେକ ଭୀମସେନ ଅଙ୍ଗେ ।
ଗଦା ପିଟନ୍ତେ ଧଇଲା ବୀର ବୃକୋଦର
ସେହି ଗଦାକୁ ପିଟିଲା କାଶୀରଥ ପର ।
ଗଦା ପଡନ୍ତେ କାଶୀର କମ୍ପିଲା ସେ ପିଣ୍ଡ
ଢଳେ ପଡ଼ କାଶୀର ସେ ଚୂର୍ଣ୍ଣ ଖଣ୍ଡି ମୁଣ୍ଡ ।
କାଶୀରଥର ମରଣେ ବେଗେ କ୍ଷିରଷ୍ଟିଣି
ଦାସରଥ ଗଦା ଭୀମେ ପ୍ରହାରିଲା ପୁଣି ।
ବାମହସ୍ତ ପାତ ଭୀମ ଉଛୁଡିଲା ଗଦା
ତାର ସୈନ୍ୟକୁ ପିଟିଣ କରିଦେଲା ପଦା ।
ଦାସରଥକୁ ପିଟିଣ କଲା ନିଧନ
ନୃସିଂହପ୍ରାୟ ଗର୍ଜିଲେ ବୀରବର ଭୀମ ।
ତିନଙ୍କି ମାରିଣ ଭୀମ ହୋଇଲେକ ଶାନ୍ତ
ଗଦା ପ୍ରହାରେ ନାଶିଲା ଦଶସହସ୍ର ରଥୀ ।
ସିନ୍ଧୁ ରଜାର ଥିଲେକ ଯେତେ ବନ୍ଧୁବର୍ଗ
ସାତ୍ୟକର ପ୍ରହାରରେ ସର୍ବେ ଗଲେ ସ୍ୱର୍ଗ ।

ଦ୍ରୋଣ ଆଜ୍ଞା ଦେଲେ ସର୍ବଦିକୁ ଗଲ କର୍ଣ୍ଣ
ନବସହସ୍ର ରଥୀ ବୁଲେ ପାଞ୍ଚକ୍ଷୌଣୀ ସୈନ୍ୟ ।
ଲକ୍ଷେକ ଷଡଶୀ ହସ୍ତୀ ଲକ୍ଷେକ୍ଷୌଣୀ ଅଶ୍ୱ
ଏତେକ ଘେନିଣ କର୍ଣ୍ଣ ଥିବୁ ମୋର ପାଶ ।
ପାଣ୍ଡବଙ୍କ ସଙ୍ଗେ ଆମ୍ଭେ ଲେଟାଲେଟି ହେବେ
ଯୁଦ୍ଧ କରିବୁ ଶିଖଣ୍ଡୀ ବୀର ପ୍ରବର ବୁଲେ ।
ପାଞ୍ଚସହସ୍ର ଗଜ ଆଉ ପାଞ୍ଚସହସ୍ର ରଥୀ
ବୃନ୍ଦେ ଯୋଦ୍ଧା ବୃନ୍ଦେ ଅଶ୍ୱ ଉଣାଲକ୍ଷ ହସ୍ତୀ ।
ଏତେ ବଳ ଘେନ ବୋଲେ ମହାରଥୀ ଶଲ୍ୟ
ସମର କରିବୁ ଯାଇ ଦର୍ଦ୍ଧଷର ବଳ ।
ତିନ ଅୟୁତ ଯେ ହସ୍ତୀ ଅୟୁତେକ ରଥୀ
ସାତକୋଟି ଅଶ୍ୱାରୋହୀ କ୍ଷୌଣୀଏ ପଦାତି ।
ଏତେକ ସଇନ୍ୟ କୃପ ଆଚାର୍ଯ୍ୟ ଘେନିବ
ଧୃଷ୍ଟଦ୍ୟୁମ୍ନର ବୁଲେ ସମର କରିବ ।
ଅର୍ବ୍ବୁଦେକ ରଥ ଘେନ ଅର୍ବ୍ବୁଦ ଯେ ନାଗ
ଗୁଣ୍ଡପଗଣ୍ଡ ପଦାତି ପଗର୍ଦ୍ଧେ ତୁରଙ୍ଗ ।
ଏତେ ସୈନ୍ୟ ବୁଲେ ବାଲ୍ମୀକ ମହାରଥୀ
ସାତ୍ୟକ ବୁଲେ ସମର କରିବ ସବୁନ୍ତ ।
ଅୟୁତେକ ରଥ ଘେନ ଅୟୁତେ ଯେ ହସ୍ତୀ
ଗୁଣସହସ୍ର ଅଶ୍ୱାରୋହୀ ଅୟୁତେ ପଦାତି ।
ଦ୍ରୋଣାଚାର୍ଯ୍ୟ ଆଜ୍ଞା ଦେଲେ ଏତେସୈନ୍ୟଘେନ
ସହଦେବ ବୁଲେ ରଣ କରିବ ଶଲ୍ୟନ ।
ହେ ଚୈତନ୍ୟ ବୃନ୍ଦେ ରଥ ଘେନବୃନ୍ଦ ହସ୍ତୀ
ଗୁଣବୃନ୍ଦ ଅଶ୍ୱ ତିନ ସାଗର ପଦାତି ।
ଏତେକ ସୈନ୍ୟ ଘେନିଣ ବୀର ଦୁଃଶାସନ
ଭୀମସେନ ସଙ୍ଗତରେ କରିବ ଯେ ରଣ ।
ଏକ କ୍ଷୌଣୀ ଯୋଦ୍ଧା ଘେନ ଦୁର୍ମଦ ଯେ ଯିବ
ନକୁଳର ସଙ୍ଗତରେ ସମର କରିବ ।
ଶଙ୍ଖେ ରଥାରୋହୀ ଘେନ ଶଙ୍ଖେକ ପଦାତି
ଗୁରୁ ଶଙ୍ଖ ଅଶ୍ୱାରୋହୀ ଘେନ ଶଙ୍ଖ ହସ୍ତୀ ।
ଏତେକ ସୈନ୍ୟ ଘେନିଣ ବୀର ଅଲମ୍ବୁଷ
ସମର କରିବ ଘଟୋତ୍କଚର ପାଶ ।
ଘେନ ଅୟୁତେକ ଯୋଦ୍ଧା ଅଲାୟୁଧେ ଦେଲେ
ବିରାଟ ସହିତ ଯୁଦ୍ଧ କରିବୁ ବୋଇଲେ ।
ପଞ୍ଚାଶ ସାଗର ହସ୍ତୀ ତିନକ୍ଷୌଣୀ ରଥୀ
ସାଗରେ ଅଶ୍ୱ ସୋହ୍ଲା ଯେ ସାଗରେ ପଦାତି ।

ଏତେକ ସୈନ୍ୟ ଘେନିଣ ଦୁର୍ଯୋଧନ ଯିବ
ଯୁଧିଷ୍ଠିର ସଙ୍ଗତରେ ସମର କରିବ ।
ସୈନ୍ୟଭାଣ୍ଡି ଅକ୍ଷୌହିଣୀ ଯୋଦ୍ଧା ଗୁରୁଦ୍ରୋଣେ
ପାର୍ଥ ସଙ୍ଗେ ଯୁଝିବାକୁ ରଖିଲେ ଆପଣେ ।
ଏରୂପେ ସବୁଙ୍କୁ ସୈନ୍ୟ ବାଣ୍ଟି କରି ଦେଲେ
ଦୁଃସହ ପ୍ରତିଜ୍ଞା କରି ରଥରେ ବସିଲେ ।
ବାଜିଲା ଯେ ରଣଘୋଷ ଝମକ ଡାଉଣ୍ଡି
ସର୍ବଯୋଦ୍ଧା ଯେ ଯାହାର ରଥେ ଯାଇ ମଣ୍ଡି ।
ଯୁଧିଷ୍ଠି ବୋଇଲେ କହୁ ନ ମିଳେ ଉଚିତ
ଯୁଝି ଶୁଣିଲେ ରଣରେ ହତ ଜୟଦ୍ରଥ ।
ଚଢ଼ୁଁ ତାହାଙ୍କର ପିଟିଗଲା ମନେ ଭ୍ରାନ୍ତ
ବୋଇଲେ ପ୍ରତିଜ୍ଞା ସିଦ୍ଧ କରିଲେ ଶ୍ରୀପତି ।
ଶ୍ରୀକୃଷ୍ଣ ପାର୍ଥ ସାତ୍ୟକି ଆଉ ଭୀମସେନ
ସିଂହ ରଡ଼ିରେ କମ୍ପାଇ ଦେଲେ ଯୁଦ୍ଧସ୍ଥାନ ।
ହରି ବୋଇଲେ କି ବୁଦ୍ଧି କରିବା ହୋ ପାର୍ଥ
ପ୍ରତିଜ୍ଞା ରକ୍ଷା କରିଲୁ ମାରି ଜୟଦ୍ରଥ ।
ଏବେ ଯିବା ଚାଲ ଇନ୍ଦ୍ରପ୍ରସ୍ଥ ଗ୍ରାମକୁ
ପ୍ରଭାତ ହେଲେ ଆସିବ ରଣ କରିବାକୁ ।
କାଲି ପ୍ରଭାତେ ଆସିବା ଦଣ୍ଡବଳ ଘେନ
କି ରଣ କରିବା ଆଉ ହେଲାଣି ରଜନୀ ।
ଯିବା ଇନ୍ଦ୍ରପ୍ରସ୍ଥେ ଏବେ ସମର ଛାଡ଼ିଣ
ଏହା ଶୁଣି କମ୍ପିଲା ଯେ ବୃକୋଦର ଦେହ ।
ଗୋବିନ୍ଦ ବୋଇଲେ ରହ ରହ ବୃକୋଦର
ଚାଲ ଇନ୍ଦ୍ରପ୍ରସ୍ଥେ ଯିବା ନ କର ସମର ।
ଭୀମ କହିଲେକ ଶୁଣ ପ୍ରଭୁ ଦେବରାଜ
ରଥେ ବସି ରହ ଯୁଦ୍ଧ ଦେଖ ମୋର ଆଜ ।
କେବଳ ସହାୟ ମୋତେ ହୋଇଥିବ ହରି
ମାରିବ କୌରବବଳ ନ ପାହୁ ଶର୍ବରୀ ।
ବଳେ କର ଅର୍ଜୁନକୁ ଘେନ ଇନ୍ଦ୍ରପ୍ରସ୍ଥ
କେବଳ ସାତ୍ୟକି ଥାଉ ମୋହର ସଙ୍ଗତ ।
ଦ୍ରୌପଦୀ କେଶ ବାନ୍ଧିବ ଦୁଃଶାଳୁ ଦେଖିଲେ
ଶତେ ଭାଇଙ୍କି ମାରିବ ଯୁଧିଷ୍ଠି ବୋଇଲେ ।
ପାଞ୍ଚଲକ୍ଷ ଯୋଦ୍ଧା ଘେନ ଦୁର୍ଦ୍ଧର୍ଷ କୁମର
ସମର କରିବା ପାଇଁ ହୋଇଲେ ବାହାର ।
ଭାରତ ସମରେ ରଣ ବଡ଼ଲଢ଼ା ବହୁ
ଲକ୍ଷେକ ରାଜା ମଧ୍ୟରେ ମହିମା ତା ସାଧୁ ।

ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ରାଜ ସେ ଘଞ୍ଚାର
ଶଙ୍ଖ ନାଦର ସଙ୍ଗତେ ଚଉଷଠିର ବାଜ ।
ଏ ସର୍ବ ଯୋଦ୍ଧା ଭାଇଲେ ପିମ୍ପୁଡ଼ିବେ ବସି
ନେ ତାହା ସଙ୍ଗେ ଯୁଝିବ ସମରରେ ପଶି ।
ଯୁଧିଷ୍ଠିର ବୋଇଲେକ ସହଦେବ ଶୁଣ
ମୋହର ଭାଗେ ରହିଲା ରାଜା ଦୁର୍ଯୋଧନ ।
ସହଦେବଙ୍କ ଉତ୍ତର କୁମର ବୋଇଲା
ମୋର ଭାଗେ ଦେବ ଦୁଃଶାସନ ଯେ ରହିଲା ।
ଶିଖଣ୍ଡୀ ଚଣ୍ଡି ବୋଇଲା ସହଦେବ ଆଗେ
ସେନାପତି କର୍ଣ୍ଣ ଦେବ ରହିଲା ମୋ ଆଗେ ।
ଧୃଷ୍ଟଦ୍ୟୁମ୍ନ ବୋଲେ ସହଦେବଙ୍କ ଆଗରେ
ଦ୍ରୋଣ ମହାରଥୀ ହେଲା ମୋହର ଭାଗରେ ।
ପୁଣି ମନ୍ତ୍ରୀଙ୍କି କହିଲେ ଚଉଷଠିର ରାଜ
ମୋହର ଭାଗେ ରହିଲେ ବୀର କୃପାଚାର୍ଯ୍ୟ ।
ଯୁଧିଷ୍ଠିଙ୍କ ଆଗେ ଘଟୋତ୍କଚ କହିଲା
ଅଳମ୍ବୁଷ ରାକ୍ଷସ ମୋ ଭାଗରେ ରହିଲା ।
ଏପରି ଭାଗ କରି ସର୍ବେ ପଶିଲେ ସମରେ
ଶିଖଣ୍ଡି ମିଳିଲା ଯାଇ କୃଷ୍ଣର ଗ୍ରାମରେ ।
ଲକ୍ଷୀଭାଳ ମହାଘୋର ଶୁଭଇ ଚହଳ
ନ ଚହ୍ନି କେ କାହା ବୁଲେ କରିଲେକ ଘେର
କୋଟିଏ ସୈନ୍ୟ ଘେନିଣ ହିଡ଼ିମ୍ବିଙ୍କ ସୁତ
ସମର କଲାକ ଅଳମ୍ବୁଷର ସଙ୍ଗତ ।
ଅର୍ଜୁନ ବୋଇଲା ଦେବ ଶୁଣ ଚକ୍ରଧର
କର୍ଣ୍ଣ ବାହୁଡ଼ିଣ ଯିବା କରିବା ସମର ।
ଆରେରେ ପାଣ୍ଡବ ବୋଲି ଡାକୁଛନ୍ତି ଦ୍ରୋଣ
ଶୁଣି କ୍ଷତ୍ରୀ ଅଙ୍ଗେ ଦେବ ରହଇ କି ପ୍ରାଣ ।
ଯଦ୍ୟପି ସମରେ ଆମ୍ଭେ ଯିବା ଅପସରି
ମାରିବେ ଆମ୍ଭଙ୍କୁ କଉରବ ଦଣ୍ଡଧାରୀ ।
ଅର୍ଜୁନ ବୋଇଲେ ଦେବ ନ ସହିବା ଏହା
କରିବ ଘୋର ସମର ରଖେ ରଥବାହା ।
ଅର୍ଜୁନ ବଚନ ଶୁଣି ଦେବ ଶିରୀରଙ୍ଗ
ବାହନ୍ତ ଅଶ୍ୱମାନଙ୍କୁ ପବନହୁଁ ବେଗ ।
ରଣ ଭିତରେ ବାହିଲେ ରଥ ନନ୍ଦିଘୋଷ
କପିକେତନ ଦେଖିଣ ସର୍ବେ କଲେ ତ୍ରାସ ।
ଶୁଭଇ ଗାଣ୍ଡୀବ ଗୁଣଘୋଷ ଘୋରନାଦ
ଯୁଧିଷ୍ଠି ଶୁଣିଲେ ଗୁଣ ଟଙ୍କାରର ଶବ୍ଦ ।

ସ୍ୱାନନ୍ଦେ ମୁହିଁ ଦ୍ରୁପଦ ନିକଟରେ ମୁଖ
ମନ୍ତ୍ରୀକୁ ପୁଚ୍ଛିଲେ କ୍ଷେମେ ଅଛୁ ନା ନିବସ୍ତ ।
ଶୁଣିଲି ମୁଁ ଗାଣ୍ଡୀବର ଗୁଣଘୋଷ ବାଣୀ
ହୃଦୟ ବିଷାଦ ମୋର ଘୁଞ୍ଚିଲା ସେକ୍ଷଣି ।
ରଣରଙ୍ଗ ହାନ୍ଦୋଳାରେ ପଶିଛୁ କପିଟି
ଏଣୁ ଜଣାଜାଣେ ଯାଇ ପାରବ କି ଭେଟି ।
ଏକାକଣ ମୁହିଁ ଯେବେ ଭେଟିବ ପାର୍ଥକୁ
ଭ୍ରାନ୍ତ ଫିଟିବ ମୋହର ଦେଖିଲେ ତାହାକୁ ।
ଏତେକ କହିଣ ସେ ଚଳାଇଲେ ଥାଟ
ତଣ୍ଡକେ ପ୍ରବେଶ ହେଲେ ସମର ନିକଟ ।
ଶୁଣିଲେ ଭୀମସେନର ମୁଖରଡ଼ ଧ୍ୱନି
ଯୁଧିଷ୍ଠିରେ ଆନନ୍ଦ ହେଲେ ତାହା ଶୁଣି ।
ଭୀମସେନ ବର୍ତ୍ତିଅଛୁ ମୋହର କୁଶଳେ
ଯୁଧିଷ୍ଠି କହନ୍ତି ଏତେ ବାକ୍ୟ ମହାକ୍ଷେଳେ ।
ଜଣାରେ ପ୍ରମତ୍ତ ହୋଇ ଅସୁର ସଇନ
ପ୍ରହାର କରନ୍ତି ରଣେ ଶାଳ ଶିଳ ସେନ ।
ଏକକୁ ଆଟଇକ ଦୈତ୍ୟଙ୍କର ମହାବଳୀ
ମନୁଷ୍ୟ ସୈନ୍ୟକୁ ସେ ଯେ ଦେଉଛନ୍ତି ଗିଳି ।
ଅସଂଖ୍ୟ ଗଜ ସଇନ ସ୍ୟନ୍ଦନ ସହିତେ
କୁଣ୍ଡ ବିସ୍ତାର କରନ୍ତି ନେଇ ଗର୍ଭଗତେ ।
ଛେଳି ତକ୍ଷ ଶର ବିନ୍ଧୁଛନ୍ତି ଯେତେ ବାଣ
ସମସ୍ତ ପଶଇ ଯାଇ ଅସୁର ଗର୍ଭେଣ ।
ହେ ଚୈତନ୍ୟ ବୃନ୍ଦାବନ ରାଜା ଅଂଶୁମାଳି
ବହୁଥାଟ ସେନ ଘଟୋତ୍କଚକୁ ଉଗାଳି ।
ତନ୍ତ୍ରକା ଦେଶର ରାଜା ନାମ କୃତକେଶୀ
ନବଲକ୍ଷ ରଥୀ ସେନ ଘଟକୁ ଆକ୍ରୋଶି ।
ଯାଉଛନ୍ତି କଉଣପେ କୋପେ ଗଳଗାଜ
ଯେ ମୁଖେ ପଡ଼ନ୍ତି ତାକୁ ଗିଳନ୍ତି ଗରଜ ।
କୋଇଲା କର୍ଣ୍ଣ ସାରଥି ନାମ ସୁରସେନ
ଘଟୋତ୍କଚ ସଂହରିଲା କଉରବ ସୈନ୍ୟ ।
ତୋତେ ଇନ୍ଦ୍ର ଦେଲା ଯେଉଁ ବଜ୍ରର ଶକତି
ତାହା ଘେନ ଘଟୋତ୍କଚେ ମାରନ୍ତ କନା ଧାଡ଼ି ।
ସାରଥିର ମୁଖୁଁ ଶୁଣି ବୋଇଲେ ରାଧେୟ
କେତେକ ପେଷିବ କହୁଛନ୍ତି ଶତରାୟ ।
ତାହାଙ୍କ ସମ୍ମୁଖେ ମୁଁ ଯେ କରିଅଛୁ ସତ୍ୟ
ଏ ଶକତରେ ମାରିବ ମୁହିଁ କୃଷ୍ଣ ପାର୍ଥ ।

କର୍ଣ୍ଣ ବୋଇଲା ସାରଥି ରଥ ଆଡ଼ କର
ଅସୁରର ଯୁଦ୍ଧେ କସ ପ୍ରୟୋଜନ ମୋର ।
ସାରଥି ରଥ ତାହାର ନେଲା ଆଡ଼କର
ଦେଖିଲା ଆସଇ ଭୀମ ତେଣେ ସୈନ୍ୟ ମାରି ।
ସାରଥି ବୋଇଲା ଆସେ ରଣରଙ୍ଗୀ ଭୀମା
ଏହାର ସମ୍ମୁଖେ କସ ଅଛଇ ଗାରିମା ।
ଏହା କହୁ ରଥ ଆଡ଼ କରିଲା ସାରଥି
ଭୀମ ମାଇଲେକ ତେଣେ ପାଞ୍ଚଶତ ରଥୀ ।
ସହସ୍ରେକ ତୁରଙ୍ଗମ ପାଞ୍ଚଶତ ନାଗ
ମାରି ଲୁଡ଼ ଲୁଡ଼ କଲା କରି ରଣରଙ୍ଗ ।
ମନ୍ଦ୍ରତ ଦେଶ ରାଜାର ଯୁଗଳ କୁମର
ବେନଲକ୍ଷ ଶ୍ୱେତଅଶ୍ୱ ତୁଲେଣ ତାହାର ।
ମହାସମରରେ ପଶି ମନ୍ଥିଲେକ ଥାଟ
କେ କେଣେ ଯୁଝୁଛି ଚହିଁ ନ ପାଇଲେ ବାଟ
ଦକ୍ଷିଣ କୋଶଳ ରାଜା ଯା ନାମ ଭୂମନ୍ୟୁ
ରକ୍ଷ ଭକ୍ଷ ବୋଲକରି ତାର ବେନସୂନୁ ।
ଦୁହିଙ୍କର ତୁଲେ ପଞ୍ଚ ମର୍ଭୂ ଭେକ ନାଗ
ସମରେ ହୋଇଲା ଯାଇ ଦୁର୍ଦ୍ଧକ୍ଷର ଆଗ ।
ଶନୁମନ୍ଥର ଅଟନ୍ତି ସେହି ବେନଭ୍ରାତ
ଦୁର୍ଯ୍ୟୋଧନର ଏ ଶଳା ମହା ବଳବନ୍ତ ।
ସେନ ତୋମର ଗୁରୁଜ ଅସିଗଦ୍ଧ ଜାଠି
ଦୁର୍ଦ୍ଧକ୍ଷର ଉପରକୁ ଏକମୁଖେ ଉଠ ।
ଦୁର୍ଦ୍ଧକ୍ଷର ସଇନଏ ଏକମୁଖ ହୋଇ
ରକ୍ଷ ଭକ୍ଷକୁ ବେଢ଼ିଲେ ଅତିବେଗେ ଯାଇ ।
ବାଣ ବିନ୍ଧନ୍ତେ ପଡ଼ଇ ଯେହ୍ନେ ବର୍ଷାଧାର
ଲଉଲଜ ଧଜଧ୍ୱଜା ହୋଇଲା ଅନ୍ଧାର ।
ଅନ୍ଧାର ହୋଇଲା ଯହୁଁ କଲେ ମହାଘୋଳ
ଗାନ୍ଧାରୀ ସୁତ ଦୁର୍ଦ୍ଧକ୍ଷ ଅପ୍ରମିତ ବଳ ।
ଦ୍ୱିଶାଖା ଅସ୍ତ୍ରକୁ ସେହୁ କରିଣ ପ୍ରହାର
ଭୂମନ୍ୟୁ ଦୁଇପୁତ୍ରଙ୍କୁ କରିଲେ ସଂହାର ।
ପୁଣ ପ୍ରହାର ବଳକ କରେ ଖଣ୍ଡା ଘେନ
ତୁଳଇ ନାଶ କରିଲା ବହୁତ ସଇନ ।
ଗାନ୍ଧାରୀର ନନ୍ଦନ ଯେ ରଣେ ଅନର୍ଗଳ
ସହସ୍ର ଶର ବିନ୍ଧିଲା ଯହିଁଯୁ ଶାର୍ଦ୍ଦୂଳ ।
ପୁଣି ଗୋଡ଼ାଇ ହାଣଇ ଧରିଣ କୃପାଣେ
ଦଶଦଂଶ ତରିଶ ଯେ ପଡ଼ୁଛନ୍ତି ରଣେ ।

ଯ୍ବା ଦେଖି କୋଶଳ ରାଜା ସୈନ୍ୟବଳ ଘେନ
ଚଳାଇଲା ଥାଟକୁ ସେ କର ଭେରେଧ୍ୱନ ।
ଥାଟ ଆସିବା ଦେଖିଣ ବୀର ବୃକୋଦର
ରଣରଙ୍ଗେ ମାତିଲା ସେ ସାତ୍ୟକି ସଙ୍ଗର ।
ଗଦାବରକୁ ବୁଲାଇ ପଶିଲା ସମରେ
ନ ଚହ୍ନିଣ ଗୋଳ କଲା ଆପଣା ଥାଟରେ ।
ଭୀମ ରଡ଼ଶବ୍ଦ ଶୁଣି ସହଦେବ ବୋଲେ
ଭୀମ ଠାକୁର ଆସିଣ ରଣେ ଭଜେ କଲେ ।
ସହଦେବ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଦୁର୍ଦ୍ଦକ୍ଷ
ଅଶ୍ୱ ଚଢ଼ି ବାହାଥିଲେ ଭୀମସେନ ପାଶ ।
ଦୂରୁ ଡାକ କହିଲେକ ମନ୍ତ୍ରୀ ଚୂଡ଼ାମଣି
ଗଦା ସଂହାରିବା ଦେବ ଭାଳବର ପାଣି ।
ଉଚେ ଡାକ ଦେଉଁ ଦେଉଁ ସହଦେବ ମନ୍ତ୍ରୀ
ମାଇଲା ପଞ୍ଚାଳ ଦେଶ ପଞ୍ଚବଂଶ ରଥୀ ।
ସାତ୍ୟକି କହିଲା ରହି ସହଦେବ ମୁଖ
ଆନର ଆଡ଼ କରିଣ ସୈନ୍ୟବଳ ରଖ ।
ବସଜଇ ବଧୂସାସ୍ତ ଉର୍ଦ୍ଧ୍ୱ ଧନୁଧ୍ୱଜ
ପୁଣି ଏହାକୁ ମାଇଲେ ପବନ ଆତ୍ମଜ ।
ହେ ଚୈତନ୍ୟ ଏସନକ ସବ୍ୟଯୁଦ୍ଧ କଥା
ମାଇଲା ନଜର ବଳ ଭୀମ ବଳବନ୍ତା ।
ଶତସଂଖ୍ୟକ ଯେ ଯୋଦ୍ଧା କେତେଶତ ହସ୍ତୀ
ବାଆସ୍ତର ପାଞ୍ଚବନ୍ତ ଅର୍ବୁଦେ ପଦାତି ।
ଧୃଷ୍ଟଦ୍ୟୁମ୍ନ ତାକୁ ତାକୁ ଭୀମ କ୍ଷଣକରେ
ଏତେ ସୈନ୍ୟଙ୍କୁ ମାରିଣ ଫିଙ୍ଗିଲା ମଧ୍ୟରେ ।
ସାତ୍ୟକି ତା ପାଶେ ଯାଇ ବୋଲେ ରହ ଭୀମ
ଯୁଧିଷ୍ଠିରଦେବ କହିଲେ ନ କର ସଂଗ୍ରାମ ।
ଅକାରଣେ ନିଜ ସୈନ୍ୟ କରିଲ ବିନାଶ
ରଥ ତେଜ ଯୁଧିଷ୍ଠିର ନିକଟକୁ ଆସ ।
ଏହା ଶୁଣି ବ୍ୟସ୍ତ ହୋଇ ପାଣ୍ଡବସୁନ୍ଦର
ଯୁଧିଷ୍ଠି ପାଖକୁ ଯାଇ କଲେ ନମସ୍କାର ।
ଯୁଧିଷ୍ଠିର କହିଲେକ ଭୀମକୁ କୁଣ୍ଢାଇ
ନ ଦେଖି ତୁମ୍ଭଙ୍କୁ ମୋର ମନ ସୁଖ ନାହିଁ ।
ଆରେ ବାବୁ ଭୀମ ମୋତେ ଭେଟାଅ ଅର୍ଜୁନ
ହୃଦୟ ବେଳୁଁ ଯାଉ ସୁସ୍ଥ ହେଉ ମନ ।
ଭୀମ ଶୁଣି ଆଗେ ଗଲେ ପଛରେ ଯୁଧିଷ୍ଠି
ସୈନ୍ୟଙ୍କୁ ଆଡ଼ କରିଣ ଭେଟିଲେ କପଟି ।

ସନ୍ଧିଧେ ପ୍ରବେଶ ହୁଅନ୍ତେ ଧର୍ମଙ୍କ ନନ୍ଦନ
ରଥେ ଥାଇ ଲକ୍ଷିପାତ କଲେ କୃଷ୍ଣାର୍ଜୁନ ।
ଲାଗିଲାକ ଅନର୍ଥ୍ୟାପ ବାର୍ଷି ଘୋଳଯୁଦ୍ଧ
ରଥୀ ପଦାତି ଅସଂଖ୍ୟ ହେଲେ ତହିଁ ବଧ ।
ରଥୀ ଗଜାରୋହୀ ଅଶ୍ୱ ଆବର ପଦାତି
ଘୋଳ ଯୁଦ୍ଧରେ ପଡ଼ଣ ମଲେ ବହୁକ୍ଷକ୍ଷୀ ।
ପର କି ଆପଣା ବୋଲି ନ ଯାଇ ବାରଣ
ଦ୍ରୁପଦ ଆସନ୍ତେ ତହିଁ ଦେଖିଲେ ଯେ ଦ୍ରୋଣ
ପଞ୍ଚଦଶ ପାରଦନ୍ତି ଦ୍ରୁପଦର କୁଳେ
ଦ୍ରୋଣଙ୍କ ସମ୍ମୁଖେ ଯନ୍ତୁଁ ସେ ଆସି ମିଳଲେ ।
ଖେଳିଲା ବ୍ୟାଘ୍ର ଯେସନ ଛାଟୁ ନ ଛଗରେ
ପାଇଲେ ନକ୍ଷେଁ ମାରଇ ଯେ ପଡ଼େ ଆଗରେ
ସେହିପରି ଦ୍ରୁପଦଙ୍କୁ ସେନାପତି ଦ୍ରୋଣ
ବାଛି ବାଛି ବିନ୍ଧିଲେକ ପଞ୍ଚଷଠି ବାଣ ।
ତାରି ସେ ବାଣ ପଡ଼ନ୍ତେ ଯୋଦ୍ଧା ପଞ୍ଚଷଠି
ଖଡ୍ଗେ ସେମାନଙ୍କ ଶିର ଦ୍ରୋଣ ନେଲେକାଟି
ପୁଣି ନାରାଚ ଯୁଗଳ ବିନ୍ଧନ୍ତେ ସଇନ
ଗଣ୍ଡି ମୁଣ୍ଡ ଛିଣ୍ଡି ବହୁ ପଡ଼ିଲେ ଅବନୀ ।
ସୈନ୍ୟଙ୍କ ବିନାଶ ଦେଖି ଦ୍ରୁପଦ ଈଶ୍ୱର
ବହୁ ନାରାଚ ବିନ୍ଧନ୍ତେ ଦ୍ରୋଣଙ୍କ ଉପର ।
ଅଭେଦ୍ୟ ସେନା ଅଛଇ ଦ୍ରୋଣଙ୍କ ଶରୀରେ
ଶର ନ ଭେଦ ଖସିଣ ପଡ଼ଇ ଭୂମିରେ ।
ଦ୍ରୋଣପୂର୍ତ୍ତ ଯା ବିନ୍ଧନ୍ତି ଅବ୍ୟର୍ଥ ସେ ଶର
ଯାହାପରେ ପଡ଼େ ସେହି ନ ପାଏ ନିସ୍ତାର ।
ପଞ୍ଚାଳର ଯୋଦ୍ଧାମାନେ ହୋଇଯାନ୍ତେ ଶେଷ
ଗଜ ଆରୋହି ଦ୍ରୁପଦ ସମରେ ପ୍ରବେଶ ।
ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ତେଣେ ଯୁଝୁଛନ୍ତି
ଦ୍ରୋଣ ଦ୍ରୁପଦଙ୍କ ଯୁଦ୍ଧ କେହି ନ ଜାଣନ୍ତି ।
ଗଜ କନ୍ଧରେ ବସିଣ ସେ ପଞ୍ଚାଳେଶ୍ୱର
ଧନୁ ଧରି ମହାକ୍ରୋଧେ କରଇ ସମର ।
ଦ୍ରୋଣ ପ୍ରହାର କରିଲେ ଶର ପଞ୍ଚମୁନା
ସେ ଶର ଭେଦିଲା ଯାଇ ପଞ୍ଚାଳର ସେନା ।
ଝୁମ୍ବୁଳ ନାରାଚ ଯେନ ବିନ୍ଧିଲା ଦ୍ରୁପଦ
ଦ୍ରୋଣଙ୍କର ସାରଥିର ମୁଣ୍ଡ କଲା ଛେଦ ।
ବରଅ ହୋଇ ଦ୍ରୋଣ ସ୍ୱହିଁଇ ଚଗଟି
ଗଜ ଅଶ୍ୱଆଦ ନାହିଁ ତେଜ ସେ ରଥଟି ।

ଧାମନ୍ତ ଯେ ଦ୍ରୋଣଗୁରୁ ହୋଇ କୋପମୂର୍ତ୍ତି
ବଜସ୍ମ ଭର୍ଣ୍ଣ କଟାରି ମାଇଲେ ତଡ଼ିତ ।
ମହାରାଜ ଗଢ଼ିଥିଲ ଦ୍ରୁପଦ ଭୂପାଳ
ଦ୍ରୋଣ ଖଡ୍‌ଗଘାତେ ଛୁଟେ ହସ୍ତୀ କୁମ୍ଭସ୍ଥଳ
ବାହନ ବିହୀନ ହୋଇ ପଞ୍ଚାଳ ଈଶ୍ୱର
ଦ୍ରୋଣଙ୍କ ପ୍ରହାର କଲା ଯେନ ଅସିବର ।
ଦ୍ରୋଣ ପ୍ରହାର କରିଲେ ଖଡ଼୍ଗେକ ଯେନ
ବେନ ଖଡ୍‌ଗ ପରତାପେ ଉଠିଲା ବହନ ।
ଦ୍ରୁପଦ ରଜାର ଯହୁଁ ଖଣ୍ଡାଗଲା ଜଜ
ଭରଦ୍ୱାଜଙ୍କ ନନ୍ଦନ ଧାଏଁ ଗଜରାଜ ।
ପଳାଇ ଯାଉଣ ଥିଲା ଦ୍ରୁପଦ ଭୂପାଳ
ଆକର୍ଷି ଧଇଲେ ପଛୁ ଦ୍ରୁପଦର ବାଳ ।
ଖଡ୍‌ଗ ବୁଲାଇ ପ୍ରହାର କଲା ଯହୁଁ ଦ୍ରୋଣ
ଦ୍ୱିଖଣ୍ଡ ହୋଇ ପଡ଼ିଲା ଦ୍ରୁପଦ ରାଜନ ।
ସମରେ ନିଧନ ହେଲେ ପାଞ୍ଚାଳୀର ପିତା
ମୁଣ୍ଡ ଦେଖିଣ ଚହଲିଲେ ଦ୍ରୋଣ ବଳବନ୍ତା ।
ଦ୍ରୁପଦର ମୁଖ ଦେଖି ହରଷ ହୋଇଣ
ଶିରେ କରମାରି ବହୁ କରିଲେ ସ୍ପନ୍ଦନ ।
କେ ବଇବ ଏତେକାଳେ କଲୁ ମୋତେ ଏହା
ମଇତ୍ରକୁ ବଧିଲି ମୁଁ ଅଜ୍ଞାନ ହୋଇ ଏହା ।
ପ୍ରାଣରୁ ଅଧିକ କରି ପାଳିଥିଲି ତୋତେ
ଇଷ୍ଟା କରିଲି ତଣ୍ଡକ କରଷ ପର୍ଯ୍ୟନ୍ତେ ।
ପୋଡ଼ୁ ପୋଡ଼ୁ ଷ୍ଟକ୍ଷୀ ବୁଦ୍ଧି ମୋହର ସଂଗ୍ରାମ
କ୍ଷଣକରେ ନାଶଗଲା ବନ୍ଧୁକାଳ ଧର୍ମ ।
କୃପାଚାର୍ଯ୍ୟ ବୋଇଲେକ ଆହେ ଦ୍ରୋଣଗୁରୁ
ଭଣ ଉପେକ୍ଷିଣ କର୍ପା ସ୍ପନ୍ଦନ ବୁ କରୁ ।
ଦ୍ରୋଣ ତହୁଁ ବୋଇଲେକ ଶୁଣ କୃପାଚାର୍ଯ୍ୟ
ମିତ୍ରକୁ ବଧ କଲି ମୁଁ ସଂଗ୍ରାମରେ ଆଜ ।
କୃପ ତାଙ୍କୁ ବୋଇଲେକ ଶୋକ ପରିହର
ବିବାଦ କରି ରହୁଛ କି ବନ୍ଧୁ ସୋଦର ।
ଭୀମ ନନ୍ଦନ କରଣ ଆସୁଅଛୁ ଥାଟ
ତୋତେ ଭେଟିଲେ ଏକ୍ଷଣି ହେବ ମୁଣ୍ଡକାଟ
ଯେ ମଲା ତାହାର କଥା ଭାବିଲେ କି ହେବ
କୃପ ବାକ୍ୟେ ଦ୍ରୋଣଗୁରୁ ହେଲେ ଶାନ୍ତଭାବ
ସଞ୍ଜୟଙ୍କୁ ପୁଚ୍ଛାକଲେ ଧୃତରାଷ୍ଟ୍ର ରାଜ
କହି ଯୁଦ୍ଧ କଥା ମନ୍ତ୍ରୀ କହ ମୋ ଆଗର ।

ସଞ୍ଜୟ ବୋଇଲେ ଶୁଣ ଅମ୍ବିକାର ସୁତ
ଆଜ ଯୁଦ୍ଧେ ଦ୍ରୋଣ କଲେ ଦ୍ରୁପଦକୁ ହତ ।
ମିତ୍ରକୁ ମାରି କରିଲେ ବହୁତ ସନ୍ତାପ
ଶାନ୍ତ ହୋଇଲେ ବୁଝାଇ କହିବାରୁ କୃପ ।
ଧୃତରାଷ୍ଟ୍ର ବୋଲେ କହ ଏଥିର କାରଣ
କେଉଁ ହେତୁରୁ ବଳାପ କଲେ ଗୁରୁଦ୍ରୋଣ ।
ସଞ୍ଜୟ କହିଲା ଏକ କସ୍ୱତ ଈଶ୍ୱର
ଦ୍ରୁପଦକୁ ଜିଣି ନେଲା ତାହାର ନଗର ।
ରାଜ୍ୟ ଛାଡ଼ି ପଳାଇଲା ସେ ଦ୍ରୁପଦ ରସ୍ତେ
ତୀର୍ଥବାସୀ ହୋଇଥିଲେ କସ୍ୱତର ଭୟେ ।
କାଶୀନଗରରେ ଥିଲେ ସେ ଦ୍ରୋଣ ଆଚାର୍ଯ୍ୟ
ସେଠାରୁ ଯାଇଁ ଭେଟିଲେ ଦ୍ରୁପଦର ରାଜ ।
ଦ୍ରୋଣକୁ ପ୍ରଣାମ କରି ରାଜା ଉଭା ହେଲେ
କେଉଁ ଦେଶେ ଘର ତୋର ଦ୍ରୋଣ ପଚାରିଲେ
ଦ୍ରୁପଦ ବୋଇଲା ମୁଁ ଯେ ପାଞ୍ଚାଳ ନରେନ୍ଦ୍ର
ନେଲା ମୋ ସମ୍ପଦ ହଳେ ସେ କସ୍ୱତଇନ୍ଦ୍ର ।
ହତଭାଗ୍ୟ ହୋଇଣ ମୁଁ ଭ୍ରମୁଅଛୁ ତୀର୍ଥ
ମୋ ନାମ ଦ୍ରୁପଦ ମୁହିଁ ପାଞ୍ଚାଳର ନାଥ ।
ଆମ୍ଭ ନାମ ଦ୍ରୋଣ ତୁମ୍ଭ ନାମ ଯେ ଦ୍ରୁପଦ
ଏକାକ୍ଷର ହେଲା ଯେଣୁ ହୋଇଲ ସୁହୃଦ ।
ଦ୍ରୋଣ ଦ୍ରୁପଦ ଦୁହିଙ୍କ ବଢ଼ିଲା ପୀରତି
ସବୁ ସଇନ୍ୟଙ୍କୁ ଦ୍ରୋଣ ନିତ ଅନ୍ନ ଦିଅନ୍ତି ।
ଯେତେକ ଯୋଗାଡ଼ମାନ ଲଗେ ରାଜବିଧି
ବିଧି ଅନୁସାରେ ଦ୍ରୋଣ ଦେଉଥାନ୍ତି ରାନ୍ଧି ।
ରାଜା ରହିଲା ତଉଦ ବର୍ଷ ପର୍ଯ୍ୟନ୍ତେ
ଭିକ୍ଷାମାଗି ଦେଉଥାନ୍ତି ଆଣି ଦ୍ରୋଣ ନିତ୍ୟେ
କସ୍ୱତ ରାଜ୍ୟକୁ କଳ୍କ ରାଜା ଯେ ବାହିଲା
ପାଞ୍ଚାଳ ଛାଡ଼ି କସ୍ୱତ ନିଜ ରାଜ୍ୟେ ଗଲା ।
ପଞ୍ଚ ନରେଶରୁ କେହି ଲୋକ ଦେଶେ ଯାଇ
କୁଶଳ ବାରତା ଦେଲା ଦ୍ରୁପଦକୁ କହି ।
ହସ୍ତ ଯୋଡ଼ିଣ ଦ୍ରୁପଦ ଦ୍ରୋଣକୁ କହିଲା
ପାଞ୍ଚାଳ ଛାଡ଼ି କସ୍ୱତ ସ୍ୱଦେଶକୁ ଗଲା ।
କେ ମଇତ୍ର ମୋ ରାଜ୍ୟକୁ ଏବେ ଚାଲ ଯିବା
କସ୍ୱତ ଛାଡ଼ି ଗଲାଣି ସେଠାରେ ରହିବା ।
ଧର୍ମପ୍ରେକ ମୋ ରାଜ୍ୟରେ ଭୁଞ୍ଜ ଐଶ୍ୱର୍ଯ୍ୟ
ଦାସ ହୋଇ ଖଟିଥିବ ଚାଲ ମିତ୍ର ଆଜ ।

ଦ୍ରୋଣ ବୋଇଲେକ ଏବେ ଯାଅ ବୋ ମଇତ୍ର
ରାଜ୍ୟ ସୁଖଧାନେ ପାଳ ସେନ ପରଜାନ୍ତ ।
ଅବଶ୍ୟ ଯିବ ମଇତ୍ର ତୁମ୍ଭର ରାଜ୍ୟକୁ
ନପୂର୍ଣ ହେ ପ୍ରାଣବନ୍ଧୁ ପାସୋର ଆମ୍ଭଙ୍କୁ ।
ଦ୍ରୁପଦ ବୋଇଲେ ତୁମ୍ଭେ ମୋର ପ୍ରାଣବନ୍ଧୁ
ତୋ ଅନ୍ନ ଖାଇ ତରିଲ ଏ ବିପଦ ସିନ୍ଧୁ ।
ଏପରି ବିନୟେ କହି ଦ୍ରୋଣକୁ ଭୂପାଳ
ନିଜ ରାଜ୍ୟରେ ପ୍ରବେଶ ହେଲା ତତକାଳ ।
ହେ ନରେଶ ଦ୍ରୋଣ ଭାର୍ଯ୍ୟା କୃପୀ ମହାସତୀ
ସାତମାସ ହୋଇଥିଲା ସେହୁ ଗର୍ଭବତୀ ।
ମଳକଣ୍ଟକ ବ୍ୟାଧି ଯେ ତାହାକୁ ହୋଇଲା
ତେଣୁ ଗର୍ଭଭାର କୃପୀ ସହି ନ ପାରିଲା ।
ସେହି ବ୍ୟାଧି ଯୋଗେ ସତୀ ତେଜିଲା ପରାଣ
ନଖେ କୃପୀ ସତୀଙ୍କର ପେଟ ଚିରି ଦ୍ରୋଣ ।
ପେଟ ମଧ୍ୟରୁ ପୁଅକୁ ଯତନେ କାଢ଼ିଲେ
ମୃତପିଣ୍ଡ ଗୋଟି ନେଇ ଗଙ୍ଗାରେ ମେଲିଲେ
ପୁଅକୁ କାଢ଼ିବାବେଳେ ମାତା ଅସ୍ତ୍ର ଥିଲେ
ଅଶ୍ୱତ୍ଥାମା ନାମ ତାର ଦ୍ରୋଣ ତେଣୁ ଦେଲେ
ଚିନ୍ତିଲେ ମାତୃହୀନ ସେ ଶିଶୁକୁ ଦେଖି
ଅନ୍ନ ନ ଯୋଗାଏ ଯା'କୁ ବଞ୍ଚିବ କି ଭକ୍ଷି ।
ଯାହାକୁ ରଖନ୍ତି ହରି ମାରିପାରେ କିଏ
ଦ୍ରୋଣ ବଞ୍ଚାଇଲେ ତାକୁ କୌଣସି ଉପାୟେ
ଦିନେ ଦ୍ରୋଣ ବିଚାରିଲେ ଦ୍ରୁପଦ ମୋ ମିତ୍ର
ଏ ବିପଦ କାଳେ ଯିବି ତାହାର ଅଗ୍ରତ ।
ଆସନ ଗୋଟିଏ ଦୁଗ୍ଧବତୀ ଗାଈଟିଏ
ମାଗି ନେଲେ ପୋଷିବ ଏ ବାଳ ତନୟେ
ଏହା ଭଳି ଯୁକ୍ତି ନେଇ ଦ୍ରୋଣ ଗଲେ ଖରେ
କେତେକ ଦିନେ ପ୍ରବେଶ ଦ୍ରୁପଦ ରାଜ୍ୟରେ
ଦ୍ରୁପଦଙ୍କ ପୂର୍ବଦ୍ୱାରେ ପ୍ରବେଶ ହୋଇଲେ
ରାଜାଙ୍କୁ କହ ବୋଲିଣ ଦ୍ୱାରୀକି କହିଲେ ।
ପଞ୍ଚାଳ ନରେଶଙ୍କର ଅଟୁ ଆମ୍ଭେ ମିତ୍ର
ଆହେ ଦ୍ୱାରୀ ଜଣାଅ ତୁ ରାଜାଙ୍କୁ ତ୍ୱରିତ ।
ଶୁଭେ ଧନପୁତ୍ର ତୋତେ ଦେବେକ ସାଦର
ମୋ କାର୍ଯ୍ୟ ହେଉ ରାଜାଙ୍କୁ ଜଣା ବେଗକରି
ଦ୍ରୋଣ ବ୍ୟାକୁଳ ବଚନେ ଦ୍ୱାରପାଳ ଗଲା
ଦ୍ରୁପଦଙ୍କ ଆ ସ୍ଥମ୍ଭରେ ରହି ଜଣାଇଲା ।
ହେ ରାଜା ଦ୍ୱିଜେକ ଦ୍ୱାରେ ଆସିଣ ଅଛନ୍ତି
ତୁମ୍ଭର ମଇତ୍ର ସେହି ଦର୍ଶନ ଲୋଡ଼ୁଛି ।
ଶୁଣିଣ ଦ୍ରୁପଦ ତାକୁ ବୋଇଲେ ଏମନ୍ତେ
ମଇତ୍ରଙ୍କ ଗଜ ଅଶ୍ୱ ସୈନ୍ୟ ଅଛି କେତେ ।
ଦ୍ୱାରୀ ବୋଲେ ଶିଶୁଟିଏ କୋଳେ ଧରିଅଛି
ଗଜ ଅଶ୍ୱ ସୈନ୍ୟ ତାର ସଙ୍ଗେ ନାହିଁ କିଛି ।
କୋପ କରିଲାକ ଏହା ଦ୍ରୁପଦ ଶୁଣନ୍ତେ
ବୋଇଲା ମୋ ପୁତ୍ରଗଣ ନିନ୍ଦିବେକ ମୋତେ
ବୋଲିବେ ରାଜାର ମିତ୍ର ଭିକ୍ଷୁକ ବ୍ରାହ୍ମଣ
ଏହା କପରି ଆସିଲା ମୋର ସନ୍ନିଧାନ ।
ଆରେ କଟୁଆଳ ନିଅ ଯାଉ ବାଳ ଧରି
ନଗର ବାହାରେ ଶିର ପକାଅ ଉପାରି ।
ରାଜା ବାକ୍ୟେ କଟୁଆଳ ଦେଇ ତାକୁ ଶାସ୍ତି
ପୁଣି ବେଢ଼ିଲେ ଯାଇଣ ଦ୍ରୋଣ ସେନାପତି ।
ଆରେ ରେ ମୂଢ଼ ବ୍ରାହ୍ମଣ ତୋହର ପ୍ରସାଦେ
କହିବାକୁ ଯାଇ ଆମ୍ଭେ ପଡ଼ିଲୁ ପ୍ରମାଦେ ।
ଏହା କହି କିଏ ଯାଇ ବିଧାଏ ମାଇଲା
କିଏ ତାଙ୍କ ଉତ୍ତରୀୟ ଧରି ଛିଣ୍ଡାଇଲା ।
କେହି କୁନ୍ତଳ ବେଢ଼ିଣ ଧୂଳିକି ଫିଙ୍ଗିଲା
କେ ଠେଙ୍ଗା ମାଇଲା କେହୁ କେଶକୁ ଧଇଲା ।
ହୃଦେ ଯାକିଛନ୍ତି ଦ୍ରୋଣ ବାଳଶିଶୁ ଗୋଟି
ଠେଙ୍ଗା ମାଡ଼କ୍ଷେଣେ ଦ୍ରୋଣ ପାତୁଛନ୍ତି ପିଠି ।
ସଞ୍ଜୟ ବୋଇଲା ଶୁଣ ରାଜା ଧୃତରାଷ୍ଟ୍ର
ଦ୍ରୁପଦ ହେତୁ ଦ୍ରୋଣଙ୍କୁ ହେଲା ଏତେ କଷ୍ଟ ।
ଚଉଦ ବର୍ଷ ପୋଷିଲେ ତାହା କାହିଁ ଗଲା
ଦେଖା କରିବାକୁ ଯାନ୍ତେ ଏତେ ଶାସ୍ତି ଦେଲା
ଅନେକ ଶାସ୍ତି ପାଆନ୍ତେ ଦ୍ରୋଣ ସେନାପତି
କ୍ରୋଧେ ଅବସ୍ଥା ହୋଇଣ ବନସ୍ତେ ପଶନ୍ତି ।
ସିଂହଦ୍ୱାରୁ ପାଞ୍ଚକୋଶ ଅରଣ୍ୟକୁ ଗିରି
ଛେଚେଡ଼ୁର ଦ୍ରୋଣକୁ ସେ ନେଲେ ଠେଙ୍ଗାମାରି
ବାହୁଡ଼ିଲେ ଅରଣ୍ୟକୁ ବହୁ ସର୍ବ ଲୋକେ
ହସ୍ତିନା ପୁରକୁ ଦ୍ରୋଣ ଗଲେ ମହାଶୋକେ
ଦ୍ରୋଣ ବୋଲେ ବନ୍ଧୁମଧ୍ୟେ ଶଳାହିଁ ଯେ ସାର
ଦେହକୁ ସୁସ୍ଥ କରିବା ପାଇଁ ତାଙ୍କ ଘର ।
ଅଶ୍ୱତ୍ଥାମାକୁ ଘେନିଣ ଚଢ଼ି ଦ୍ରୋଣାଚାର୍ଯ୍ୟ
କୃପଙ୍କ ଘରେ ପ୍ରବେଶ ଛାଡ଼ି ସର୍ବ ଲାଜ ।

ଣିଲେ ସଜ୍ଜନେ ଚର୍ଣ୍ଣି ତୃପ୍ତୀ ଭଗବାଣୀ
ହୁ ଶୋକ କୃପ କଲେ ତାହା ମନେ ଗୁଣି ।
ଦ୍ରୁପଦ ରାଜାରେ ସବୁ ହଂସାଶ୍ରବଧର
ପ ସୁତ ଦ୍ରୋଣାଚାର୍ଯ୍ୟ ହେଲେ ଅସ୍ତ୍ରଧାରୀ ।
ପାଣ୍ଡବ କୌରବଙ୍କର ଗୁରୁ ହେଲେ ଯାଇ
ଶିଷ୍ୟଙ୍କ ଦ୍ୱାରା ଶାସିବେ ପଞ୍ଚାଳର ସାଇଁ ।
ଣ ଧୃତରାଷ୍ଟ୍ର ଆଦ୍ୟ ଦ୍ରୋଣ ତୀର୍ଥବାସୀ
ଦ୍ରୁପଦକୁ ମାରିବାକୁ ହସ୍ତିନାରେ ପଶି ।
ସେ ମହାବୈଷ୍ଣବ ଭାରେ ଲୁହଇ ତପାସୀ
ଭରଶରପଙ୍କଠାରୁ ଥିଲେ ବିଦ୍ୟା ସାଧି ।
ଯଦ୍ୟପି ବ୍ରାହ୍ମଣ ସେହୁ ପୁଣି ତପସ୍ୱର
ଦ୍ରୁପଦ ନମନ୍ତେ ରାଗେ ହେଲେ ଅସ୍ତ୍ରଧାରୀ ।
ନ'ନା ପ୍ରକାରରେ ଶାଗ ସଂହାରି ନ ପାରି
ଦ୍ରୋଣ ଉତ୍ତରିଲେ ଯାଇ ହସ୍ତିନା ନଗରୀ ।
ଦ୍ରୁପଦଯୋଗେ ଦ୍ରୋଣକୁ ଏତେ ପରମାଦ
ସେ ରାଗେ ଦ୍ରୋଣ ଦ୍ରୁପଦ ଶିର କଲେ ଛେଦ
ଆହେ ଜଗନ୍ନାଥ ତୁମ୍ଭେ ବୋଲାଅ ମାର୍ତ୍ତଣ୍ଡ
ତୁମ୍ଭ ଜ୍ୟୋତି ପ୍ରକାଶଇ ସକଳ ବ୍ରହ୍ମାଣ୍ଡ ।
ବହୁତ ଅମିତ ଭଲ ଯହୁଁ ଅର୍କଦୈତ୍ୟ
ତାହାର ଭୟେ ସଂସାର ଜନେ ଆତଙ୍କିତ ।
ଦେଖିଲେ ଦଇତ୍ୟ ତପୋଧନ ତୀର୍ଥବାସୀ
ଅଗ୍ନି ତର୍ମ ସନ୍ନିଭରେ ପକାଏ ରାକ୍ଷସି ।
ହେ ପ୍ରଭୁ ସୂର୍ଯ୍ୟଦେବତା ତା ଅମିତ ଦେଖି
ମହାକୋପ କରି ନାଥ ଗଗନ ଉପେକ୍ଷି ।
ଅର୍କ ଦଇତ୍ୟକୁ ମାରି ଚନ୍ଦ୍ରଭାଗାତୀରେ
ବନସ୍ତ କଲ ଆପଣ କୋଣାର୍କ ମନ୍ଦିରେ ।
ସୂର୍ଯ୍ୟାବର୍ତ୍ତ ପଦ୍ମାକର ଧରିଅଛ କରେ
ତନ୍ମାବଳ ଧନୁତେଜ ଅନଳର ଶିରେ ।
ଭାମ୍ୟବନେ ଊର୍ଦ୍ଧ୍ୱବାହୁ ତପୀଙ୍କୁ ବନାଶ
କରି ଦୈତ୍ୟ ଉଜୁଥିଲା ତାଙ୍କୁ କଲ ନାଶ ।
ନଗକୂଳ ନାରାୟଣ ସର୍ବଜନ ତାତା
ନରକାର ନର୍ବିକାର ସୃଷ୍ଟି ଉଦ୍ଧାରକ୍ତା ।
ସ୍ୱାମୀ ବଦାଶେଷେ ଯହୁଁ ସୋଟଇ ତମିର
ସର୍ବେ ଶଯ୍ୟାଗତ ହୋନ୍ତି ନଜ ଜ୍ଞାନହାରି ।
ତୋହର ତେଜ ପ୍ରକାଶ ହୁଏ ଯେତେବେଳେ
ଆବଗଣ ସ୍ନାନଦରେ ନିହ୍ରୀଡ଼କ୍ତ ଶଯ୍ୟାକେ ।
ସୁଧୀ ଯତ ତପୋଧନ ଆଉ ଏ ସମୟେ
ଶରତ ହୋଇଣ ପୂଜା କରନ୍ତି ତୋ ପାୟେ ।
ଅନିତ୍ୟ ସଂସାର ଏହୁ ଲେଉ ମୋହପାଶି
ଏଥିରୁ ଉଦ୍ଧର ନାଥ କରୁଣା ପ୍ରକାଶି ।
ନାଶକର ପ୍ରାୟ ମୋତେ ଉଦ୍ଧର ଗୋସାଇଁ
ପୃଷ୍ଠିକର ଶ୍ରୀ ଶାରଦା ଦାସ ଯେ କହଇ ।

---

## ଘଟ୍‌କା ଦ୍ୱାରା ଅଲାୟୁଧର ମୃତ୍ୟୁ ଓ ଅଲମ୍ବୁଷ ଦ୍ୱାରା ଘଟ୍କାର ମୃତ୍ୟୁ

ଶୁଣ ଆହେ ବୁଧଜନ ଅଗସ୍ତି ବକତା
ମୁନିଙ୍କୁ ଭଚ୍ଛାକରି ମନୁ ହେଲେ ଶ୍ରୋତା ।
ଧୃଷ୍ଟଦ୍ୟୁମ୍ନ ନ ଜାଣନ୍ତି ପିତା ମୃତ୍ୟୁ କଥା
ଏ ଉତ୍ତରେ ଯାହା ହେଲା ଶୁଣ ଆହେ ଶ୍ରୋତା
ବହୁ ଶୋକ କଲେ ଦ୍ରୋଣ ଦ୍ରୁପଦକୁ ମାରି
ରଥରେ ରଖିଲେ ପିଣ୍ଡ ମଧୁ ଭୃଙ୍ଗେ ଭରି ।
ସଂଗ୍ରାମ ଶେଷେ ପ୍ରୟାଗ ତୀର୍ଥକୁ ଯେ ଯିବା
ଭାଗୀରଥୀ ଗଙ୍ଗାମାରେ ଏହାକୁ ମେଲିବା ।
ଏପରି କରି ଖଣ୍ଡିବା ପିତୃଦ୍ରୋହ ଦୋଷ
ଆଦର ଲୋକେ ପାଇବା ବହୁ ପରିତୋଷ ।
ଏଥୁଅନ୍ତେ ଶୁଣ ରାଜା ଯୁଦ୍ଧ ବିବରଣ
ଦୁର୍ଦ୍ଧଷ ସମ୍ମୁଖେ ଆସି ହେଲା ଦୁଃଶାସନ ।
ଦେନି ସହୋଦର ପୁଣି ଅଟନ୍ତି ଅଭେଦ
କ୍ଷତ୍ରୀପଣ ରଖିବାକୁ କଲେ ଦୁହେଁ ଯୁଦ୍ଧ ।
ବଡ଼ ରଥେକ ଆସିଥିଲା ଦୁଃଶାସନ
ସସ୍ତ୍ରବଳ ଧନୁଶର କଲାକ ଆହ୍ୱାନ ।
ଦୁଃଶାସନ ବୋଇଲାକ ଦୁର୍ଦ୍ଧଷକୁ ଚାହିଁ
କାହିଁପାଇଁ ତୁ ରହିଲୁ ମରିବାର ପାଇଁ ।
ଏହିକ୍ଷଣି ତୋର ପ୍ରାଣ କରପ'ରେ ନଷ୍ଟ
କେ ସହିପାରିବ ଆରେ ଗାନ୍ଧାରୀର କଷ୍ଟ ।
ତୋହର ପ୍ରାଣ ରହିଲା ଜନନୀଙ୍କ ପାଇଁ
ମହାସର୍ପ ଭୁଲେ କାହିଁ ମଣ୍ଡୂକ ଯୁଝଇ ।
ଦୁର୍ଦ୍ଧଷ ବୋଲେ ତୋ ମୃତ୍ୟୁ ନିକଟ ହେଲାଣି
ଯମ ତୋ ନାମ ଖାଞ୍ଜିରୁ ଆଜ ପୋଛିଲାଣି ।
ଏହା ଶୁଣି ରାଗେ ଦୁଃଶା ଧର ଗଦାବର
ଦୁର୍ଦ୍ଧଷ ରଥ ଉପରେ ପିଟିଲା ସତ୍ୱର ।

ଗଦା ପଡ଼ନ୍ତେ ଦୁର୍ଦ୍ଧର୍ଷ ରଥ ହୋଇଲା ଚୂର୍ଣ୍ଣ
ଭାନସର୍ପ ପ୍ରାୟେ ଗର୍ଜ୍ଜେ ବୀର ଦୁଃଶାସନ ।
ପାଦଗତ ହୋଇ ଗଦା ଧଇଲା ଦୁର୍ଦ୍ଧର୍ଷ
ମତ୍ତନାଗ ପ୍ରାୟ ବଳେ ଯୁଦ୍ଧ ମହାଦକ୍ଷ ।
ଷାଠିଏ ଭାରର ଗଦା ବୁଲାଇଣ କୋପେ
ପିଟିଲେକ ଦୁଃଶାସନ ରଥେ ଗୁରୁତାପେ ।
ମହାବାହୁ ଭଲରଦ ସାରଥିର ଷଣ୍ଢା
ଦୁଃଶାସନ ରଥ ସଙ୍ଗେ କରିଦେଲା ଗୁଣ୍ଡା ।
ତଳେ ପଡ଼ି ଦୁଃଶାସନ ଧଡ଼ଚଡ଼େ ଉଠି
ଗଦାବର ପ୍ରହାରିଲା ସେ ଦୁର୍ଦ୍ଧର୍ଷ ପିଠି ।
ପନ୍ଥଦୁଆ ଦେଇ ଗଦା ବଞ୍ଚାଇ ଦୁର୍ଦ୍ଧର୍ଷ
ବୋଲେ ମୋ ଗଦାର ଘାତ ସହି ତୁମ୍ଭେ ଦେଖ
ରୁଦ୍ର ପ୍ରାୟ ମୂର୍ତ୍ତି ଧରି ଗର୍ଜଣ ସାରି
ଦୁଃଶାସନ ପରେ ଗଦା କରିଲା ପ୍ରହାର ।
ଦୁର୍ଦ୍ଧର୍ଷ ଗଦା ପଡ଼ନ୍ତେ ଦୁଃଶାସନ ଶିରେ
ମୁଣ୍ଡଫାଟି ରକ୍ତବହେ ଶରୀର ଯାକରେ ।
ସେ ଆଘାତ ଦୁଃଶାସନ ନ ପାରିଲା ସହି
ଭାଏ ମହୀରେ ଶୋଇଲା ଅସାକ୍ଷମ ହୋଇ ।
ବହେ ରୁଧିର ନାସିକା କର୍ଣ୍ଣ ମୁଖୁପୁଣି
ପଡ଼ିଅଛି ଦୁଃଶାସନ ଗତଆତ୍ମା ଜାଣି ।
ଏହା ଦେଖି କୋପକରି ଧଇଲା ଦୁର୍ଦ୍ଧର୍ଷ
କହିତ ଯୁଦ୍ଧରେ ସହି ଲଭିଲୁ କି ଦୁଃଖ ।
ଦ୍ରୌପଦୀ କେଶ ଧରିଲୁ ପଶାଖେଳ ବେଳେ
ବିବସନ କଲୁ ଆଣି କୁରୁସଭାତଳେ ।
ଦ୍ରୌପଦୀ କେଶ ମୁକୁଳା ଅଛି ସେହିଦିନୁ
ତେର ବରଷ ହେଲା ଅଶଜତ ତନୁ ।
ପଖାଳିବେ ତୋ ଭୁଜର ରକ୍ତେ କୃଷ୍ଣାବାଳ
ଏ ପ୍ରତିଜ୍ଞା କରିଛନ୍ତି ଭୀମ ମହାବଳ ।
ମୁଖବୁଦ୍ଧ ଯାଡ଼ି ଭୁଞ୍ଜ ଏହା ନ ବସ୍ତୁ
କାହା ଭରସାରେ ପୁଣି ଯୁଦ୍ଧେ ଗୋଳକରୁ ।
ଚେତ ଦୁଃଶାସନ ବୋଲେ ଶୁଣରେ ଦୁର୍ଦ୍ଧର୍ଷ
ତୁ ଯାହା କହିଲୁ ତାହା ଅଟଇ ପ୍ରତ୍ୟକ୍ଷ ।
ତୋହର ଶରଣ ଆଜ ପଶିଲିଁ ଭାଇ
ଶତ୍ରୁ ଶରଣବତ୍ସଳ ଅଟୁ ବାବୁ ତୁହି ।
ଦୁର୍ଦ୍ଧର୍ଷ ବୋଇଲା ଆଉ ରଣେ ନ ପଶିବ
ଯତନ କରଣ ପ୍ରିୟ ପ୍ରାଣକୁ ରଖିବ ।

ଭୀମଙ୍କ ପ୍ରତିଜ୍ଞା କେବେ ନୋହିବ ବିଫଳ
ରଣେ ପଶିଲେ ନିଶ୍ଚୟ ପାଇବ ତା ଫଳ ।
ରାଜା ବାକ୍ୟ ଯେବେ ରଣେ ପଶିବ ନିଶ୍ଚିତ
ମଲେ ତୁମ୍ଭେ ପ୍ରେତକାର୍ଯ୍ୟ କରିବ ସମାପ୍ତ ।
ରାଜବୋଲି ତୋର ସଙ୍ଗେ ହେଲି ଏତେ କଥା
ପାଣ୍ଡବେ ଜାଣିଲେ ମୋତେ କରିବେ ଅବସ୍ଥା
ଏତେ ବୋଲିଣ ଦୁର୍ଦ୍ଧର୍ଷ ତହୁଁ ବେଗେ ଉଠି
ଯାଇ ଦେଖେ ଦ୍ରୋଣୀସଙ୍ଗେ ଶିଖଣ୍ଡୀ ଯେ ଭେଟି
ନ ଚହ୍ନିଣ ଅଶ୍ୱତ୍ଥାମା କରେ ଶର ବୃଷ୍ଟି
ଅନୁକ୍ଷଣେ ତାର ବାଣ ଡଉଡଗ ଯୋଟି ।
ମଳ ମେଘରେ ଯେସନେ ବଶେ ଉଲ୍କାପନ୍ତ
ତେସନ ଘୋର ଅନ୍ଧାରେ ନାରାଚେ ବିଶନ୍ତ ।
ଶିଖଣ୍ଡୀ ପେଷିଲା ପାଞ୍ଚସଉଣୀ ନାରାଚ
ଦେଖି ପ୍ରଶଂସା କରଇ ଦ୍ରୋଣଙ୍କର ବତ୍ସ ।
ପାଞ୍ଚଲକ୍ଷ ଯୋଦ୍ଧା ସେନ ସାରି ଧୃଷ୍ଟଦ୍ୟୁମ୍ନ
ଯୁଝନ୍ତେ ଭେଟିଲେ ଯାଇ ଶଲ୍ୟ ସନ୍ନିଧାନ ।
ସତସ୍ରେକ ପାଦଦନ୍ତି ଘୋଟ ରାଜା ଶଲ୍ୟ
ଧୃଷ୍ଟଦ୍ୟୁମ୍ନ ତୁଲେ ରଣ କଲେ ମହାମଲ୍ଲ ।
ଶଲ୍ୟ ପୂରଇ ଅଚ୍ଛନ୍ତ ଶର ପଞ୍ଚଷଠି
ନାରାଚର ତେଜେ ଜାହା ଅଗ୍ନି ଜଳି ଉଠି ।
ଗୁଣରେ ପୂରାଇଣ ଯେ ପଞ୍ଚସ୍ତରି ଶର
ପେଷିଲେ ଧୃଷ୍ଟଦ୍ୟୁମନ ଶଲ୍ୟର ଉପର ।
ବନ୍ଧିବା ହସ୍ତ ବ୍ୟଗ୍ରତା ଦେଖି ତା ନ ପାରି
ଶଲ୍ୟ ନାରାଚ ପେଷିଲେ ଦିବ୍ୟ ଅସ୍ତ୍ର ସ୍ମରି ।
ଯେସନେକ ଜଳଧାର ବର୍ଷେ ଗଗନରୁ
ତେସନେକ ଶରମାନ ପଡ଼ୁଛି ଶୂନ୍ୟରୁ ।
ଦ୍ରୁପଦର ନନ୍ଦନ ଯେ ରଣେ ମହାଯୋଦ୍ଧି
ଏକାବେଳେ ପାଞ୍ଚଗୋଟି ନାରାଚ ସେ ବନ୍ଧି ।
ଶଲ୍ୟଙ୍କର ଅସ୍ତ୍ରମାନ ଛେଦିଲା ସେ ଦୂରେ
ପୁଣି ଶର ବନ୍ଧିଲା ସେ ଶଲ୍ୟ ରଥପରେ ।
ଶର ଯାଇ ଶଲ୍ୟ ରଥ ସଙ୍ଗେ କଲା ଚୂନା
ସେ ଶର ଛେଦିଲା ପୁଣି ଶଲ୍ୟଙ୍କର ସେନା ।
ରୁଧିରରେ ଜର ଜର ଶଲ୍ୟଙ୍କର ଅଙ୍ଗ
ବେଗେ ବେଗେ ଝର ଦେହ ଦିଶଇ ସୁରଙ୍ଗ ।
ସେ ଘାସେଇମଲ୍ଲି ଶଲ୍ୟ ପଡ଼ୁ ମୋହ ହୋଇ
ଦେଖି ଧୃଷ୍ଟଦ୍ୟୁମ୍ନ ଜୟ ଶଙ୍ଖକୁ ବଜାଇ ।

ରଣେ ନନ୍ଦଘୋଷ ରଥ ବାହାନ୍ତି ଶ୍ରୀହରି
ଯେସନ୍ତେ ଗମେ ଶ୍ୟେନପକ୍ଷୀ ପକ୍ଷକୁ ଉପରି ।
ନନ୍ଦଘୋଷ ରଥ ଦେଖି ରାଧାର ନନ୍ଦନ
ସତ୍ୟବରର ସାରଥିକି ଚହ୍ନିଲ ଏସନ ।
ସମ୍ଭ୍ରାନ୍ତ ସତ୍ୱର ବାହା ମୋହର ସ୍ୟନ୍ଦନ
ଆନର ସ୍କନ୍ଧେ ମାରିବ କୃଷ୍ଣ ଅରଜୁନ ।
ସତ୍ୟବନ୍ତ ସାରଥି ଯେ ବାହିଲା ତୁରଙ୍ଗ
ଶବଦହୁଁ ରଥବର ଚଳେ ଅତିବେଗ ।
ସହସ୍ର ଶର ବିନ୍ଧିଲା ବୀରବର କର୍ଣ୍ଣ
ଷାଠଶର ବନ୍ଧ ତାହା ଛେଦିଲେ ଅର୍ଜ୍ଜୁନ ।
ପୁଣି ଉଦଶତ ବାଣ ପୁସରଣ ସୁଣେ
ଯେତେ ବିନ୍ଧିଲାତ କର୍ଣ୍ଣ ପାର୍ଥ ନାସଯୁଣେ ।
ପଞ୍ଚଷଣ ନାସତ ଅରଜୁନ ବିନ୍ଧ
କର୍ଣ୍ଣର ନାସତମାନ ପକାଇଲେ ଛେଦି ।
ଖୁର୍ପଶର ଗୁଣେ ଯୋଖି ବିନ୍ଧିଲା କସାଟି
କର୍ଣ୍ଣର ବପୁ ସାରଥି ପକାଇଲା ଭାଟି ।
ବଜ୍ରଶର ଯେଷ୍ଟୁ କର୍ଣ୍ଣ ରଥ ଗଲା ଭଙ୍ଗ
ଶାବକଣ୍ଡରେ ସଧେସ୍ୱ ଧାମେ ଉଡ଼ପାଙ୍ଗ ।
ସୂଚିମୁଖା ନାସତ ଯେ ବିନ୍ଧିଲା କସାଟି
ପୁଣି ଛେଦିଲା କର୍ଣ୍ଣର କବଚ କୋଣଗୋଟି ।
ଅସ୍ୱସ୍ଥିନ ହୋଇ ଦୁର୍ଦ୍ଧଗଲା ମହାମଲ୍ଲ
ପଛଆଡ଼ୁ ରଥ ଚଢ଼ି ଆସୁଥିଲେ ଶଲ୍ୟ ।
ଧାଇଁକାରେ କର୍ଣ୍ଣ ଯାଇ ଶଲ୍ୟରଥେ ଉଠି
ନନ୍ଦଘୋଷ ରଥପାଶେ ପୁନରପି ଭେଟି ।
ଆରୋହଣ ଶଲ୍ୟ କର୍ଣ୍ଣ ଦୁହେଁ ଏକରଥ
ଆସନ୍ତେ ତାଙ୍କୁ ବିନ୍ଧିଲେ ଶର ପୁଣି ପାର୍ଥ ।
ଶଲ୍ୟ ବୋଇଲେ ଆଜ କି ଦେଖୁଅଛ କର୍ଣ୍ଣ
ଶକତି ଯେଣ ପ୍ରହାର କର କୃଷ୍ଣାର୍ଜ୍ଜୁନ ।
ଶଲ୍ୟର ବଚନ ଶୁଣି କର୍ଣ୍ଣ ମହାରଥୀ
ସ୍ମୃତି କରଣ ଇନ୍ଦ୍ରଙ୍କୁ ମାଗିଲା ଶକତି ।
କର ଆସନ କମ୍ପନ୍ତେ ଜାଣି ମଘବାନ
ବୃହସ୍ପତିଙ୍କୁ ପୁଛନ୍ତି ପାଶକୁ ଡାକଣ
କର୍ଣ୍ଣ ଧ୍ୟାନକରି ମୋତେ ମାଗୁଛି ଶକତି
ସମ୍ମୁଖେ ଭେଟ ପାଇଛି ପାର୍ଥ ଯଦୁପତି ।
ବୃହସ୍ପତି ସୁନାସୀରେ ବଚନ ବୋଇଲେ
ଅମରେ କେଉଁଠେ ବସିବୁ ଶକତି କୁ ଦେଲେ ।
କପାଇଁ ଶକତି ମାଗେ କେବଣ ପ୍ରସ୍ତାବେ
ମୁହିଁ ତ ନ ଜାଣେ ମୋତେ ତାହା କହ ଏବେ
ବାସବ ବୋଇଲେ ତହୁଁ ଶୁଣ ଆହେ ସ୍ୱାମି
ତୋଷେ ତାକୁ ଦେଇଅଛି ବର ମୁଁ ପୂର୍ବନ୍ତି ।
ଯେଉଁକାଳେ ହେଲା ଭାରତ ଯୁଦ୍ଧର ପ୍ରସ୍ତାବ
ଯୁଧିଷ୍ଠିରଙ୍କୁ କହିଲେ ଦେବ ବାସୁଦେବ ।
ଅଭେଦ କବଚ ବଜ୍ରଛଉଷ କୁଣ୍ଡଳ
ସତ୍ୟ ଉପରେ ଆଣନ୍ତୁ ହରି ଆଖଣ୍ଡଳ ।
ଏହା ଶୁଣି ପାର୍ଥ ତହୁଁ ସ୍ତବିଲେ ଆମ୍ଭଙ୍କୁ
ତାହା ବାଦ୍ୟ ଗଲୁ ଆମ୍ଭେ କର୍ଣ୍ଣ ଭୁବନକୁ ।
ଛଳବସ୍ତ୍ର କରି ଆମ୍ଭେ ମାଗନ୍ତେଣ ଦାନ
ଷଙ୍କେ ମାର ଭରି ସତ୍ୟ କଲ ବାମାକର୍ଣ୍ଣ ।
ଛଡ଼କ ତୋଳି ଦଅନ୍ତେ ମାଗିଲୁ ସେବେକେ
ଅଭେଦ କବଚ ବଜ୍ରଛଉଷୀ କୁଣ୍ଡଳେ ।
ଶୁଣ ଆହେ ବୃହସ୍ପତି କର୍ଣ୍ଣର ଯେ ସତ୍ୟ
ଦେହ ଛିଣ୍ଡ ବଜ୍ରକୌଷୀ କାଢ଼ିଲା ତୁରିତ ।
ତାକୁ ଉବାରି କାଢ଼ିଲା ଭବନଙ୍କ ମଣି
କର୍ଣ୍ଣ ଅମୃତ ବନ୍ତ୍ରନ କାଢ଼ିଲା ସେକ୍ଷଣି ।
ଶରୀର ଉପାଡ଼ି କର୍ଣ୍ଣ ତନୁଦାନ ଦେଲା
ବାର ସାହସରେ ମୋହର ଯାନ ନ ଚଳିଲା ।
ମାତଳି ବୋଇଲା ରଥ ନ ପାରିବ ଯାଇ
କର୍ଣ୍ଣକୁ ଏଥିରୁ କିଛି ଦିଅ ଲେଉଟାଇ ।
କର୍ଣ୍ଣକୁ ପ୍ରସନ୍ନେ ଯହୁଁ ଯାଚିଲି ମୁଁ ବର
ସେ ବୋଇଲା ଯେବେ ବର ଯାଚିଲ ପିତର
ତେବେ ଏହି ବର ମୋତେ ଦିଅ ସୁରପତି
ତୁମ୍ଭର ଯେଉଁ ଅବର ଅଛି ବାଉସ୍ଥି ।
ମୁଁ ନାସ୍ତିକଲି ଦୁଃସହ କଥା ତାର ଶୁଣି
ଐରାବତ ଗଜକୁ ସେ ମାଗିଲାକ ପୁଣି ।
ଏହା ମାଗନ୍ତେ ତାହାକୁ ନାସ୍ତି କଲି ମୁହିଁ
ପୁଣି ରମ୍ଭା ଅପସରା ମାଗିଲାକ ସେହି ।
ତାହା ଦେଇ ନ ପାରଇ କଲି ମୁହିଁ ନାସ୍ତି
ଚତୁର୍ଥେ ମାଗିଲା ମୋତେ ଏ ବଜ୍ରଶକତି ।
ମାତଳି ବୋଲେ ଏବେ କି ଦେବ ସତ୍ୟରଙ୍ଗ
ବଜ୍ରଶକତିକି ତୁମ୍ଭେ କର୍ଣ୍ଣେ ଦିଅ ବେଗ ।
ଏ ବଚନେ ସତ୍ୟ କଲି ଦେବାକୁ ଶକତି
ବୋଇଲି ମୁଁ କର୍ଣ୍ଣ ତୋତେ ଦେବି ଏକଘାନ୍ତ

ସତ୍ୟେ କରାଇଣ କର୍ଣ୍ଣ କହିଥିଲାକ ମୋତେ
କୃଷ୍ଣ ଅର୍ଜ୍ଜୁନେ ମାରିବ କହେ ପିତା ତୋତେ ।
ବାସବ କହିଲେ ଏହା ମନେ ଅଛି ସବୁ
ତେଣୁ ବଜ୍ରଶକ୍ତି ମାଗେ କପଟ ମୁଁ ଦେବ ।
ବୃହସ୍ପତି ବୋଇଲେକ ଶୁଣ ଶଚୀପତି
ଏକାପାର୍ଥେ ମାରିବାକୁ ନ ମାଗେ ଶକତି ।
ପାର୍ଥଙ୍କୁ ମାରିବା ପାଇଁ ମାଗନ୍ତା ସେ ଯେବେ
ଅକାର୍ଯ୍ୟ ବୁଝନ୍ତା ତୋର ଜାଣ ମନେ ତେବେ ।
ଯଦ୍ୟପି ପ୍ରମାଦ କର୍ଣ୍ଣ ଚିନ୍ତିଲ କୃଷ୍ଣଙ୍କୁ
ତାଙ୍କୁ ନ ମାରିବ ହେତୁ ରଖିବେ ପାର୍ଥଙ୍କୁ ।
ଇନ୍ଦ୍ର ବଜ୍ର ଶକତିକି ଶ୍ରୀକରେ ଘେନିଲେ
କର୍ଣ୍ଣଙ୍କୁ ପ୍ରାପତ ହୁଅ ବୋଲିଣ ଦେଇଲେ ।
ବଜ୍ର ସ୍ୱର୍ଗରୁ ଆସିଣ ମିଳିଲା ସେକ୍ଷଣି
ଶ୍ରୀକରେ ଧଇଲା ତାକୁ କର୍ଣ୍ଣ ବୀରମଣି ।
ଉଲ୍‌କାପାତ ହେଲା ପ୍ରାୟେ ଦିଶିଲା ବ୍ରହ୍ମାଣ୍ଡ
ଦଲଦଲ କମ୍ପିଲାକ ମହୀ ନବଖଣ୍ଡ ।
ଗାଧେୟ ଘେନିଣ ବଜ୍ର ଶକତିକି ହସ୍ତେ
ଶ୍ରୀକୃଷ୍ଣ ସୁମରି ବଜେ କରିଲାକ ରଥେ ।
କର୍ଣ୍ଣର ହସ୍ତେ ଦେଖନ୍ତେ ବଜ୍ରର ଶକତି
ନନ୍ଦଘୋଷ ଆଡ଼କରି ନେଲେ ଶିଖିଦତ୍ତ ।
ପ୍ରବେଶ ହୋଇଲେ ଯାଇ ଦ୍ରୋଣଙ୍କ ଛାମୁର
ଦୁହିଁ ସଂଗ୍ରାମ ବଢ଼ିଲା ଦ୍ରୋଣ ଅର୍ଜ୍ଜୁନର ।
ବିନ୍ଧନ୍ତି ନାରାଚ ଗୁରୁ ତୀକ୍ଷ୍ଣ ତୀକ୍ଷ୍ଣ ବାଛି
ଦୂରରୁ ଦେଖି ତାହାକୁ ଛେଦିଲେ ବିଦର୍ଶି ।
ଶର ବନ୍ଧାବନ୍ଧ ହେଲେ ଯଥା ବର୍ଷାଧାର
ଦେହୁଁ ଦେହ ସମର ଯେ ହେଲା ଗୁରୁତର ।
ଅନର୍ଯ୍ୟାସ ଶର ଦ୍ରୋଣ ବିନ୍ଧି ଅନୁକ୍ଷଣ
ସେ ସର୍ବଅସ୍ତ୍ର ବିନାଶ କଲେ ଅର୍ଜ୍ଜୁନ ।
ଏପରି ଅସ୍ତ୍ର ବିନ୍ଧିଲେ ବୀର ଫାଲଗୁନ
ସେ ଶରବାସେ କମ୍ପିଲା ଏହି ପୁର ତିନ ।
ବୈଷ୍ଣବ ଶର ବିନ୍ଧିଲେ ଗୁରୁ ଅନ୍ତରୀକ୍ଷେ
କାଳାନଳ ପ୍ରାୟ ଘୋଟି ଆସେ ସେ ଆକାଶେ
ଜଳ ତରଙ୍ଗ ନାମରେ ପଞ୍ଚାଶ ମାର୍ଗଣ
ମହାକୋପଭର ହୋଇ ବିନ୍ଧିଲେ ଅର୍ଜ୍ଜୁନ ।
ଦ୍ରୋଣଙ୍କ ସାରଥି ଆଉ ଅଶ୍ୱକୁ ଛେଦିଲା
ବଜ୍ରବିଘାତ ପରାଏ ରଥ ଭଙ୍ଗିଗଲା ।

ବିରଥ ହୋଇଣ ଆଉ ହୋଇଗଲେ ଦ୍ରୋଣ
ଅଶ୍ୱତ୍ଥାମା ରଥେ ବଜେ କଲେ ତତକ୍ଷଣ ।
ପିତାପୁତ୍ର ବେନିଜଣ ବଜେ ଏକରଥେ
ଦୁହେଁ ବିନ୍ଧିଲେ ନାରାଚ ରୋଷେ ଅପ୍ରମିତେ ।
ଅଶୀସହସ୍ର ବଳ ଧନୁ ଦୁହିଙ୍କର ହସ୍ତ
ଲକ୍ଷ ଲକ୍ଷ ନାରାଚ ସେ ବିନ୍ଧି ପିତା ପୁତ୍ର ।
ପିତାପୁତ୍ର ଦେଖି ଯୋଦ୍ଧା ଅତୁଳିତ ମଲ୍ଲ
ଭାରତେ ଭାର୍ଗବମଲ୍ଲ କ୍ଷତ୍ରୀ ଅନର୍ଗଳ ।
କ୍ଷତ୍ରିୟଙ୍କ ଅଦ୍ଭୁତ କଥା ଯାହାଙ୍କର
ଶୁଣନ୍ତେ ତାପନ ଉଠେ ହୃଦୟ ତାଙ୍କର ।
ରୋଷେ ଅର୍ଜ୍ଜୁନଙ୍କୁ ଏତେ ଏତେ ବାଣ ମାରି
ପୃଥ୍ୱୀଯାକ ଘୋଟାଇଲେ ହଜନ୍ତି ତିମିର ।
ଆକାଶରେ ଥାଇ ହାସ କଲେ ଦେବତାଏ
ନାରାଚ ଶୂନ୍ୟେ ଦେଖନ୍ତି ବିଶେ ଜ୍ୟୋତିର୍ମୟେ
ଅର୍ଜ୍ଜୁନକୁ ବରଷନ୍ତେ ଯେ ଦେବ ଶିଖିପତି
କର ଯୋଡ଼ନ୍ତେ ସେ ଉଠି ଗଗନେ ଲଟନ୍ତି ।
ପାର୍ଥ ବୋଇଲେ ତେଜିଲି ଦେବ ରଣଭୂମି
ପଶ୍ଚାତକୁ ମୋତେ ଦୋଷୀ ନ କରିବ ସ୍ୱାମି ।
କ୍ଷତ୍ରିୟମାନଙ୍କ ନୁହେ ଏ ଉଚିତ କର୍ମ
ସଂଗ୍ରାମ ତେଜି ଅଇଲି ହୋଇଲି ଅଧର୍ମ ।
ଶ୍ରୀକୃଷ୍ଣ ଉତ୍ତର କଲେ ପାର୍ଥର ବଚନେ
ନ ଦିଶିଲା ରଥ ପୁଣି ଏବେ ଅଶ୍ୱମାନେ ।
ହସ୍ତେ ବଜ୍ରନ୍ତେ ଅଶ୍ୱ ହେଲେ ଶୂନ୍ୟଗାମୀ
ତେଣୁକରି ଉପେକ୍ଷିଲେ ଜାଣ ରଣଭୂମି ।
ନାରାୟଣଙ୍କ ବଚନେ ସୁଭଦ୍ରାର ନାହା
ବୋଇଲେ ରଣଭୂମିକି ରଥ ମୋର ବାହା ।
ପୁଣି ରଥ ଚଳାଇଲେ ପ୍ରଭୁ ସେ ଗହନରେ
ସେକ୍ଷଣି ପ୍ରବେଶି ପାର୍ଥ ମାତିଲେ ସମରେ ।
ହେ ଚୈତନ୍ୟ ଧାମସୁଦ୍ଧ କଳିତ ନ ପାରି
କୃତାନ୍ତକ ବିଜୟ ନ କାଳଦଣ୍ଡ ଧରି ।
କେ ରଥେ କେ ଗଜ ଅଶ୍ୱେ ଚଢ଼ି ଯୁଝୁଛନ୍ତି
ଭୀମସେନ ପ୍ରହାରନ୍ତେ ସମସ୍ତେ ପଡ଼ନ୍ତି ।
ନରୋଧି ପିଟନ୍ତେ ସର୍ବେ ହେଉଛନ୍ତି ଚୂନା
ସମରରେ ମହାଘୋଳ କରେ ବୀରଧାମା ।
ରଥପରେ ଅନ୍ୟ ରଥ କଚୁଡ଼ଇ ନେଇ
ତାହା ସବୁ ଭଙ୍ଗିଯାଏ ଖଣ୍ଡ ଖଣ୍ଡ ହୋଇ ।

ଭୀମସେନର ନନ୍ଦନ ଘଟୋତ୍କଚ ଯେହୁ
ରଣ ରଙ୍ଗରେ ଅପୂର୍ବ କପଟ କରଇ ।
କୋଟିଏ ଯୋଦ୍ଧା ସେନ ସେ ହିଡ଼ମ୍ବିକ ସୁତ
ବଦନ ବିସ୍ତାର କରି ଗିଳେ ରଥୀରଥ ।
ଗଜ ଅଶ୍ୱ ସହିତରେ ଗିଳନ୍ତି କୌଣପେ
ବହୁ ସୈନ୍ୟ ନାଶଗଲେ ଘଟୋତ୍କଚ କୋପେ ।
ଘଟୋତ୍କଚର ଘଟୁକା ନାମେ ଯେ କୁମାର
ତାହାର ମାୟା ଦେବଙ୍କୁ ଅଟେ ଅଗୋଚର ।
ସଇନ୍ୟ ସହିତ ଗଜ ଅଶ୍ୱ ଆଦିକରି
ଉଗ୍ରରୂପ ବିକାଶିଣ ଗର୍ଭେ ସବୁ ଭରି ।
ଏକମୁଖ ହୋଇ ବାଣ ବର୍ଷନ୍ତି କୌରବେ
ସେ ବାଣ ପଶଇ ଯାଇ ଘଟୁକାର ଗର୍ଭେ ।
ଦେଖିଣ ଭାଜିଲେ ତହୁଁ ସମସ୍ତ ସଇନ
ଅଳାୟୁଧେ ଗଇକରି ବୋଇଲେ ଶକୁନ ।
ଘଟୁକା ସମସ୍ତ ସୈନ୍ୟ କରୁଅଛି ବଧ
ତାହାର ସଙ୍ଗରେ ତୁମ୍ଭେ କର ଯାଇଁ ଯୁଦ୍ଧ ।
ରାକ୍ଷସେ ରାକ୍ଷସେ ତୁମ୍ଭେ ଦୁଇ ଅନ୍ୟୋଅନ
ଭୁଞ୍ଜ ସମର କରିଣ ବଞ୍ଚାଅ ସଇନ ।
ମନ୍ତ୍ରୀର ବଚନ ଶୁଣି ଅଳାୟୁଧ ମଲ୍ଲ
ଧାଇଁଲା ସେ ବେନିକରେ ଧରିଣ କୋଦାଳ ।
ସଙ୍ଗେ ପଞ୍ଚଶ ହଜାର ଗଜ'ରୋହିଛନ୍ତି
ସବୁରି କରେ କୋଦାଳ କୁଠାର ଶକତି ।
ଘଟୁକା ଦେଖି ଯୁଗଳେ କଲେ ଶସ୍ତ୍ର ଧରି
ସମର ସମ୍ଭାଳେ କଳକଳା ନ ବଳଇ ।
କୋଦାଳ ବୁଲାଇ ବେଗେ ଅଳାୟୁଧ ଉଠି
ଘଟୁକାର ଉପରକୁ ଲକ୍ଷ୍ୟକରି ପିଟି ।
ଘଟୋତ୍କଚର ନନ୍ଦନ ବଢ଼ାଇଣ ହସ୍ତ
ଛଡ଼ାଇ ନେଲା କୋଦାଳ ତା ହସ୍ତୁ ତୁରିତ ।
ସେହି କୋଦାଳ ଆୟୁଧ ସବଳେ ବୁଲାଇ
ଅଳାୟୁଧର ଉପରେ ପିଟିଲାକ ନେଇ ।
ପିଟନ୍ତେ ଶିର ମଧ୍ୟରେ କୋଦାଳ ପଶିଲା
ଅଳମ୍ବୁଷର ନନ୍ଦନ ଦ୍ୱିଫାଳ ହୋଇଲା ।
ରଣ ପ୍ରାଙ୍ଗଣେ ନିଧନ ହୁଅନ୍ତେ ଅଳାୟୁଧ
ବହୁ ସୈନ୍ୟଙ୍କୁ ଘଟୁକା ପ୍ରାଣେ କଲା ବଧ ।
ଅଳାୟୁଧ ପଡ଼ନ୍ତେଣ ଭାଜିଲେ ସଇନ
ଘଟୁକାବଳ ଉଠିଲେ ଶାଳ ଶିଳ ସେନ ।

ଅଳାୟୁଧର ଅର୍ବୁଦେ ଥିଲେ ସୈନ୍ୟବଳ
ଘଟୁକା ତତ୍କାଳେ ନାଶପଲେ ସେ ସକଳ ।
ସମରେ ନିପାତ ହେଲେ ଯହୁଁ କଉଣପେ
ଘଟୁକାବଳ ଧ୍ୱଂସିଲେ ଦେଖାଇ ପ୍ରତାପେ ।
ଘଟୁକାବଳ ଉଠିଲେ ଯହୁଁ ଗଳଗାଜି
ଅଳାୟୁଧ ବଳ ସବୁ ପଳାଇଲେ ଭାଜି ।
ବିଶେଷ ଦୁର୍ଦ୍ଧର୍ଷ ପୁଣି ଅମାପ କୌଣପେ
ଧ୍ୱଂସିଲେ ଦାନବବଳ ଯୁଦ୍ଧେ ନିଶାରୂପେ ।
ସୈନ୍ୟବଳ ପଳାବନ୍ତେ ଦେଖିଣ ଶକୁନ
ରହ ରହ ବୋଲି ଡାକ ସମ୍ଭାଳେ ସଇନ ।
ବିକଟ ମୂରତି ପୁଣି ମୁଖ ବିକଟାଳ
ଲହ ଜହ୍ୱା ଖାଙ୍କର ଯେ ଫୁରୁଫୁରୁ ବାଳ ।
ଏସନକ ରୂପ ଦେଖି ସେମାନେ ପଳାନ୍ତି
ଦାନବବଳ ଗୋଡ଼ାଇ ପଛରୁ ଗିଳନ୍ତି ।
ତା ଦେଖି ଶକୁନ ବୋଲେ ଡାକ ଅଳମ୍ବୁଷ
ବହୁତ ସୈନ୍ୟ ମାଇଲା ଘଟୁକା ରାକ୍ଷସ ।
ପୁତ୍ର ତୋର ଅଳାୟୁଧ ସମରେ ମଲାଣି
ଅର୍ବୁଦେକ ଯୋଦ୍ଧା ତୋର ମରିଲେଣି ପୁଣି ।
ରାଜାଙ୍କ ମଇତ୍ର ତୁମ୍ଭ ଅଟ ଯେ ବିଶ୍ୱାସ
ତୋହର ଦେଖନ୍ତେ ଏତେ ସୈନ୍ୟ ଗଲେ ନାଶ
କି ବୁଦ୍ଧି କରିବୁ ଆଜ ଏ ବିପଦ ବେଳେ
ଦୁର୍ଯ୍ୟୋଧନ ସହାୟ କି ନ ହେବୁ ଏକାଳେ
ପୁତ୍ରବଧ ଶୁଣିଣ ସେ ବିକଟାର ନାଥ
ଚଳିଲା କଟାରି ନେଇ ଚଢ଼ି ମତ୍ତହସ୍ତୀ ।
କୋପେ କରବାଳ ଘେନି ଗମନ୍ତେ ରାକ୍ଷସ
ବୃହତ ପର୍ବତ ଜଣି ଶରୀର ପ୍ରକାଶ ।
ଜାନୁ ପର୍ଯ୍ୟନ୍ତ ଲମ୍ବିଛି ତାର ବେନିବାହୁ
ନିଶା କାଳେ ଯେସନେ ଚନ୍ଦ୍ରଗରାସଇ ରାହୁ ।
ପଞ୍ଚାଶତ ଯୋଦ୍ଧା ସଙ୍ଗେ ଘେନିଣ ରାକ୍ଷସ
ଘଟୁକା ବଳ ଉପରେ ହୋଇ ମହାରୋଷ ।
ରଣଧନ୍ଦୋଳ ଘଟୁକା ବଳକୁ ନିରେଖି
ଧାଇଁଯାଇ ଉଗାଳିଲେ ସେ ପ୍ରଚଣ୍ଡ ଯେ ଛି ।
ଆହେ ଚୈତନ୍ୟ ସେ ମହାବଳିଷ୍ଠ ସମରେ
ସହସ୍ର ଯୋଦ୍ଧା ମାଇଲା କ୍ଷଣକ ମଧ୍ୟରେ ।
ନିଜ ସଇନ୍ୟ ପଡ଼ନ୍ତେ ଦେଖିଲା ଘଟୁକା
ବେଗେ ଆଣି ପର୍ବତକରି ଉଗାଳିଲା ଏକା ।

ଦେଖିଣ କୋପାନଳରେ ହିଡ଼ମ୍ବାର ନାତି
ଖଡ଼୍ଗ ଧରି ଘଟୁକାକୁ ପ୍ରହାରିଲା ଧାତି ।
ହିଡ଼ିମ୍ବୀ ଅସୁରୀ ନାତି ବଞ୍ଚାଇଣ ଗାତ୍ର
ପଟ୍ଟିଶ ଘେନି ପିଟିଲା ତାହାକୁ ତୁରିତ ।
ଅଳମ୍ବୁଷ ଚଢ଼ିଥିଲା ଏକ ମତ୍ତହସ୍ତୀ
ଘଟୁକା ପ୍ରହାର ଘାତେ ପଡ଼ିଲା ସେ ଧାତି ।
ବାହନ ବିନଷ୍ଟ ହେବୁ ହେଲା ପାଦଗତି
ସିଂହଗତି ପରାକ୍ରମ କରି ବେଗଗତି ।
କ୍ରୋଧେଣ ଧାଇଁଲା ବୀର ଧରି ଗଦାବର
ଲମ୍ଫାର ସେ ଦୁଇଗଦା ଖଟେ ଖଟେ ଘର ।
ଘଟୁକାକୁ ପ୍ରହାରିଲା ଅଳମ୍ବୁଷ ଦୈତ୍ୟ
ଘଟୁକା ଆରୋହି ଥିଲା ଏକ ଲୌହ ରଥ ।
ଅଳମ୍ବୁଷ ଗଦାଘାତେ ତାହା ଭଗ୍ନ ହେଲା
ରଥ ଭଙ୍ଗନ୍ତେ ସେ ବୀର ସାରଥୀ ହୋଇଲା ।
ପାଦଗତ ହୋଇ ସେହି ହିଡ଼ିମ୍ବିଙ୍କ ନାତି
ବଜ୍ରାବଳ ଗଦା ନେଇ ପିଟିଲାକ ଧାତି ।
ଦେଖି ଅଳମ୍ବୁଷ ବାମଭୁଜକୁ ପାତିଲା
ଭୁଜେ ବାଜି ଲୌହଗଦା ଚୂର୍ଣ୍ଣ ହୋଇଗଲା ।
ଶୂନ୍ୟହସ୍ତ ହେଲା ଯହୁଁ ହିଡ଼ିମ୍ବିଙ୍କ ନାତି
କୁଠାର ଘେନି ପିଟିଲା ଅଳମ୍ବୁଷ ଧାତି ।
ଆହେ ଚୈତନ୍ୟ ତାଳୁରେ ପଡ଼ି ସେ କୁଠାର
ବେନିଫାଳ କଲା ସେହୁ ଘଟୁକାର ଶିର ।
ଦେଖି ସୈନ୍ୟ ପ୍ରଶଂସନ୍ତି ସାଧୁ ସାଧୁ ବୋଲି
ସଙ୍ଗେ ଅଳମ୍ବୁଷ ବୀର ଗୁଡ଼ଇ ବୋବାଳି ।
ହିଡ଼ିମ୍ବାକ ନନ୍ଦନ ଯେ କଥା ଜଗତ୍ରେଠି
ବୃକୋଦର ସମ ଜାଣିପାରେ ନବସୃଷ୍ଟି
ଅନ୍ତରୀକ୍ଷେ ବୁଲାଇ ସେ ନବନଶି କୁନ୍ତ
ଅଳମ୍ବୁଷର ଉପରେ ମାଇଲା ତୁରିତ ।
ପୁନଃ ପୁନଃ ମାଇଲା ସେ ତୋଳି କରବାଳ
ତାହା ପଡ଼େ ଅଳମ୍ବୁଷ ଦୈତ୍ୟ ବକ୍ଷସ୍ଥଳ ।
ଶିବ ବରେ ତା ଶରୀର ଅଟେ ବଜ୍ରସେହ୍ଳା
କୁନ୍ତ କରବାଳ ପଡ଼ି ସବୁ ହେଲା ଚୂନା ।
ଶସ୍ତ୍ର ବଧାତ ପାଇ ଅଳମ୍ବୁଷ ଉଠି
ଘଂଟୋତ୍କଚକୁ ମାଇଲା ବଜ୍ରମୁଠା ଯାଠି ।
ହିଡ଼ିମ୍ବିଙ୍କର ନନ୍ଦନ ଧରି ବାମକରେ
ଲୁଣ୍ଠି ପକାଇଲା ତାହା ପାଦ୍ ପ୍ରହାରରେ ।

ପୁଣି କୁନ୍ତ ବୁଲାଇଣ ପ୍ରହାରିଲା ବେଗେ
ବେନିଖଣ୍ଡ କରି ତାହା ଭଙ୍ଗି ଅଳମ୍ବୁଷେ ।
ଧାମଇଁ ଅସୁରେଶ୍ୱର କି ସେ ମେଘମାଳା
ହସ୍ତରେ ଧଇଲା ପୁଣି ଖଡ଼୍ଗ ବେନିଫଳା ।
ଅନ୍ତରୀକ୍ଷରେ ବୁଲାଇ ଫିଙ୍ଗେ ଖଡ଼୍ଗବର
ପୁଣି ଆକର୍ଷି ବାନ୍ଧିଲା ଫଳା ତା ଉପର ।
ବୃକୋଦର ନନ୍ଦନର ବକ୍ଷସ୍ଥଳେ ପଡ଼ି
ବେନିଖଣ୍ଡ ହୋଇଣ ସେ ପଡ଼ିଲାକ ଝଡ଼ି ।
କୋପେ ଅଳମ୍ବୁଷ ଧରି ଲମ୍ଫାର ମୁଷଳେ
ଘଟୋତ୍କଚ ବକ୍ଷସ୍ଥଳେ ପିଟିଲା ସବଳେ ।
ଦେଖି ଘଟୋତ୍କଚ ବେଗେ ପାତି ଭୁଜଦଣ୍ଡ
ଶୂଳ ଶଙ୍କଡକୁ ଧରି କଲା ଖଣ୍ଡ ଖଣ୍ଡ ।
ଶୂନ୍ୟହସ୍ତ ହୋଇଣ ଯେ ଉଭେ ବେନିଯୋଧୀ
ମୁଥେ ମୁଥ ମଲ୍ଲମର ନରଜପରୋଧୀ ।
ବଜ୍ରମୁଥ ଶବଦରେ କମ୍ପଇ ଆକାଶ
ଏହି ଯୁଦ୍ଧେ ଘଟୋତ୍କଚେ ଧରି ଅଳମ୍ବୁଷ ।
ତାହାର ବକ୍ଷ ଉପରେ ମାଡ଼ିଣ ବସିଲା
ଖାମପୂଜ ପୁଣି ତାକୁ ଲେଉଟାଇ ଦେଲା ।
ଭୁଜେ ଭୁଜ ଉଡ଼ାଉଡ଼ି ହୋଇଛନ୍ତି ସେହି
ବେନି ମଉଷଣ୍ଡ ପ୍ରାୟେ ସେ ଛଡ଼ ଦିଶଇ ।
ଶିରେ ଶିର ପିଟାପିଟି ହେଉଛନ୍ତି ବେନି
ଲୋହେ ଲୋହ ଘର୍ଷଣରେ ଯଥା ଉଠେ ବହ୍ନି
କପୋଡ଼ାମାନ ମାରନ୍ତି ଓଷ୍ଠ ଦନ୍ତ ଚପି
ରୁଧିର ବହଇ ଦେହୁ ଲୁମେ ଲୁମେ ବ୍ୟାପି ।
ରୁଧିରରେ ଜର ଜର ଦୁହିଙ୍କର କାୟ
ଦିଶନ୍ତି ବେନି ଯାମଳା ବୃକ୍ଷର ପରାୟ ।
ପଡ଼ନ୍ତେ ଉଠନ୍ତେ ଉଡ଼େ ଗଗନରେ ଧୂଳି
ବେନିଙ୍କ ପଡ଼ିବାଘାତେ କମ୍ପେ ମହୀସ୍ଥଳୀ ।
ଘଟୋତ୍କଚ ଅଳମ୍ବୁଷ ବେନି ଯୁଦ୍ଧ କଥା
ଦେଖିଣ ହୃଦ କମ୍ପଇ ଯେ ଯୁଦ୍ଧ ଶକତା ।
ଗଡ଼ନ୍ତେ ପଡ଼ନ୍ତେ ଦୁହେଁ କମ୍ପଇ ବ୍ରହ୍ମାଣ୍ଡ
ପାଦଭରେ ଦଲି ଦଲି ମହୀ ନବଖଣ୍ଡ ।
ଦୁଃସହ ପ୍ରତଜ୍ଞା ତାହା ନ ସରେ କହନ୍ତେ ।
ଫକ୍ଷେପି ଲେଖିଲେ ତାହା ନ ସରେ କାହିଁତେ
ସମରେ ଅସମର୍ଥ ହୋଇ ହିଡ଼ିମ୍ବୀଙ୍କ ସୁନୁ
ଲଶରିଙ୍କେ ମାଡ଼ି ହେଲା ଅସହାୟ ତନୁ ।

ଅଳମ୍ବୁଷ ଦୈତ୍ୟ ତାଙ୍କୁ ବସିଲାକ ମାଡ଼ି
କନ୍ଦନ କରି ଧରିଲା ବେନକରେ ଭିଡ଼ି ।
ତା ବକ୍ଷସ୍ଥଳେ ପ୍ରହାର କଲା ଷାରମଣି
ଗର୍ଜଇ ଯେ ଘଟୋତ୍କଚ ମତ୍ତନାଗ ଜିଣି ।
ଅଳମ୍ବୁଷକୁ ପ୍ରଶଂସା କରନ୍ତି କୌରବେ
ବହୁତ ପ୍ରଶଂସା କରେ କୁରୁରାଜ ତେବେ ।
ଘଟୋତ୍କଚର ନିଧନେ ନ ବର୍ତ୍ତିବ ସୀମା
ଏବେ ମଇନ ମୋହର ରଖିଲୁ ଗାରିମା ।
ଏପରି ବହୁ ପ୍ରଶଂସା କରେ କୁରୁସାଇଁ
ଘଟୋତ୍କଚ ସବୁ ଶୁଣେ ତଳେ ପଡ଼ି ରହି ।
ହୁଂକାର ଶବଦ କରି ଭୀମଙ୍କ ଆତ୍ମଜ
କମ୍ପିପରି ଉଠି ବନ କନ୍ଦରର ଗଜ ।
ଧାଡ଼କାରେ ଲେଉଟାଇ ସେ ଅଳମ୍ବୁଷକୁ
ସିଂହ ପଶୁ ଯେସ୍ନେ ମାଡ଼ଣ ବସିଲା ତାହାକୁ ।
ନଖଦ୍ୱାରା ବିଦାରିଲା ତାର ବୁକୁ ବେଗେ
ମୁଖମାନ ପ୍ରହାରିଲା ତା ଭୋଟିକ ବେଗେ ।
ରେ ରେ ଅସୁର ମହିମା ଅଟେ ତୋର ଧନ୍ୟ
ଆଜ କୁଳୁ ବଞ୍ଚାଇବ ରଖୁ ଦୁର୍ଯ୍ୟୋଧନ ।
ଏ କୁରୁସାଗରେ ଛନ୍ତି ବହୁ ମହାଯୋଧୀ
ଅଳମ୍ବୁଷ ଦୈତ୍ୟକୁ କେ ରଖୁ କରି ବୁଦ୍ଧି ।
ମାନଗୋବିନ୍ଦ ରଜାଇ ଅଟୁ ପ୍ରାଣରକ୍ଷା
ଦ୍ରୋଣ କର୍ଣ୍ଣ ଶଲ୍ୟ ଆଉଁ ହେଲୁ ଦୁ ଜାରେଖା ।
ଏପରି ପ୍ରତିଜ୍ଞା ଶୁଣି କର୍ଣ୍ଣେ ବୋଇଲେ ଶଲ୍ୟ
କି ଦେଖୁ କର୍ଣ୍ଣ ଏ ରଜା ମିଛ ମହାମଲ୍ଲ ।
ଶତାଧିକ ଦେଲା ତୋତେ ଯେ ବଜ୍ର ଶକତ
କୋଟିଏ ଜଗୁଣ ଧାଉ ସୂର୍ଯ୍ୟସମ ଜ୍ୟୋତ ।
କ୍ଷେପ ପଣ ନ ରଖୁ ଖୁ ଦୈବଅସ୍ତ୍ର ଆଉଁ
ଅଳମ୍ବୁଷେ ରକ୍ଷା କରି ତୋ ପ୍ରତିଜ୍ଞା ରହୁ ।
ଘଟୋତ୍କଚେ ମାରି ଅଳମ୍ବୁଷେ କର ରକ୍ଷା
ଦେଖନ୍ତୁ ସରବ ଜନେ ଏ ତୋହର ଦକ୍ଷା ।
ଶଲ୍ୟ ଯୁକ୍ତିପାଠ କରି କହନ୍ତେଣ ବାଣୀ
ସୁଯୋଧନେ ଯେ ପ୍ରତିବାକ୍ୟ ନ ଦେଲା ତା ଶୁଣି
ସତ ବୋଲେ ନାହିଁ କେହି ତୋତେ ରଖିବାକୁ
କାଢ଼ିଲା ତା ଅନ୍ତ ବକ୍ଷେ କାମୁଡ଼ିଣ ବୁକୁ ।
ଭୁଜ ମୋଡ଼ି ମାଡ଼ିବସି ଉପାଡ଼ିଲା ଶିର
ଗିଳିଲୁ ବହିଲା ପ୍ରାୟ ବହିଲା ରୁଧିର ।
ଗିରିସମ ଦେଖାଯାଏ ତାର ମୃତ୍ୟୁକାୟ
ଧନ୍ୟ ଘଟୋତ୍କଚ ଥାଟେ ଶୁଂଭ ଜୟ ଜୟ ।
ଆହେ ପ୍ରଭୁ ତ୍ରିଲୋଚନ କଇଳାସବାସୀ
ସ୍ୱଚ୍ଛନ୍ଦ ଦୃଷ୍ଟି ମୋ ଠାରେ କରୁଣା ପ୍ରକାଶି ।
ତୁମ୍ଭେ ପ୍ରଭୁ ହୋଇଥାଅ ଯାଠାରେ ସଦୟ
ତାକୁ ଏ ସଂସାର ମଧ୍ୟେ ନାହିଁ କିଛି ଭୟ ।
ସୂର୍ଯ୍ୟ ଶଶାଙ୍କ ଅନଳ ତୁମ୍ଭର ନୟନ
ଅନଳ ନେତ୍ରେ କାମକୁ କଲ ଯେ ଦହନ ।
ଡମ୍ବରୁ ତୁମ୍ଭ ହସ୍ତରେ ସଦା ଥାଏ ରହି
ନାମାମୃତ ପାନେ ଥାଅ ମନକୁ ମଜ୍ଜାଇ ।
ହେ ଭୂତେଶ ଭବିଷ୍ୟ ହେ ଭୂତ ବର୍ତ୍ତମାନ
ଏହାସବୁ ଜାଣି କରି ଆପଦ ଭଞ୍ଜନ ।
ବସ୍ତ୍ରପ୍ରିୟା ତୁମ୍ଭ କଟିଦେଶେ ବ୍ୟାଘ୍ରାମ୍ବର
ଚନ୍ଦ୍ରକୁ ଧରିଣ ନାମ ଯେ ଚନ୍ଦ୍ରଶେଖର ।
ନ ବଧେ ତୁମ୍ଭଙ୍କୁ କେବେ କାଳ କାମ ଭୟ
ଲଭନ୍ତି ପରିମତେ କଲେ ତୋ ଆଶ୍ରୟ ।
ଭକତବତ୍ସଳ ତୁମ୍ଭେ ପରଦୁଃଖେ ଦୁଃଖୀ
ତୋ ଭକ୍ତ ଯେ ଜନ ସେହି ଲବେ ସଦାସୁଖୀ
ତୁମ୍ଭେ ଦେବଦେବ ପ୍ରଭୁ ଦେବତାଙ୍କ ଗୁରୁ
ତାଣ୍ଡବରୂପୀ ନାଟୁଆ ରୂପକୁ ତୁ ଧରୁ ।
ତୋହର ମହିମା ମୁଖେ କେ କହି ପାରିବ
ତୁମ୍ଭର ଚରିତ ସବୁ ବେଦଙ୍କୁ ଦୁର୍ଲଭ ।
ତୁମ୍ଭ କମଳ ଚରଣେ ସଦା ରହୁ ଆଶ
ଶାରଳା ଦାସର ପୂର୍ଣ୍ଣ କର ଅଭିଳାଷ ।

---

## କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧ ଓ ହନୁମାନଙ୍କର ବଜ୍ରାଙ୍ଗ ହେବାର କାରଣ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଅଳମ୍ବୁଷେ ମାରି ବିଶ୍ୱରୂପୀ ଭୀମସୂନୁ ।
ବେନପାଟି ବିସ୍ତାରିଣ ସମର ପ୍ରାଙ୍ଗଣେ
ଦେଖି ଭୟେ ପଳାଇଲେ ରକ୍ଷଦଳମାନେ ।
ପାଞ୍ଚଶତ ଯୋଦ୍ଧା ତହିଁ ଥିଲେ କଉଣସେ
ଭୀମସୁତ ନାଶ କଲା ସେ ସବୁଙ୍କୁ ଦର୍ପେ ।
ଷାଠି ବିସ୍ତାର ହୋଇଲା ମହା ବିଶ୍ୱରୂପୀ
ଉଚ୍ଚାଂଶ ଭୂମି ଗିଳିଦେଲା କାମରୂପୀ ।

ଏଣୁପରେ ସୈନ୍ୟବଳ କରନ୍ତେଣ ଧ୍ୱସ୍ତ
ତା ଆଗେ କେ ନ ରହିଲେ ପାଇ ମହାଭୟ ।
ସଂହ୍ଲା ସମ୍ମୁଖୁ ରଥ କର୍ଣ୍ଣ ଅଡ଼ କଲା
ଯାନ୍ତେ ନନ୍ଦିଘୋଷ ରଥ ବାଟରେ ଭେଟିଲା ।
କର୍ଣ୍ଣକୁ ଦେଖି ଆନନ୍ଦ ପାଇ ଫାଲଗୁନ
ମାଇଲେକ ଅର୍ଦ୍ଧଚନ୍ଦ୍ର ବାଣ କଟଭ ବେନ ।
ରାଧାନନ୍ଦନ ବସାଇ ଗୁଣେ ପାଞ୍ଚବାଣ
ପ୍ରଥମରେ ବନ୍ଧଇ ସେ ସାତଥିକ ପୁଣ ।
ପୁଣି ପାଞ୍ଚବାଣ ଯୋଜନ କରି ରାଧାସୁତ
ଅର୍ଜୁନ ଉପରକୁ ବନ୍ଧିଲା ତୁରିତ ।
ପୁଣି ବଂଶବାଣ କର୍ଣ୍ଣ ଗୁଣରେ ବସାଇ
ଆକର୍ଷି ବନ୍ଧିଲା ବୃଷ୍ଣିଅଶ୍ୱଙ୍କୁ ଜଠାଇ ।
ପାଞ୍ଚବାଣ ମାଇଲା ଯେ କପିକେତନକୁ
ପୁଣି ପାଞ୍ଚବାଣ ନନ୍ଦିଘୋଷ ଉପରକୁ ।
ଶୁଣ ଅହେ ଚଇତନ କର୍ଣ୍ଣର ମହିମା
ଭାରତ ଯୁଦ୍ଧେ ତାହାର ଏସନ ଗାରିମା ।
ପୁଣ ଧନୁର୍ଗୁଣ ଦେହୁ ଆକର୍ଣ୍ଣ ଉଟାରି
କୃଷ୍ଣ ଅର୍ଜୁନଙ୍କୁ ଦଶ ଦଶ ବାଣ ମାରି ।
ଏହା ଦେଖି କୋପ ବହି ପାର୍ଥ ମହାବୀର
ଧାତକାରେ ଧଇଲେ ସେ ଗାଣ୍ଡୀବକୁ କରି ।
ତୁଦେ ମନ୍ତ୍ର ସ୍ମରି ପଞ୍ଚବିଂଶ ବାଣ ମାରି
ଧାତକାରେ ଛେଦି ଦେଲେ କର୍ଣ୍ଣ ଧନୁ ଗୁଣ
ବାବନ ଶରେକ ମାରି ଘାଇବର ପାର୍ଥ
ଶତଖଣ୍ଡ କରି ଭଙ୍ଗଦ୍ୟନ୍ତେ କର୍ଣ୍ଣ ରଥ ।
ରଥ ଭଙ୍ଗନ୍ତେ ବିରଥ ରାଧାସୁତ ହେଲା
ଆରେକ ରଥେ ଚଢ଼ିଲା କ୍ଷତ୍ରୀ ଅନର୍ଗଳା ।
ଅଷ୍ଟ ପିଚ୍ଛୁଡ଼ା ମାରେ ରଥ ଧାଉଁକାରେ
ଭେଟାଇଲା ନେଇ ନନ୍ଦିଘୋଷର ସମ୍ମୁଖରେ ।
ଗୁଣରେ ବସାଇ ଏକଶତ ଶର କର୍ଣ୍ଣ
ଅର୍ଜୁନଙ୍କ ଉପରକୁ ବିନ୍ଧିଲା ବହନ ।
କୋପେ ଅର୍ଜୁନ ଯେସନ୍ତେ ବ୍ୟାଘ୍ରମୁନାଶର
ଛେଦ ପକାଇଲା ସବୁ ନାରଚ କର୍ଣ୍ଣର ।
ପୁଣି ବନ୍ଧିଲେ ନାରଚ ଅଗ୍ନିବାଣ ଜାଣି
ଭଙ୍ଗି ପକାଇଲେ କର୍ଣ୍ଣ ରଥ ସେହିକ୍ଷଣି ।
କର୍ଣ୍ଣକୁ ବିରଥ ଦେଖି ଶାଳ୍ୱବଳ ଶଲ୍ୟ
ପ୍ରକାଶ ବାଣ ମାଇଲା ଅର୍ଜୁନ ଉଲ୍ଲାଳ ।

ଏହା ଦେଖିଣ ବାବନ ଶର ମାରେ ପାର୍ଥ
ଶଲ୍ୟ ରଥ ଭଙ୍ଗିଗଲା ପାଇ ସେ ଆଘାତ ।
ବିରଥ ହୋଇଣ ତହୁଁ ଶଲ୍ୟ ମହାଶୟ
ମଦମତ୍ତ ହସ୍ତୀ ପୃଷ୍ଠେ କଲେକ ବିଜୟ ।
କର୍ଣ୍ଣ ଆସେ ବହିଲା ଏକ ମତ୍ତଗଜ ପିଠେ
ସଙ୍ଗ ହୋଇ ବେନି ଯୋଦ୍ଧା କଲେ ଶର ବୃଷ୍ଟି
ଶଲ୍ୟ ବୋଇଲେ ହେ କର୍ଣ୍ଣ ବଡ଼ିମକ ଗେଲ
ତୋତେ ଦେଇଥିଲେ ଯେଉଁ ଶକ୍ତି ଅଖଣ୍ଡଳ
କେତେକ ଦିନକୁ ସମ୍ପାଦ ଅଛୁ ସେ ଶକତି
କୃଷ୍ଣ ଅର୍ଜୁନ ଦୁହିଙ୍କୁ ମାରି ତୁ ଝଟତି ।
ଶଲ୍ୟର ବଚନ ଶୁଣି ରାଧାର ନନ୍ଦନ
ସୁମରି ବଧିବାମନ ଆଜ ମହୁତ୍ସାନ ।
ବାହାର କରି ଧଇଲା ସେ ବଜ୍ର ଶକତି
ଆଦିତ୍ୟ ଦେବତା ପ୍ରାୟ ଦିଶେ ତାର ଜ୍ୟୋତି
କର୍ଣ୍ଣର ହସ୍ତରେ ଦେଖି ବଜ୍ର ଶକ୍ତି ଶର
କର୍ଣ୍ଣ ପାଶୁଁ ରଥ ହରି କରିଣ ଅନ୍ତର
ବୋଇଲେକ ମୋର କଥା ଶୁଣ ହୋ ଜଗାଟି
ଏ ଶକ୍ତିକୁ ପ୍ରତିକାର କର ତୁ ଝଟତି ।
ଅର୍ଜୁନ ବୋଇଲେ ପ୍ରଭୁ କପାଁ ଏହା ଭଲ
କି ପୁରଇ ଏ ଶକ୍ତି ତୁମ୍ଭ କଲ୍ୟାଣେ ମୂଳ ।
କର୍ଣ୍ଣ ସମ୍ମୁଖକୁ ରଥ ବାହା ବେଗ କରି
ଷର୍ବସ୍ତ୍ରମାନେ ନନ୍ଦାକ ମାତେ ହେ ଶ୍ରୀହରି ।
ଭଲିଲେ କେଶବ ତହୁଁ ଚଳକୂଟ ବୁଦ୍ଧି
କପଟ ଏ ଶକ୍ତି କାର୍ଯ୍ୟ କରିବାକ ସିଦ୍ଧି ।
ବସ୍ତୁର କରି ଚିନ୍ତାଇ ହୃଦେ ଦାମୋଦର
ସ୍ୱର୍ଗେ ଆସନ ଟଳିଲା ପୁରନ୍ଦରଙ୍କର ।
ଧ୍ୟାନରେ ବସି ଜାଣିଲେ ହରିଙ୍କର ମନ
ପୁଷ୍ପକେ ବସି ପ୍ରବେଶ ହରି ସନ୍ନିଧାନ ।
ଇନ୍ଦ୍ରକୁ ହରି ସେଠାରେ କଲେ ସମ୍ଭାଷଣ
ନିଜ ସ୍ଥଳ ହୋଇ ଇନ୍ଦ୍ର କଲେକ ପ୍ରଣାମ ।
ଗୋବିନ୍ଦ ବୋଇଲେ ଶୁଣ ଆହେ ସୁରପତି
କେମନ୍ତେ କର୍ଣ୍ଣକୁ ଦେଲ ଏ ବଜ୍ର ଶକତି ।
ଇନ୍ଦ୍ର ବୋଇଲେକ ଆଗେ ସତ୍ୟ କରାଇଲା
ପଶ୍ଚାତେ କୃଷ୍ଣ ଅର୍ଜୁନ ମାରିବ ବୋଇଲା ।
ମୁଁ ବୋଇଲି ବ୍ରହ୍ମା ବିଷ୍ଣୁ ରୁଦ୍ରେ ରଣମଧ୍ୟେ
ଥିବେ ମାତ୍ର ଯାଲୁ ଇଚ୍ଛା ଦେଖିବୁ ତୁ ଯୁଦ୍ଧେ ।

ତ୍ରୈଲୋକ୍ୟ ନାଥ ଏଥକୁ ନ କରନ୍ତୁ ଚିନ୍ତା
ଏଥୁ ଉପୁଜିବା ପାଇଁ କି ଅଛି ଶଙ୍କତା ।
ଅଷ୍ଟାଳିଷ ଏହି ବଜ୍ରଶକ୍ତି ଯେ ଅଟଇ
ଇନ୍ଦ୍ରର ଯାହାକୁ ଜଣେ ଦେବାର ଯେ ପାଇଁ ।
ଥରେ ମାତ୍ର ଚେଷ୍ଟିଲେ ଏ ତା ହସ୍ତରୁ ଯିବ
ପୁଣି କର୍ଣ୍ଣର ହସ୍ତକୁ ଆଉ ନ ଆସିବ ।
ଯାହାର ହସ୍ତରେ ଥିଲେ ଏ ବଜ୍ର ଶକତି
ପରାଜିତ ନ ହୋଇବ କର୍ଣ୍ଣ ମହାରଥୀ ।
କର୍ଣ୍ଣଙ୍କୁ ନ ଜିଣିଲେ ନ ମରେ କୁରୁବଂଶ
ଶକ୍ତି ଟେପିଲେ ବଞ୍ଚାଇ ରଖି ନନ୍ଦଘୋଷ ।
ଏ ତ ଘୋରଯୁଦ୍ଧ ପୁଣି ଅନ୍ଧକାର ସତ
ଏଣୁ ଘୋରେ ପାର୍ଥେ ରକ୍ଷାକର ହେ ଶ୍ରୀପତି ।
ଏହା କହି ଅନ୍ତର୍ଦ୍ଧାନ ହେଲେ ସହସ୍ରାକ୍ଷ
ଶ୍ରୀକୃଷ୍ଣଙ୍କୁ ପଚାରିଲେ ପାଣ୍ଡବ ଉଦକ୍ଷ ।
କେଉଁକଥା ଶକ୍ର ଅଛି କହ ହେ ଗୋବିନ୍ଦ
ତାହା ଉପରକୁ ଦେବ ଏତେକ ପ୍ରମାଦ ।
ଏହି ନନ୍ଦଘୋଷେ ଅଛୁ ଆମ୍ଭେ ତିନିଜଣ
ଏଥିମଧ୍ୟ କାହେ ଦେବ ଭାବୁଛ ଆପଣ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭ ମୋର ପ୍ରାଣସଖା
ଯେପରି ହେଉ ତୋତେ ମୁଁ କରିବଇଁ ରକ୍ଷା
ଅର୍ଜ୍ଜୁନ ବୋଇଲେ ଧ୍ୱଜେ ଅଛି ହନୁମନ୍ତ
ତାହାକୁ ଦେବ କି ପ୍ରଭୁ ଭାବୁଛ ଏମନ୍ତ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭ ଶୁଣ ଧନଞ୍ଜୟ
ବଜ୍ରଅଙ୍ଗ ଅଟଇ ଯେ ପବନ ତନୟ ।
ପୂର୍ବେ ତାକୁ ବଜ୍ର କେଇ ଅଛନ୍ତି ବାସବ
ଏ ବଜ୍ର ଶକତି ତାର କି କରି ପାରିବ ।
ପାର୍ଥ ପଚାରିଲେ କହ ଆହେ ଦାମୋଦର
ବଜ୍ରାଙ୍ଗ କିପରି ହେଲା କହ ମୋ ଆଗର ।
ଶ୍ରୀକୃଷ୍ଣ ବୋଇଲେ ହନୁ ଯେବେ ଜନ୍ମ ହେଲା
ଖାଇବା ପାଇଁକି ତାର ମାତାକୁ ମାଗିଲା ।
ତାହାର ମାତା ଦେଖାଇ ଦିଅନ୍ତେ ସୂର୍ଯ୍ୟଙ୍କୁ
ଲୋହିତ ବରନ ଦେଖି ଯାନ୍ତେ ଭକ୍ଷିବାକୁ ।
ଦୈତ୍ୟ ମନେକରି ଇନ୍ଦ୍ର ବଜ୍ର ପ୍ରହାରିଲା
ବଜ୍ରାଘାତେ ହନୁମାନ ମୂର୍ଚ୍ଛିତେ ପଡ଼ିଲା ।
ବାୟୁପୁତ୍ର ଜାଣି ଇନ୍ଦ୍ର ତୋଷେ ଦେଲେ ବର
ବଜ୍ର ମାଇଲ ବଜ୍ରାଙ୍ଗ ହେଉ ତୋ ଶରୀର ।

ସେଦିନୁ ବଜ୍ରେ ନିର୍ମିତ ହନୁମାନ କାୟ
ତାର ହୃଦେ ଶକ୍ତି ପଡ଼ି କରିବା ଉପାୟ ।
ଅର୍ଜ୍ଜୁନ ବୋଇଲେ ହରି ଦୁର୍ଲ୍ଲଭ ଏ କଥା
ହନୁଙ୍କୁ କିପାଁ ପ୍ରମାଦ ଦେବ ଶକ୍ର ବୃଥା ।
ବଦଇ ସେ ଶୌରିସୁତା ସୁତ ଶ୍ୱେତଗଜା
ପ୍ରମଥ ପ୍ରସ୍ତୁତ ହୋଇ ଅଗ୍ରେ ପାଉ ପୂଜା ।
ଦକ୍ଷିଣଦ୍ୱାରେ ରକ୍ଷଣେ ଥିଲା ଅଧିକାରୀ
ଅନ୍ଧକ ବଧି ଆସନ୍ତେ ଦେବ ତ୍ରିପୁରାରି ।
ଦୁଆରେ ଗର୍ହଣ ତାଙ୍କୁ ପଥ ନିରୋଧିଲା
କିଏ ବୋଲି ଭିତରକୁ ପ୍ରବେଶ ନ ଦେଲା ।
ଷାଠିସହସ୍ର ବର୍ଷ ପୂଜା କରି ମହେଶ୍ୱର
ମହାଦୁଃଖେ ଆସୁଥିଲେ ପୁରକୁ ସତ୍ୱର ।
ତୁମ୍ଭ ଯହିଁ ନିରୋଧିଲ ପଥ ରହି ଦ୍ୱାରେ
ତୋହର ମସ୍ତକ ଶିବ ଛେଦିଲେ କୁଠାରେ
ମଣିଭଦ୍ର ନାମେ ତହିଁ ଥିଲାକ ରାକ୍ଷସ
ତୋହର ମସ୍ତକ ଘୋଟି କରିଲା ସେ ଗ୍ରାସ ।
କୁଠାରେ ସଜ ରକତ ଦେଖି ଗିରିସୁତା
ପୁଚ୍ଛନ୍ତେ ଶିବ କହିଲେ ଫେଡ଼ି ସର୍ବ କଥା ।
ଶୁଣି ବହୁ ଶୋକ କରି କହିଲେ ପାର୍ବ୍ବତୀ
ଅଭୂତରୁ କରିଥିଲି ତାକୁ ଜଗତପତି ।
ତୁମ୍ଭେ ଗଲ ଅନ୍ଧକକୁ ବଧିବାର ପାଇଁ
ଦକ୍ଷିଣ ଦ୍ୱାରେ ତାକୁ ମୁଁ ଥୋଇଁ ଜଗାଇ ।
ସେ ସ୍ନେହୀ ପୁତ୍ରକୁ ମୋର ବିନାଶ କରିଲ
ମହାଶୋକେ ମୋ ହୃଦକୁ ଜଳିବଳ କଲ ।
ଉମା ବାକ୍ୟ ଶୁଣି ହର ବୋଇଲେକ ଶୂଳୀ
ତୁମ୍ଭ ପୁତ୍ର ବୋଲି ମୁହିଁ ଜାଣି ତ ନ ଥିଲି ।
ଏଥିପାଇଁ ତୁମ୍ଭେ ଦେବ ଭାବନା ନ କର
ବଞ୍ଚାଇ ଦେବ ନିଶ୍ଚୟ ତୁମ୍ଭର କୁମର ।
ଏହା କହି ପଶ୍ଚିମରେ ଦ୍ୱାର ରକ୍ଷାଭାରି
ଶରଭମୌଳିକୁ ଡାକି କହିଲେ ଏପରି ।
ଐରାବତ ବଂଶେ ପୁଷ୍ପଦନ୍ତ ନାମେ ନାଗ
ତାହାର ମସ୍ତକ ଛେଦି ଆଣ ଯାଇ ବେଗ ।
ସେ ମୁଣ୍ଡ ଆଣି ଦିଅନ୍ତେ ଯୋଡ଼ି ତୁମ୍ଭ କନ୍ଧେ
ଜୀଆଇଲେ ଜୀବନ୍ୟାସ ମନ୍ତ୍ରେ ସଦାନନ୍ଦେ ।
ଏମନ୍ତ ଚରିତ ପ୍ରଭୁ ଈଶ୍ୱର ଅଟଇ
କି ବର୍ଣ୍ଣିବ ତୁମ୍ଭ ଗୁଣ ମୂର୍ଖ ଅଟେ ମୁହିଁ ।

ହେ ଦେବ ଗଣେଶ ତୁମ୍ଭ ପାଦେ ମୋର ଆଶ
ଦ୍ରୋଣ ପର୍ବକୁ ଲେଖଇ ଶ୍ରୀ ଶାରଳା ଦାସ ।

---

## ଗୌତମଋଷିଙ୍କ ଅହଲ୍ୟାଙ୍କୁ ଶାପ ଓ ହନୁମନ୍ତ ଜନ୍ମ ବିବରଣ

ମନୁଷ୍ୟଜା ପୁଚ୍ଛା କଲେ ମହା ତପୋଧନ
ଶୁଣିବାକୁ ଇଚ୍ଛା ହନୁମନ୍ତର ବୃତ୍ତାନ୍ତ ।
ବାନର ହୋଇ ବଳିଷ୍ଠ ଜଗତେ ସେ ହେଲା
ଏ କଥା ଶୁଣି ମନରେ ସନ୍ଦେହ ଜନ୍ମିଲା ।
ଅଗସ୍ତି କହିଲେ ରାଜା ତୁ କର ଶ୍ରବଣ
କହୁଛୁ ତୋ ଆଗେ ହନୁ ଜନ୍ମ ବିବରଣ ।
ଇନ୍ଦ୍ର ଆଦିତ୍ୟ ଦେବତା କପଟ ଛଦ୍ମବେଶ
ଗୌତମ ସ୍ତ୍ରୀ ଅହଲ୍ୟାକୁ କଲେ ହରଣ ।
ତାହାଙ୍କର ଔରସ୍ୟେ ଦେବ ପୁତ୍ର ଜାତ ହେଲେ
ସୋମଶୀଳ ଯବଶୀଳ ପୁତ୍ର ନାମ ଦେଲେ ।
ଗୌତମଙ୍କ ହୋଇଥିଲା ଗୋଟିଏ ଉଦର
କଣବଉଷର କନ୍ୟା ତା ନାମ ଅଞ୍ଜନା ।
ଇନ୍ଦ୍ର ଆଦିତ୍ୟଠୁ ହେଲେ ଯେଉଁ ଦେବପୁତ୍ର
ସେ ଦେବଙ୍କ ବୟସ ଯେ ଅଟେ ସାତ ସାତ
ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟାର ତିଥି
ରୋହିଣୀ ନକ୍ଷତ୍ର ସେ ଦିନ ବାର ବୃହସ୍ପତି ।
ତୈତଳ ନାମେ କରଣ ମୋକ୍ଷ ଯୋଗ ଅଛି
ବାସନ୍ତିକ ଗୌତମୀ ସ୍ନାନ କରିଯାନ୍ତି ।
ଦେବ ପୁତ୍ର ଦୁହିତାଙ୍କୁ ସଙ୍ଗତରେ ନେଇ
ଚନ୍ଦ୍ରଭାଗା ତୀର୍ଥକୁ ସେ ଗଲେ ସ୍ନାନ ପାଇଁ ।
ସ୍ନାନକରି ଚନ୍ଦ୍ରଭାଗା ତୀର୍ଥେ କରି ଧ୍ୟାନ
ଦେଲ ସାତଘଡ଼ି ଯହୁଁ ହେଲା ଅବସାନ ।
ବାହୁଡ଼ିଲେ ନିତ୍ୟକର୍ମ ସାରି ତପୋଧନ
ଆଦିତ୍ୟ ରଶ୍ମିରେ ବାଲି ହୋଇଲା ତପତ ।
ଗୋଡ଼ ପୋଡ଼ିବାରୁ କାଖ ଦେବପୁତ୍ରେ କଲେ
ଦୁହିତାକୁ ଗଉତମ ଚଳାଇ ଆଣିଲେ ।
ଅଞ୍ଜନା ବୋଇଲା ପିତା ତପ୍ତ ହୁଏ ବାଲି
ଗୋଡ଼ ପୋଡ଼ିଯାଏ ମୋର ନ ପାରଇ ଚାଲି
ଗୌତମ ବୋଇଲେ ତହୁଁ ଅଞ୍ଜନାକୁ ଚାହିଁ
ଦେବପୁତ୍ର କାଖେ ତୋତେ ବସାଇବ ନାହିଁ ।
ଅଞ୍ଜନା ବୋଇଲା ପିତା ତୋହର ଏ ବୁଦ୍ଧି
ଦୁହିଁ ପରର ପୁତ୍ରକୁ କାଖକରୁ ବସି ।
ଘର ଔରସେ ଏହାକୁ ଜାତ କଲା ମାତା
ସ୍ୱାଙ୍କୁ ଏଡ଼େ ସ୍ନେହ ତୁମ୍ଭେ କରୁଅଛ ପିତା ।
ମୁହିଁ ସବର୍ଣ୍ଣ୍ୟ ଜାତ ହୋଇଲି ତୁମ୍ଭର
ମୋତେ କାହିଁପାଇଁ ତୁମ୍ଭେ କର ଅନାଦର ।
ଅଞ୍ଜନା ମୁଖରୁ ଏହି ବଚନକୁ ଶୁଣି
କୋପରେ ଗଉତମ କହେ ଶିରଶୁଣି ।
ମୁହିଁ ବାନ୍ଧି ରଖିଥାଏ ତାର ତପଆତ୍ମା
କେମନ୍ତେ ହରିଲା ତାକୁ କେଉଁଣ ଦୁରାତ୍ମା ।
କହଇ ଅଞ୍ଜନାବାଳୀ ଶୁଣ ତୁମ୍ଭେ ତାତ
ଆକାଶୁ ଦେବ ପୁରୁଷ ଖସିଲେ ଦୁଇଶତ ।
ଦ୍ୱାରରେ ଜଗିକରି ଯେ ବସିଥିଲି ମୁହିଁ
ତାହାଙ୍କର ତେଜକୁ ମୁଁ ନ ପାରିଲି ସହି ।
ଦୁଆର ଛାଡ଼ିଣ ମୁଁ ଯେ ଗଲି ଆଡ଼ ହୋଇ
ଜନନୀ ଆମ୍ଭର ଯାଇ କି କି ତାଙ୍କୁ କହି ।
ତାହାଙ୍କର ଯୋଗୁ ଜାତ ଏ କୁମର ଦୁଇ
ତୁମ୍ଭେ ଯୋଗେଶ୍ୱର ଜାଣ ସବୁ ମନେ ରହି ।
ସଙ୍ଗେ ଅଧର ଜନ୍ମାଇ ତହୁଁ ଭଗବନ୍ତ
ଦେବକୁମରଙ୍କର ଯେ ଧରି ଦେଲ ହସ୍ତ ।
ବୋଇଲେଯେବେମୋ ସାର୍ଯ୍ୟ ଜାତହୋଇଥିବ
ତେବେ ମକର ପଶ୍ଚେ ପହଁରି ଆସିବ ।
ଯେବେ ହୋଇଥିବ ଦୁହେଁ ଜାରଜ କୁମର
ତେବେ ଏ ରୂପକୁ ଛାଡ଼ି ହୋଇବ ବାନର ।
ଏତେକ ବୋଲିଣ ତହୁଁ ଗଉତମ ଯୋଗୀ
ଅଗାଧ ବାସନଧିକୁ ତାଙ୍କୁ ଦେଲେ ଫିଙ୍ଗି ।
ଦୁହେଁ ପଡ଼ିଲେ ଯେ ତରଙ୍ଗ ବଂଶ ପୁଣ ଛାଡ଼ି
ଷାଠିଏ ସହସ୍ର ଗଭୀର ଜଳେ ଗଲେ ବୁଡ଼ି ।
ତହୁଁ ଉବୁରି ଅଇଲେ ଗୌତମ ବଚନେ
କପିମୁଖ ହୋଇଲେ ସେ ଭ୍ରାତା ଦେବ ଜଣେ
ବାନର କର ଚରଣ ପୁଣି ହେଲା ଲାଞ୍ଜ
କିଟି କିଟି ଶବ୍ଦ କଲେ ସେ ଦେବ ଅନୁଜ ।
ତାହା ଦେଖିଣ ବିସ୍ମୟ ହେଲେ ତପୋଧନ
ଅଞ୍ଜନାର ବଚନଟି ବୁଝିଲେ ସେ ସତ ।
ତହୁଁ ସଙ୍ଗେ ଦେବ ପୁତ୍ରେ ମୁନି କଲେ ତେଜ୍ୟା
କାଖେ ବସାଇଲେ ତହୁଁ ଆପଣା ତନୁଜା ।

ତତପର ହୋଇକରି ବନେ ତପୋଧନ
ଘଃଛ ଗୋଡ଼ାବନ୍ତ କପି ପୁଅ ବେନି ଜନ ।
ମୃତପିଣ୍ଡେ ସେ ଅହଲ୍ୟା ଅଛନ୍ତି ଯେ ଶୋଇ
ଗଉତମ ଋଷିବେଶ ହେଲେ ତହିଁ ଯାଇ ।
ମୃତସଞ୍ଜୀବନୀ ପଢ଼ି କଷାଇଲେ ନାସି
ବୋଇଲେ ଅନ୍ୟାୟୁକ୍ତ ହେଲୁ ଲୋ ପାମରି
ଯମଦଣ୍ଡ ଥାଉଁ ଥାଉଁ ଦେହ ପରେ ଦେଲୁ
ଅଜ୍ଞାନ ପ୍ରସ୍ତର ପ୍ରାପ୍ତ ତୋ ଦେହ କରିଲୁ ।
ଅଜ୍ଞାନରେ ଭୋଗ କଲୁ ହୁଅ ତୁ ପଥର
ନିଜ ଦୋଷ ପ୍ରତିଫଳ ଭୋଗ ନିରନ୍ତର ।
ଅହଲ୍ୟା ବୋଇଲେ ଯହୁଁ ଅଞ୍ଜନାକୁ ଗୃହିଁ
ତୁ ଅଇଲୁ ବେନିପୁତ୍ର ମୋର ଗଲେ କାହିଁ ।
ଗୌତମ ବୋଇଲେ ବୃଦ୍ଧ କଲୁ ସ୍ନେହ ପ୍ରୀତି
କପି ରୂପ ହେଲେ ତେଣୁ ତୋ ବେନି ସନ୍ତତି
ଏକ ଇନ୍ଦ୍ରସୁତେ ବୃଦ୍ଧ ନ ହେଲୁ ନୃପତି
ଗଙ୍ଗାକୂଳେ ପଡ଼ି ଲକ୍ଷେ ଇନ୍ଦ୍ର ଦେଖ ନିତ ।
ନାସି ବୋଲେ ଦୁସ୍ପଦ ଶାପ ଦେଲେ ମୋତେ
ପଥର ହୋଇବ କେତେକାଳ ପରିଯନ୍ତେ ।
ଶୁଣିଣ ଗୌତମ ଋଷି ବୋଲେ ମହାରାଗେ
ମୁକତ ହୋଇବୁ ତୁହି ଯେ ତ୍ରେତୟାଯୁଗେ ।
ତ୍ରେତା ଯୁଗରେ ଶ୍ରୀରାମ ହେବେ ଉତପନ୍ନ
କଉଶିକ ସଙ୍ଗେ ଯଜ୍ଞ ରକ୍ଷିବେ ଯାଇଣ ।
ପୁଣି ଭାଗୀରଥୀସ୍ନାନେ ତାଙ୍କୁ ନେବେ ଋଷି
ନିତ୍ୟକର୍ମ ସାରିବେ ସେ ତୋ ଉପରେ ବସି
ତାହାଙ୍କ ଚରଣ ଲାଗି ହୋଇବୁ ତୁ ପାଶ
ତେବେ ମୁକତ ହୋଇବୁ ଜାଣ ଲୋ ଦୋଷୀ
ଅହଲ୍ୟା ବୋଇଲା ଏହା କଲୁ ଲୋ ଅଞ୍ଜନା
ତୋହ ଲାଗି ଏହି ଶାପ ଦେଲେ ଋଷି ସିନା ।
ବେନିଟା ଟି ପୁଅ ମୋର ବାନର ହୋଇଲେ
ଏହି ଶାପ ଫଳୁ ମୁହିଁ ତୋର ମାତା ଥିଲେ ।
ତୋର ଗର୍ଭୁ ଯେଉଁ ପୁତ୍ର ହୋଇବଟି ଜାତ
ସେହି ବାନର ହୋଇବ ଏ କଥା ନିଶ୍ଚିତ ।
ଅଞ୍ଜନା ବୋଇଲା ମୁଁ ଯେ ବିବାହ ନୋହିବ
ସ୍ୱାମୀ ନ କରିବ କଦା ରତି ନ ଇଚ୍ଛିବ ।
ମାତାର ବଚନେ ସେହୁ ଅତିଶୟ କୋପ
ସକଳ ତ୍ୟଜିତ କରି କରିଲାକ ତପେ ।

ଗୌତମ ମହର୍ଷି ଦେଖି କନ୍ୟାର ଅବସ୍ଥା
ପ୍ରଚଣ୍ଡ ପବନେ ଡାକ କଲେ ଏ ବ୍ୟବସ୍ଥା ।
ମୋ କନ୍ୟା ତପ କରିବ ପର୍ବତ ଉପରେ
ଦୁର୍ବାସତ ଦେଉଥିବ ଏହା ସନ୍ନିଧିରେ ।
ଗୌତମ ବଚନେ ହେଲା ପବନ ଆହାର
ନସ୍ୱନ ବୃଜଣ ଥାଏ କରିବୁ ପ୍ରସାଦ ।
ପୁତ୍ରଙ୍କ ବଦନକୁ ନ ଶୁଣିବା ପାଇଁ
ତବା ସହି ନସ୍ୱନକୁ ସେହୁ ବୁଜଥାଇ ।
ନିରଞ୍ଜନ ଶିବେ ନବସହସ୍ର ବର୍ଷ ତହିଁ
ସତ୍ୟଯୁଗେ ଦୁସ୍ପଦ ତପ କଲା ସେହି ।
ସତ୍ୟଯୁଗ ଶୁକ୍ଳପକ୍ଷ ଏକାଦଶୀ ଦିନ
ଚନ୍ଦ୍ରବାର ଅନୁରାଧା ନକ୍ଷତ୍ରଟି ଜାଣ ।
ବଣ୍ଟିନାମରେ କରଣ ପ୍ରୀତି ନାମେ ଯୋଗ
ହର ପାର୍ବତୀ କ୍ରୀଡ଼ାରେ ଗଲେ ବନମାର୍ଗ ।
କାକ ରୂପେ ହର ଗୌରୀ ରଙ୍ଗରସ କଲେ
ସେ କ୍ରୀଡ଼ାରୁ କାକମାନେ ଜନମ ଲଭିଲେ ।
ତହିଁ ତଡ଼ାଗେ ଦେଖିଲେ ରାଜହଂସ ପନ୍ତି
ସେହି ରୂପକୁ ଧଇଲେ ଈଶ୍ୱର ପାର୍ବତୀ ।
ତାହାଙ୍କର ମେଳେ ହର ବଢ଼ାଇଲେ ରତି
ତହିଁରୁ ଯେ ସୂଚୀମୁଖୀ ହେଲେ ଉତପତ୍ତି ।
ପୁଣି ବନରେ ମିଳିଲେ ଭାଲୁଣୀଙ୍କ ମେଳେ
ତାଙ୍କ ରୂପକୁ ଧଇଲେ ଅତି କୁତୂହଳେ ।
ତହୁଁ କ୍ରୀଡ଼ାରଙ୍ଗେ ବେନି କରନ୍ତି ସୁରତି
ତହିଁରୁ ଉତ୍ପତ୍ତି ହେଲେ ଜାମ୍ବବାନ ମନ୍ତ୍ରୀ ।
ମନୋହର କାନନରେ ଦେଖି କପିପଲେ
ହର ସେ ରୂପ ଧଇଲେ ତାହାଙ୍କର କୁଳେ ।
ସ୍ୱାମୀ ବାକ୍ୟ ଅନୁଚିତ ଦେଖିଣ ପାର୍ବତୀ
ମର୍କଟୀରୂପ ଧଇଲେ ତହୁଁ ମହାସତୀ ।
ଶୃଙ୍ଗାରେ ଅଧର୍ମ ଅଟେ ଖଳ ଶୂଳଧାରି
ମର୍କଟ ମର୍କଟୀରୂପେ ରସ କ୍ରୀଡ଼ା କରି ।
ମହାତେଜ ଦେବ ଶୁକ୍ର ପଡ଼ିଲେଣ ରେତ
ପାର୍ବତୀ ବୋଇଲେ ରହ ସ୍ୱାମୀ ବିଶ୍ୱନାଥ ।
ଏ ବୀର୍ଯ୍ୟକୁ ନାଥ ଧରି ନ ପାରିବି ଗର୍ଭେ
ଅବଶ୍ୟ ଜନ୍ମ ହେବ ସନ୍ତାନ ତୁ ଏବେ ।
ସ୍ଖଳନ୍ତେ ସେ ବୀର୍ଯ୍ୟ ଦେବ ଧରୁ ପ୍ରଥମରେ
ମନାଏ ଖସିଣ ତହୁଁ ପଡ଼ିଲା କ୍ଷେତରେ ।

ସ୍ଫଟିକ ନିର୍ମ୍ମିତା ଧଳ-ମେଘମାଳ ପରି
ମୁକୁତା ଶଙ୍ଖ ଜଡ଼ିତ ମେଦନୀରେ ଭରି ।
ଆରେକ ମହାଏ ବହ୍ନି ପଡ଼ନ୍ତେ ଯିତରେ
ପୃଥ୍ବୀରେ ପୂରିଲା ଯେତେ ଖାଲ ଠିକରରେ ।
ଆରେକ ମହାଏ ଗିରି କନ୍ଦରରେ ଷେପି
ଝଷ୍ଟିରହ ଲୁହା ଆଦ ଉପୁଜେ ଅଦ୍ୟାପି ।
ଆଦ୍ଭୁତ ସ୍ରବନ୍ତେ ସାର୍ଥ୍ୟ ନ ସହିଲା ମହୀ
ଶ୍ରୀକରେ ଧଇଲେ ତହୁଁ ଜଗଜ୍ଜନସଇଁ ।
ମର୍କଟରାଜାଙ୍କୁ ଦେଲେ ଅଧମହା ଗାଳ
ତହୁଁ ଜାତ ହେଲା କପି ଗାର ଶତାବଳୀ ।
ଆଦ୍ଭୁତ ମହାଏ ପ୍ରଭୁ ଦେବନନ୍ଦନ୍ତ ହସ୍ତେ
ପ୍ରଚଣ୍ଡପବନ ହାତେ ଦେଲେ ତ ତୁରିତେ ।
ବୋଇଲେ ଦେବଙ୍କ ମଧ୍ୟେ ଅଟୁ ଅପୁତ୍ରିକ
ଏଣୁ ଏଥିରେ କାରଣ ପାଇବୁ ଅନେକ ।
ପବନ ମନରେ ପାଞ୍ଚେ ହୋଇଣ ବିସ୍ମୟ
ତାହା ଗର୍ଭେ ଏହା ନେଇ କରିବଇଁ ଥୟ ।
ମାତା ଶାପରେ ତପସ୍ୟା କରଇ ଅଞ୍ଜନା
ପ୍ରତ୍ୟହ ପବନ ଖାଇ ବଞ୍ଚଇ ଅଞ୍ଜନା ।
ଦେଖିକରି ମନେ ମନେ କଟିଣ ବସ୍ତର
ପବନ ନେଇ ଦେଲକ କରେ ଅଞ୍ଜନାର ।
ପ୍ରତିଦିନ ସେ ସୁନ୍ଦରୀ ଖାଏ ତାର ତଉ
କରେ ପଡ଼ିବା ମାତ୍ରକେ କଲା ଗର୍ଭଗତ ।
ଈଶ୍ବରଙ୍କ ମହାସାର୍ଥ୍ୟ ପଡ଼ନ୍ତେ ଉଦର
ଗର୍ଭ ବିକାଶି ହୋଇଲା ତେଜସ୍ବୀ କୁମର ।
ଗର୍ଭର ଭିତରେ କ୍ଷଣେ ରହିଣ କୁମର
ନିମିଷ ମାତ୍ରକେ ହେଲା ସୁବୃଦ୍ଧ ଶରୀର ।
ଗର୍ଭ ଭାର ବହି ସେ ଯେ ଆକୁଳତା ସତୀ
ବୋଇଲା ପବନ ଦେବ କଲା ଏ ଅନର୍ଥ ।
ଗର୍ଭ ବାହାର ହେବାକୁ ଲୋଡ଼େ ପୁତ୍ରମତି
ମନ୍ଦର ପର୍ବତେ ଉଠି ଗଲକ ତରୁଣୀ ।
ମନ୍ଦର ବୋଇଲା ମାତା ଯେଉଁ ପୁତ୍ର ତୋର
ଗର୍ଭ ବାହାର ହେବାକୁ କରଇ ବିସ୍ତର ।
ସେ ପୁତ୍ର ଗର୍ଭରୁ ତୋର ହୋଇଲେକ ଜାତ
ମୋ ପରି ମନ୍ଦର ଗିରି ହେବ ରସାଗତ ।
ଗିରିର ବଚନେ ବସ୍ଥା କଲକ କୁମାରୀ
ମେରୁ ପର୍ବତକୁ ତହୁଁ ଗଲା ଅପସରି ।

ଆଶ୍ବିନ ଶୁକ୍ଳପକ୍ଷ ପୂର୍ଣ୍ଣିମୀର ତଥି
ଅଶ୍ବିନୀ ଅନ୍ତରେ ବିଜା ନକ୍ଷତ୍ର ସାହାନ୍ତ ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ମାହେନ୍ଦ୍ରବେଳେ କୁମର ଉତପତି ଯୋଗ ।
ମର୍କଟ ବଦନ ଆଉ ମର୍କଟ ଲାଙ୍ଗୁଳ
କଟିରେ ବଜ୍ର କାଛଟି କର୍ଣ୍ଣରେ କୁଣ୍ଡଳ ।
ପୁତ୍ରକୁ ଦେଖି ବିଷାଦ ହୋଇଲା ଅଞ୍ଜନା
ଏସନକ ଶାପ ମୋତେ ମାତା ଦେଲା ସିନା ।
ଗୁରୁଜନ ବଚନ କି ହୁଅଇ ଅନ୍ୟଥା
ଶାପ ନାଶିବାକୁ ମୁହିଁ ନ ହେଲି ଶକତା ।
ଶତେ ସ୍ବରବର୍ଷ ମୁହିଁ ତପେ ଦେଲି ମନ
ତଥାପି ମାତାର ଶାପ ନ ହୋଇଲା ଆନ ।
ସମ୍ମୁଖେ ପୁତ୍ରକୁ ଥୁଇ ତହୁଁ ଗଲା ଉଠି
ଦୈବଯୋଗ୍ୟେ ଯେ ନ ସହିଁସ ତାହାକୁ ଲେଉଟି
ପୁତ୍ର ବୋଲେ ମାତା କ୍ଷୀର ନ ଦେଇ କପାଇଁ
ଶରୀର ବର୍ଦ୍ଧିବ କାହୁଁ କି ପଦାର୍ଥ ଖାଇ ।
ରଙ୍ଗଫଳ ଖାଅ ବୋଲି ମାତା ଦେଲା କହି
ମୋର ଶାପ ଶ୍ରୀରାମଙ୍କୁ ପ୍ରାପ୍ତ ହେବୁ ତୁହି ।
ଅମର ହୋଇଣ ତୁହି ଯୁଗେ ଯୁଗେ ଥିବୁ
କିଷ୍କିନ୍ଧ୍ୟା ପର୍ବତେ ରାମ ସଙ୍ଗତେ ଭେଟିବୁ
ଏହା କହି ନନ୍ଦନକୁ ତେଜିଗଲେ ମାଏ
ଦେଖେ ପୁତ୍ର ଦିନକର ହେଉଛନ୍ତି ଉଦୟେ ।
କ୍ଷୀର ସମୁଦ୍ର ବିକାଶି ଦିଶେ ରଙ୍ଗମୟ
ସେ ଶୋଭାକୁ ପଟାନ୍ତର ନାହିଁ ତ ବିଷୟ ।
ଆଦିତ୍ୟଙ୍କର ରଥକୁ ଚାହିଁଲା ବାନର
ଏହି ରଙ୍ଗଫଳ ବୋଲି ବିସ୍ମିତ ମନର ।
ମେରୁକୁ ଉଦୟଗିରି ଚଉଷଠି ଯୁଣ
ଅତ୍ୟନ୍ତ କ୍ଷୁଧାରେ ହେତୁ ଆକୁଳ ହୋଇଣ ।
ନିମିଷକେ ଡେଇଁଗଲା ଖାଇବାର ପାଇଁ
ଜନମାର ବଚନକୁ ମନରେ ଚିନ୍ତାଇ ।
ରଥ ଆକର୍ଷଣ କଲା ପବନ ଦୁଲାଳ
ଭୟେ ପଳାୟନ କଲେ ଦେବ ଅଂଶୁମାଳ ।
ସୁରନାଥଙ୍କୁ ଯାଇଣ କଲେକ ଗୁହାରି
ଆଜ କାହିଁପାଇଁ ମୋତେ ରାହୁ ଆସେ ଧରି ।
ଆଜ ରାହୁ ଗ୍ରାସିବାକୁ ନାହିଁ ମୋର ତିଥି
କପାଇଁ ଏ କୃତ୍ୟ ହେଲା କୁହ ସୁରପତି ।

ଆଦିତ୍ୟ ବଚନଯୁଁ ଶୁଣି ଦେବ ଆଖଣ୍ଡଳ
ବଜ୍ର ଧରି ବାହାରିଲେ ହୋଇ କୋପାନଳ
ଇନ୍ଦ୍ର ପାରିଜାତ ପୁଷ୍ପେ ଅଛନ୍ତି ଭୂଷିତ
ବଜ୍ରତେଜ ପ୍ରକାଶଇ ଅତ୍ୟନ୍ତ ଲୋହିତ ।
ଆଦିତ୍ୟ ରଥେ ଥିବାର ଦେଖିଲା କୁମର
ଏହି ରଙ୍ଗ ଫଳ ବୋଲି କ୍ଷେପିଲା ସତ୍ୱର ।
ଗିଳିବା ନିମନ୍ତେ ଚଞ୍ଚୁ କରନ୍ତେ ଉଦ୍ୟମ
ଇନ୍ଦ୍ର ବଜ୍ର ପ୍ରହାରିଲେ ହେଲା ଅପାଶ୍ରମ ।
ହନୁ ହାଡ଼ ଭଙ୍ଗେ ତାର ରଥ ତଳେ ପଡ଼ି
ପ୍ରାଣବାୟୁ ବୁଲିଗଲା ଶିଶୁ ଦେହ ଛାଡ଼ି ।
ମରୁତ ବୋଇଲେ ମୋତେ ଦେଇଥିଲେ ହର
ତାଙ୍କର ଦେବା ପୁତ୍ରକୁ ନାଶେ ପୁରନ୍ଦର ।
ପୁତ୍ର ବିଚ୍ଛେଦେ ମରୁତ ବାୟୁ କଲା ମନ୍ଦ
ଚରାଚର ଜୀବଜନ୍ତୁ ହେଲେ ଶ୍ୱାସରୁଦ୍ଧ ।
ଦଶଦିଗପାଳ ଘେନି ବ୍ରଜେ କୁଶପାଣି
ବୋଲି ଚରଣ ଧଇଲେ ହନୁମନ୍ତ ଆଣି ।
ପବନକୁ ବୋଇଲେ ତୁ ଦିଅ ଜୀବନ୍ୟାସ
ଆମ୍ଭର ଆୟୁଷ ଘେନ ବଞ୍ଚୁ ତୋର ଶିଷ୍ୟ ।
ସ୍ଥାନ ସ୍ଥାନକେ ଧଇଲେ ତାଙ୍କୁ ଦେବମାନେ
ବଜ୍ର ଅଙ୍ଗ ହେଉ ତୋର ବୋଇଲେ ସେମାନେ
ଦେବତାମାନଙ୍କ ଆୟୁ ପ୍ରାପ୍ତ ହେଉ ତୋତେ
ଶତ କଳ୍ପ କଳ୍ପାନ୍ତକ ବଞ୍ଚ ତୁ ଜଗତେ ।
ମଘବା ବୋଇଲେ ମୁହିଁ ମାରିଲି ଶକତି
ବଜ୍ର ଅଙ୍ଗ ହେଉ ତୋର ଆରେ କପିପତି ।
ବାୟୁକ ସନ୍ତୋଷ ହୋଇ ବସିଲା ଲାଞ୍ଜରେ
ବୋଇଲା ମନପବନେ ଚଢ଼ିବୁ ସତ୍ୱରେ ।
ହନୁହାଡ଼ ଭଙ୍ଗି ଥିବାରୁ ସର୍ବ ଦେବଗଣ
ହନୁମାନ ବୋଲି ନାମ କଲେ ଅର୍ପଣ ।
ଶୁଣ ଆହେ ଅରଜୁନ ବଦନ୍ତି ମାଧବ
ବିଜୟ ଶଙ୍କରର ଅଂଶ ସେ ହନୁ ସମ୍ଭବ ।
ଶ୍ରୀକୃଷ୍ଣ ବଚନ ଶୁଣି ବୋଲନ୍ତି ଅର୍ଜୁନ
ଏମନ୍ତ ଶାସ୍ତ୍ରେ ସମ୍ଭବ କପି ହନୁମାନ ।
ମୋର ରଥେ ଥାଇ ଏଥୁ ପାଇବ ଆଘାତ
ଅରିଗଣଙ୍କୁ ମୋହର ହୋଇବ ଧ୍ୱଜ ତ ।
ହେ ଦେବ ବାହା ମୋ ରଥ କର୍ଣ୍ଣର ସମ୍ମୁଖୁ
ମାରିବି ତାହାର ଶକତି ସହିତ ତାହାକୁ ।

ଅର୍ଜୁନ ବଚନେ ଦେବ ବାହିଲେ ତୁରଙ୍ଗ
ନନ୍ଦିଘୋଷ ରଥ କଲେ ରାଧେୟର ଆଗ ।
କର୍ଣ୍ଣ ଅର୍ଜୁନ ଦୁହେଁ ଯେ ହେଲେ ଅନାଅନି
ବିନ୍ଧିଲା ଘୋର ନାରାଚ ବୀର ଫାଲଗୁନ ।
ବହୁତ ନାରାଚ ଯହୁଁ ହୋଇଲାକ ବୃଷ୍ଟି
ଏକ ବାଣକରେ କର୍ଣ୍ଣ ପକାଇଲେ କାଟି ।
ପଛେ ଥାଇ ଦ୍ରୋଣଗୁରୁ ଚଳାବନ୍ତି ଥାଟ
ନବସସ୍ର ନୃପ ତୁଲେ ଓଗାଳିଲେ ବାଟ ।
ବିରାଟ ଶଙ୍ଖ ଉତ୍ତର ବେନିପୁତ୍ର ଘେନି
ହସ୍ତୀ ତୁରଙ୍ଗ ପଦାତି ବେନି ଅକ୍ଷୌହିଣୀ ।
ଦ୍ରୋଣ ବିରାଟର ସୈନ୍ୟ ଆସି କଲେ ମେଳ
ବାଜିଲା ସମରସିଂହା ହେଲା ମହାଗୋଳ ।
ରଥୀକି ରଥୀ ସମରେ ଓଗାଳିଲେ ଆସି
ହସ୍ତୀଯୋଦ୍ଧା ହସ୍ତୀଯୋଦ୍ଧା ହେଲେ କଷାକଷି
ପଦାତି ପଦାତି ହାନାହାନି ହେଲେ ବାଣ
ଧର୍ମଙ୍କ ଆଗରେ ଯୁଦ୍ଧ କଲେ ଗୁରୁ ଦ୍ରୋଣ ।
ନିମିଷେକ ଅବକାଶ ନ ପାଇଲେ ରଥୀ
ଖଣ୍ଡ ଖଣ୍ଡ ହୋଇ ବେଗେ ପଡ଼ିଲେ ସେ କ୍ଷିତି
ବେନିଦଳ ପ୍ରହାରେଣ ବଜ୍ରନାଦ ଶୁଭେ
ରକତରେ ରଙ୍ଗବର୍ଣ୍ଣ ହେଲା ମସ୍ତବେଗୀ ।
ଯମଭୁବନ ଦୂତଙ୍କୁ ନାହିଁ ଅବକାଶ
ମୃତ୍ୟୁଜନମାନଙ୍କର ଉପେକ୍ଷିଲେ ଦୋଷ ।
ବ୍ରାହ୍ମଣ ଚଣ୍ଡାଳ ଆଦି ପଡ଼ୁଛନ୍ତି ରଣେ
ପୁଷ୍ପକରଥେ ବସାଇ ନେଲେ ଦୂତଗଣେ ।
ମହାକକ୍ଷାବନ୍ତ ଅଟେ ଭରଦ୍ୱାଜ ବିପ୍ର
ନିଉପ୍ରୋଧ ନିର୍ଭୟ ସେ ଦୟା ନାହିଁ କିଛି ।
ପଳାଇବା ସଇନକୁ ଗୋଡ଼ାଇଣ ମାରି
ଶରଣ ବୋଇଲେ ମଧ୍ୟ ଉପ୍ରୋଧ ନ କରି ।
ସବେ ବିନଷ୍ଟ ହୋଇଲେ ଯୋଦ୍ଧା ଅନର୍ଯ୍ୟାପ
ବାର ଯୁଦ୍ଧେ କେ ପିତା କେ ଶତ୍ରୁ ମିତ୍ର ନୃପ ।
କଏ କାହା ତୁଲେ ରହିଁ ରଣ କରୁଅଛି
ମହାଗୋଳ ସେ ସଂଗ୍ରାମ ବାରି ନୁହେ କିଛି ।
ବିରାଟର ତୁଲେ ନବସସ୍ର ଯୋଦ୍ଧା ଥିଲେ
ଦ୍ରୋଣଙ୍କ ସମରେ ପାଞ୍ଚସହସ୍ର ପଡ଼ିଲେ ।
ଶଲ୍ୟଙ୍କୁ ଯେ ସହଦେବ ଜିଣିଲେକ ରଣେ
ଦୁଃଶାସନକୁ ଦୁର୍ଦ୍ଧର୍ଷ ଜିଣେ ଏକାକ୍ଷଣେ ।

ଦ୍ୱାଦଶସମ୍ପ୍ରା ଶକଟ ଦ୍ରୋଣ ପ୍ରହାରଲେ
ଶସ୍ତ୍ରଘାତେ ଅମ୍ବୁଦେଶ ନୃପତି ପଡ଼ିଲେ ।
ନୈଋତ ଦେଶର ରାଜା ନାମ ଜଳସେନ
ସେ ମଧ୍ୟ ପଡ଼ିଲା କ୍ଷଣେ ତେଜଣ ଜୀବନ ।
ହସ୍ତୀଙ୍କର ଗର୍ଜ୍ଜନରେ ନ ଦିଶେ ପଦାତି
ହାବୁଡ଼ାର ଆଘାତରେ ମଲେ କେତେ ହସ୍ତୀ
କାର କୁମ୍ଭସ୍ଥଳ ଭାଙ୍ଗି ଛୁଟେ ଘୋରହସ୍ତ
କାହାର ଚରଣ ଛିଣ୍ଡି ହୁଏ ଭୂମିଗତ ।
ବହନ୍ତେ ତୀକ୍ଷ୍ଣ ନାରାଚ ଅଶ୍ୱ କେତେ ରଣେ
ଅଶ୍ୱାରୋହୀ ସେହୁଁ ଫୁଟି ପୃଷ୍ଠଦ୍ୱାରେ ଚଳେ ।
ଭାର ଜାନୁ ଫୁଟି ଦେହ ଦିଶେ ରକ୍ତବର୍ଣ୍ଣ
ରକ୍ତନଦୀ ବହେ ମୃତ୍ତ୍ୟୁ ପିଣ୍ଡର କର୍ଦ୍ଦମ ।
ଜ୍ୟୋତିପୁରର ଶରତସେନ ମହୀପତି
ବସନ୍ତ ଉତ୍ତର ରଣେ ହୋଇଲା ଉଦ୍ଦୋତ ।
ପଞ୍ଚଦଶ ଯୋଦ୍ଧାକୁଳେ ଥିଲା ଯେ ବିହରି
ଟଙ୍କ ଉତ୍ତର ସମରେ ହୋଇଲା ନିପାତ ।
ଶାନ୍ତି ମଣ୍ଡଳର ରାଜା ଧୀର ବଜ୍ରବସ୍ତ୍ର
ତାହାର ଶର ଚ୍ଛେଦିଲା ନୃପତି ବସନ୍ତ ।
କାମିନୀକନ୍ଦର୍ପ ବୋଲି ଦ୍ୱୈଳଦେଶ ପତି
ପଞ୍ଚବାଣରେ ମାରିଲେ ବସନ୍ତ ନୃପତି ।
କୁବ୍ଜଦେଶ ଅଧିକାରୀ ରାଜା ଦୁରନ୍ତକ
ନକୁଳ କୁଳେ ସେ ଯାଇ ସମର କଲକ ।
ନକୁଳ ଶରେ ପଡ଼ିଲେ ନବସସ୍ତ୍ର ରଥୀ
ସହସ୍ରେ ଭୁଜଙ୍ଗ ଆଉ ଷଡ଼ସସ୍ତ୍ର ବାଜୀ ।
ପଦାତିକ ବଳ କେହି ପାରିବ କି ଗଣି
ଯେମନ୍ତେ ଗଙ୍ଗାର ବାଲି କୁହେ ପରମାଣି ।
ଦୁର୍ଲ୍ଲଭ ସମର ଅଟେ ନିଶି ଯୁଦ୍ଧକଥା
ସଂକ୍ଷେପିଣ କହିବାକୁ କେହି ସାମରଥା ।
ହେ ବୁଧଜନେ ଜଗନ୍ନାଥ ନାମ ଘୋଷି
ହୃଦେ ବାନ୍ଧି ଅନୁକ୍ଷଣେ ଭଜେ ଜନ ଗଣି ।
ସ୍ନାନ ଭୋଜନ ଶୟନ ଅବା କାର୍ଯ୍ୟ ସ୍ଥାନେ
ଜଗନ୍ନାଥ ନାମ ଘୋଷି ଚିନ୍ତ ସଦାମନେ ।
ଜପ ନିତ୍ୟ ଜଗନ୍ନାଥ ଶୁଚିମନ୍ତ ହୋଇ
ଦୁଃଖୀଜନ ଉଦ୍ଧାରଣ ସେହି ଭବତ୍ରାହି ।
ସଦବୁ ପରମାନନ୍ଦ ନିରଞ୍ଜନ ଯୋଗୀ
ଦୁଷ୍ଟଜନ ନିସୂଦନ କୁରୁବଳ ଭଙ୍ଗି ।

ବସୁଧା ସ୍ୱର୍ଗ ନ ସନ୍ତି ଜାରନ୍ତେ ଗୁହାର
କୌତୁକେ ଭାରତଯୁଦ୍ଧ କଲ ଚକ୍ରଧାରୀ ।
ଆହେ ଚଇତନ କହ୍ନା ଅବତାର ହେଲେ
ଭଇରବାକୁ ଆଣିଲେ ଏ ମର୍ତ୍ତ୍ୟମଣ୍ଡଳେ ।
ଭୈରବୀ ବୋଇଲା କହ ନ ପାରଇ ମନେ
ଯଶୋଦାଙ୍କ ଗର୍ଭେ ଥିବ ଅଷ୍ଟମାସ ଯାକେ ।
କୃଷ୍ଣ ବୋଇଲେ ଜନ୍ମିବ ଦେବକୀ ଉଦରେ
ବସୁଦେବ ପାଲଟିବ ମୋତେ ଗୋପପୁରେ ।
ଦେବକୀ କୋଡ଼ରୁ ତୋତେ ନେବ କଂସାସୁର
କଚାଡ଼ି ଉଆଇବ ସେ ପଥର ଉପର ।
ତୋର ପିଣ୍ଡ ଖସିପିବ ଗଗନର ପଥେ
ଭୈରବୀ ବୋଇଲା ମୋତେ କି ଦେବୁ ଶ୍ରୀହସ୍ତେ
ଛଅଶ ସସ୍ତ୍ର ଜବନ ଯେବେ ଦେବୁ ବଳ
ତେବେ ତୋ ସଙ୍ଗେ ସର୍ବଦା ଥିବ ବନମାଳୀ ।
ଏତେକ ମନୁଷ୍ୟ ଯେବେ ନଦେବୁ ଶ୍ରୀହରି
ସକଳ ଖାଇବ ତୋର ବଂଶ ଆଦିକରି ।
କେଶବ ବୋଇଲେ ମୋର ହେଲା ସନମତ
ସତ୍ୟ ମନାଇ ତାହାଙ୍କୁ ଆଣିଲେ ଅଚ୍ୟୁତ ।
ଯଶୋଦା ଗର୍ଭେ ଭୈରବୀ ଜନ୍ମେ ଗୋପପୁରେ
କୃଷ୍ଣ ଜନମ ଲଭିଲେ ମଥୁରା ନଗରେ ।
ବସୁଦେବ ନିଶାକାଳେ ପାଲଟାଇ ନେଲେ
କେହି ନ ଜାଣିଲେ ତାକୁ ବେଗେ ସେନଗଲେ
ଯଶୋବନ୍ତୀଙ୍କ କୋଳରେ କୃଷ୍ଣଙ୍କୁ ଶୁଆଇ
ଭଇରବୀଙ୍କି ଆଣିଲେ ତହୁଁ ପାଲଟାଇ
କୁମର ଜାତ ଶୁଣିଣ ଧାଏଁ କଂସାସୁର
ଭୈରବୀଙ୍କ କଚାଡ଼ିଲା ପଥର ଉପର ।
ବିଜୁଳିପ୍ରାୟେ ହୋଇଣ ଗଲା ଅନ୍ତରୀକ୍ଷେ
ବୋଇଲା ତୋହର ଶତ୍ରୁ ଗୋଷ୍ଠରେ ପ୍ରତ୍ୟକ୍ଷେ
ଏତେକ କହିଣ ତହୁଁ ଅଇଲ ବଜୁଳି
ଗୋପପୁରରେ ବଢ଼ିଲେ ସୁଖେ ବନମାଳୀ ।
ପୂତନା ଶକଟା ଷଣ୍ଢ ଆଉ ବକାସୁର
ମାରି ଭୈରବୀଙ୍କ ହେଲେ ରକ୍ତ ପାନକର ।
ଚାଣୁର ମୁଷ୍ଟିକ କେଶୀ କୁବଳୟା ବ୍ୟୋମା
ଶତମୁଖ ବ୍ୟାଘ୍ରମୁଖ ଶ୍ୱାମୁଖାଦି ନାମା ।
ମାରିଲେ ସେ କଂସ କେଶୀ ମୁରେ କହୁଦୈତ୍ୟ
ଦେଖିଲେ କହନ୍ତି ତାହା କୁହେଲ କୋଟି ସାତ

କଂସ ନିସୂଦନେ କଲ୍ଲ ଜରାସନ୍ଧ ଯୁଦ୍ଧ
ଗୋମତ ଯୁଦ୍ଧରେ ହେଲେ ଲକ୍ଷେକ କବନ୍ଧ ।
ଲହ ଲହ ଜିହ୍ୱା ଭଇରବୀ ପ୍ରସାରଣ
ଯେ ଯୁଦ୍ଧେ ପଡ଼ନ୍ତି ତାଙ୍କ ରକ୍ତ କରେ ପାନ
ବହୁ ରୁଧିର ପାଇଲେ ବାଣାସୁର ଯୁଦ୍ଧେ
ଦୈତ୍ୟ ମାରି ଦେଲେ କୃଷ୍ଣ ଆଟିଷ କବନ୍ଧେ
କୁଶମଣ୍ଡଳେ ନିକୁମ୍ଭ ସମରର କାଳେ
ଭୂତକେଶୀ ବଳ୍ବକଟ ସୁବଟ ବଧିଲେ ।
କାଳନ୍ଦୀବନେ ଯେ କାଳକର ଦୈତ୍ୟ ମାରି
ଦେବାଙ୍କି ଦେଲେ କବନ୍ଧ ତହିଁ ଶତସ୍ତର ।
ଗୋସିଂହ ଶମ୍ଭୁସିଂହ ଯେ ବହ୍ନିସିଂହ ତିନ
ଏହାଙ୍କ ଭୁଜେ କବନ୍ଧ ହେଲେ ଲକ୍ଷ ତିନ ।
ମୁଣ୍ଡାସୁର ଅମ୍ଭାସୁର କଦମ୍ବ ଅସୁର
ବଧିଣ କବନ୍ଧ ହେଲେ ଶତ ଯେ ପନ୍ଦର ।
କାଳନେମି ମହାରଥ ଖଳଙ୍କ ମାରିଣ
ଲକ୍ଷେ କବନ୍ଧ ହେଲେ ଯେ ଏହାଙ୍କ ମଧେଣ ।
ମଗଧେଶ ଜରାସନ୍ଧ ଦୈତ୍ୟ ବଧ କଲେ
ଲକ୍ଷେକ କବନ୍ଧ ମାରିଦେଲେ ସେତେବେଳେ
ପୂର୍ବ ପଶ୍ଚିମ ପୁଣି ଉତ୍ତର ଦକ୍ଷିଣ
ପାଣ୍ଡବେ ଜିଣିଲେ କରି ସବାଙ୍କୁ ବରଣ ।
ପଶ୍ଚିମ ଦିଗରୁ ଶ୍ୟାମ ସୁରଖଳ ମାରି
ଭୈରବୀଙ୍କୁ ପୂଜା କଲ ମନ ତୋଷକରି ।
ଉତ୍ତରଦିଗେ ଅର୍ଜୁନ କରି ଘୋର ଯୁଦ୍ଧ
ସମର୍ପିଲେ ସେ ସବୁରି ସହସ୍ର କବନ୍ଧ ।
ନକୁଳ ଦକ୍ଷିଣ ଦିଗେ ବିଜୟ ହେବା କାଳେ
ପଞ୍ଚଷଠି କବନ୍ଧ ଯେ ଦେଲ ସେ ମଣ୍ଡଳେ ।
ପୂର୍ବଦିଗକୁ ଗମିଲ ମନ୍ତ୍ରୀ ସହଦେବ
ଦ୍ୱାବିଂଶ କବନ୍ଧ ତହିଁ ଦେଲ ଆହେ ଦେବ ।
ପୁଣିହିଁ କଠାଳ ନହୁଁ କଲ ଭଦ୍ରକାଳୀ
ଏ ହେତୁ ଭାରତ ଯୁଦ୍ଧ କଲେ ବନମାଳୀ ।
ଅନେକ ଯୁଦ୍ଧ ହୋଇଲା ମେରୁଶୂଳ କୂଳେ
ଚଉଦଶତ କବନ୍ଧ ତହିଁ ମାରି ଦେଲେ ।
ଆହେ ଚଇତନ ଯୁଦ୍ଧେ ଯେତେ ମୃତ୍ୟୁ ଲେଖି
ସକଳ କବନ୍ଧ ନେଇ ଦେଲେ ଭୈରବୀକି ।
ଜଳଧର ବ୍ୟୂହେ ଗଲେ ଘେନି ଅର୍ଜୁନକୁ
ଦଣ୍ଡାଣ୍ଡେ ମ୍ଲେଚ୍ଛ ମାରିଦେଲେ ଭୈରବୀଙ୍କୁ ।

ଶଏ ଷାଠିଏ କବନ୍ଧ ଚକ୍ରବ୍ୟୂହେ ମାରି
ଶକଟବ୍ୟୂହରେ ହେଲେ ଏକଶ ବାସ୍ତର ।
ହେ ଚୈତନ୍ୟ ଗ୍ରହକାଳେ ହୋଇଲ ସମର
ତହିଁ ପଡ଼ିଲେ କବନ୍ଧ ତିନଶ ପନ୍ଦର ।
ଅଶେଷ ପୁରୁଷ ତୁହି ସର୍ବ କଲୁ ଜୟେ
ପୁଣି ନାଶ କରୁଅଛୁ ଭୈରବୀର ଭୟେ ।
ପ୍ରଭୁବର ନନ୍ଦପଷ ସୁନ୍ଦର ନିର୍ଭୟ
ଧୀରଜନ ହେଣ୍ଡ ତଙ୍କ ମନ କର ଥୟ ।
ଅକାରଣେ ପ୍ରତିକୂଳ ହୋଇଲେ ମା କାଳୀ
ଜୟ ଜଗନ୍ନାଥ ସତ୍ୟ ଏହି ଭଳି ।
ଏତେ ସୈନ୍ୟ ମଲେ ମହାଭାରତ ସମରେ
ମୃତପିଣ୍ଡ ଉଡାହେଲ ଆକାଶ ଉପରେ ।
ରକ୍ତ ମାଂସ ସବୁ ଖାଇ ସେହି ଭଇରବୀ
ଚେଣୁକଣ ମୃତପିଣ୍ଡ ନ ରହଇ ଭୁବି ।
ଏମନ୍ତ ଚରିତ ଆଉ ଏମନ୍ତ ପୁରୁଷ
ମାନବ ଶରୀର ମୁହିଁ ବହିବଇଁ କସ ।
ତୁଳସୀବଲ୍ଲଭ ଥାଉ ମମ ହୃଦଗତେ
ଶୂଦ୍ରମୁନି ଶାରଳା ଯେ କହଇ ଭାରତେ ।

---

## ଘଟୋତ୍କଚ ବଧ ଓ ତାହାର ପୂର୍ବ ଶାପ ବିବରଣ

ଅଗସ୍ତ୍ୟଙ୍କୁ ପଚାରିଲେ ମନୁ ନୃପବର
ଏଥୁଅନ୍ତେ କିସ କଲେ କର୍ଣ୍ଣ ମହାବୀର ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ନୃପ ଶୁଣ ହେ ନରେଶ ।
ଆହେ ଚୈତନ୍ୟ ବସିଷ୍ଠ କର୍ଣ୍ଣ ହେଲେ ଭେଟ
ଅନେକ ସମର ତହୁଁ କଲେ ବସିଷ୍ଠ ।
ହାଦୋଡ଼ାଶର ଗୋଟିଏ ମାଇଲାକ କର୍ଣ୍ଣ
ବସିଷ୍ଠର ରଥ ଭଗ୍ନ ହୋଇଗଲା ଚୂର୍ଣ୍ଣ ।
ଗଜେକ ଆରୋହି ପୁଣି ମତ୍ସ୍ୟ ଅଧିପତି
କର୍ଣ୍ଣକୁ ମାଇଲା ତହିଁ ଉମ୍ଭୁରୁ ଶକତି ।
ନର୍ଯାତ ବାଣରେ ତାକୁ ନିବାରି ରାଧେୟ
ପୁଣି ଧନୁକୁ ଛେଦିଲ ମାରି ଶରତ୍ରୟ ।
ବସିଷ୍ଠର ହସ୍ତୀ ଛଇଘାତେ ଦେଲ ଦଳ
ସୁତୀକ୍ଷ୍ଣ ବାଣ ପ୍ରେରିଣ ନାମ ଜ୍ୱାଳାବଳୀ ।

ମତ୍ତଗଜ ପଡ଼ନ୍ତେ ସେ ଆରୋହିଲା ବୃଷ
ପରିଘ ଘେନି ଧାଇଁଲେ ମତ୍ସ୍ୟଦେଶ ଶିଷ୍ୟ ।
ବୁଲାଇଣ କର୍ଣ୍ଣଙ୍କୁ ସେ ମାଇଲା ପଟ୍ଟିଶ
ଛେଦିଲା ବାବଲଶର ପେଷି ତାହା ବେଗ ।
କ୍ଷୁମ୍ବୁରୁ ଶର ମାଇଲା କର୍ଣ୍ଣ ଖଣ୍ଡିଣ ଗଦା
ଘଇଘୁଡ଼େ ନକଳଳା ପଡ଼ ତାର ସ୍ନେହା ।
ଫୁଟିଣ ନାରାଚ ଆସି ପଶିଲା ତା ହୃଦେ
ବସନ୍ତ ଯେ ଅସାଷ୍ଟମେ ପଡ଼ିଲେ ହାଦେ ।
ପୁଣି ଅର୍ଦ୍ଧଚନ୍ଦ୍ର ବାଣ ବନ୍ଧ ଧାରମଣି
ବସନ୍ତ ଶିର କମଳ ପକାଇଲେ ହାଣି ।
ସଂଗ୍ରାମେ ପତନ ଯନ୍ତୁଁ ହୋଇଲା ବସନ୍ତ
ଘୋଡ଼ାଇ ମାଇଲା କର୍ଣ୍ଣ ମତ୍ସ୍ୟଦେଶ ଆଠ ।
ଗଜେଣ ସଇନ ତହୁଁ ପଳାଇଲେ ଡରେ
ନନ୍ଦଘୋଷ ନେଇ କୃଷ୍ଣ ରଖିଲେ ସମ୍ମୁଖେ ।
ବସନ୍ତ ନିଧନ ବାର୍ତ୍ତା ଶୁଣି ବୀର ପାର୍ଥ
ଦୁର୍ଜ୍ଜୟ ନାରାଚ ଘେନ ବନ୍ଧିଲେ ଉଦ୍ଧତ ।
କର୍ଣ୍ଣ ସଙ୍ଗତରେ ଥିଲେ ଅଯୁତେକ ରଥୀ
ଅର୍ଜ୍ଜୁନ ଶରଘାତରେ ହୋଇଲେ ବିକୋଣ୍ଡ ।
ବଙ୍ଗୀର ଦେଶ ରାଜା ନାମ ବୀରବାହୁ
ଅର୍ଜ୍ଜୁନ ଶର ଘାତରେ ପଡ଼ ମଲା ସେହୁ ।
କାଷ୍ଠକଦେଶର କର୍ତ୍ତା ରାଜା ଜୁଜୁପାଷ
ତାହାର ଭୁଲେ ପଡ଼ିଲେ ଯୋଦ୍ଧା ତିନିଲକ୍ଷ ।
ଶଲ୍ୟ ବୋଇଲା ହେ କର୍ଣ୍ଣ ସ୍ଵଜାନ ଲେଉଟି
ତୋର ଦେଖନ୍ତେ ସଖା ଏ ମଲେ କୋଟି କୋଟି
ତୋହର ବଳେ ପାଣ୍ଡବେ ରାଜ୍ୟ ଗ୍ରୁଢ଼ିଗଲେ
ତୁ ଦେଖୁଁ ଅଠସ୍ତଳଶ ସସ୍ର ରାଜା ମଲେ ।
ହେ କର୍ଣ୍ଣ ବନ୍ଧୁ ମରାଇ ନଜେ ହେଉ ସୁଖୀ
ଶୃଗାଳ ସଙ୍ଗତେ ତେଣୁ ତୋତେ ମୁଁ ଲେଖି
କୃଷ୍ଣାର୍ଜ୍ଜୁନ ମାରିବାକୁ ଯେକନ୍ତୁ ଶକତ
ସେ ଦୁହେଁ ମଲେ ନଷ୍ଟ ହୋଇପିବ ପୃଥ୍ଵୀ
କର୍ଣ୍ଣ ଶଲ୍ୟ କଥାବାର୍ତ୍ତା ହୋନ୍ତ ପରସ୍ପରେ
ଘଟୋତ୍କଚ ମିଳେ ନନ୍ଦଘୋଷର ଆଗରେ ।
ହୃଷ୍ଟଭ କର୍ଣ୍ଣ ଅର୍ଜ୍ଜୁନଙ୍କର ଘୋର ଯୁଦ୍ଧ
ଦୁର୍ଲକ୍ଷ ଶ୍ରାମ ମାଇଲେ ତିନ ଯେ ଉଗ୍ରଙ୍କ ।
ଶକୁନ ବୋଇଲା ଶୁଣ ମାନତନ୍ଦବର୍ତ୍ତୀ
ଏତ୍କ୍ଷଣି ସୈନ୍ୟ ତୋର ହେବ ବିନଶ୍ୟନ୍ତି ।

କର୍ଣ୍ଣ ଆଗେ ନନ୍ଦଘୋଷ ପୁଣି ଘଟୋତ୍କଚ
ବାମପାଶେ ବୃକୋଦର ଡାହାଣେ ଦୁର୍ଦ୍ଧର୍ଷ ।
ବନ୍ଶ ସହସ୍ର ରାଜା ତିନସସ୍ର ହାତୀ
ଦୁଇକୋଟି ଯୋଦ୍ଧା ସାତ ଅର୍ବୁଦ ପଦାତି ।
କର୍ଣ୍ଣ ଶ୍ଵରଆଡ଼ଯାକ ଘେରିଲେଣି ଆଟ
ଏହିକ୍ଷଣି କର୍ଣ୍ଣବୀର ପ୍ରାଣେ ହେବ ନଷ୍ଟ ।
ଶକୁନ ବଚନେ ରାଜା ମାନଚନ୍ଦବର୍ତ୍ତୀ
ବିଂଶଲକ୍ଷ ଯୋଦ୍ଧା ଘେନ ଧାଇଁଲେ ଉଦ୍ଧତ ।
କର୍ଣ୍ଣର ସଙ୍ଗତେ ଆସି ହୋଇଲେକ ସଖା
ଷଡ଼ଚକ୍ର ସୈନ୍ୟ ଯେତେ କେ କରିବ ଲେଖା
ଏତେ ମୃତଶବ ଦେଖି ରାଜା ଦୁର୍ଯ୍ୟୋଧନ
କ୍ଷେ ବୈଦ ବୋଲି କଥାକେ ମାରେ କରମାନ
କ୍ଷେ ନଇନ୍ଦ ମୋହର ତୁ ବଢ଼ାଇଲୁ ରାଜ୍ୟ
ତୋ ଯଶ ନନ୍ଦିବୁ ଥାଉଁ ମୁଁ ହେଲି ଅକାର୍ଯ୍ୟ
ଆଦ୍ୟନ୍ତୁ ତୋର ବାହୁକୁ ମୁଁହିଁ କରି ଆଶ
କଲ୍ପତରୁ ଆଶ୍ରେ କରି ହୋଇଲି ନିରାଶ ।
ରାଜାର ବଚନ ଶୁଣି କର୍ଣ୍ଣ ମହାରଥୀ
କୋପରେ ଘେନିଲା ତହୁଁ ବଜ୍ରର କେଣ୍ଡ ।
କ୍ଷେ ପିତା ବାସବ ମୋତେ ଦେଲୁ ସତ୍ୟକରି
ମାରିବ କୃଷ୍ଣ ଅର୍ଜ୍ଜୁନ ପ୍ରସାଦେ ତୋହରି ।
କୋପରେ ହୋଇ ତହୁଁ ବୁଲାଏ ଶକତି
ଆକାଶ କମ୍ପିତ ହେଲା କମ୍ପେ ବସୁମତୀ ।
ନାରାୟଣ ଆଜ୍ଞା ଦେଲେ ଘଟୋତ୍କଚେ ରାଇ
କର୍ଣ୍ଣ ଆସୁଅଛି ବଜ୍ରଶକତି ବୁଲାଇ ।
ଏକ୍ଷଣି ଯେପିକ ତୋତେ ଖଣ୍ଡିଣ ବଜ୍ରଶର
ନନ୍ଦଘୋଷ ପଚ୍ଛକତ ଲୁଚ୍ ତୋ ଶରୀର ।
ନାରାୟଣଙ୍କ ବଚନେ ହିଡ଼ିମ୍ବୀର ସୁତ
ନନ୍ଦଘୋଷ ପଚ୍ଛକତ ଲୁଚିଲା ଉଦ୍ଧତ ।
କପିକେତନ ଧ୍ଵଜରେ ଥିଲା ହନୁମନ୍ତ
ତାକୁ ରଇ ଆଜ୍ଞା ଦେଲେ ଦେବ ଜଗନ୍ନାଥ ।
କର୍ଣ୍ଣ ଦେଖୁଅଛି କ୍ରୋଧେ ଅଶନ ଶକତ
ଯାକୁ ଇଚ୍ଛା ବଧକରି ଯାଉ ସେ ସଂପ୍ରତ ।
କୋପରେ ବଜ୍ର ଶକତ ବୁଲାଇଣ କର୍ଣ୍ଣ
ବୋଲେ କୃଷ୍ଣାର୍ଜ୍ଜୁନ ନାଶ କର ତୁ ବହନ ।
ହନୁମନ୍ତ ସ୍ୟନ୍ଦନକୁ ଝପୁ ଲୁଚିହଲେ
ମହାରାଗରେ ସେ ଲୁପ ପଶିଲା ପାତାଳେ ।

ହିଡ଼ମ୍ବିଙ୍କର ନନ୍ଦନ ରଥ ପଛେ ଥିଲା
ତାହାର ହୃଦରେ ଯାଇ ସେ ବଜ୍ର ପଡ଼ିଲା ।
ବକ୍ଷେ ପଡ଼ନ୍ତେ ଭୂମିରେ ପଡ଼େ ମୋହ ହୋଇ
ଶରସ୍ତମ୍ଭ ନନ୍ଦନଙ୍କ ଶତେଯୂଣ ଯାଇ ।
ହନୁମନ୍ତ ସେ ରଥକୁ ପୁଣି ଆଣେ ତୋଳି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ବନମାଳୀ ।
ଅନେକ ଆନନ୍ଦେ କୃତକୃତ୍ୟ ହେଲେ ହରି
ଉପାୟେ କେଶବ କର୍ଣ୍ଣ ଦର୍ପକୁ ସଂହାରି ।
ଇନ୍ଦ୍ରଦେବତାଙ୍କ ମନୁ ଛୁଟିଗଲା ଭ୍ରାନ୍ତି
ଦେବତାମାନଙ୍କ ସେନ ଆନନ୍ଦ ହୁଅନ୍ତି ।
ଉପାୟେକ ଜଗନ୍ନାଥ କଲେ ଚକ୍ରକୂଟ
କୌରବ ବଳଧ୍ୱଂସନ ଜଗଜ୍ଜନ ଶ୍ରେଷ୍ଠ ।
ସେ ଦେବଙ୍କ କେଉଁମାୟା ତାର ଅନ୍ତ ନାହିଁ
କେ ତାହା ବୁଝିପାରିବ ନରଦେହ ବହି ।
ସଞ୍ଜୟକୁ ଡକାଇଣ କହେ ଧୃତରାଷ୍ଟ୍ର
ପାଞ୍ଚଜନ୍ୟ ଶଙ୍ଖନାଦ ବଢ଼ିଲ ଉତ୍କଟ ।
ସଞ୍ଜୟ ବୋଇଲା ଆହେ ଶୁଣ କୁରୁପତି
କର୍ଣ୍ଣ କୁଣ୍ଡଳ କବଚ ନେଲେ ସୁରପତି ।
ଦାନ ସମୟରେ ତାଙ୍କର ନ ଚଳିଲା ରଥ
ପ୍ରତିଗ୍ରହେ ବଜ୍ରଶକ୍ତି ଦେଲେ ସୁରନାଥ ।
ମଘବା ବୋଇଲେ କାର୍ଯ୍ୟକାଳେ ସୁମରିବୁ
ଏହି ବଜ୍ରଶର ଥରେ ମାତ୍ରକ ପେଷିବୁ ।
ସାମାନ୍ୟ ସମରେ ଏହା ନ ପାରିବୁ ସେଣ
କର୍ଣ୍ଣ ବୋଇଲା ମାରିବ କୃଷ୍ଣାର୍ଜ୍ଜୁନ ବେନ ।
କୃଷ୍ଣାର୍ଜ୍ଜୁନଙ୍କୁ ଦେଖିଣ କର୍ଣ୍ଣେ କହେ ଶଲ୍ୟ
ଏ ଦୁହିଙ୍କୁ ବଜ୍ରଶକ୍ତି ମାର ମହାମଲ୍ଲ ।
ଶଲ୍ୟ ବଚନେ ଇନ୍ଦ୍ରଙ୍କୁ ମାଗିଲା ଶକତି
ଦେଖି ରଥ ପାତାଳକୁ ନେଇ ବିଶ୍ୱପତି ।
ମାନଗୋବିନ୍ଦ ଜିଜ୍ଞାସ କରନ୍ତେ କର୍ଣ୍ଣକୁ
ବେଗେ ଶକତି ପେଷିଲା କୃଷ୍ଣଅର୍ଜ୍ଜୁନଙ୍କୁ ।
ବେଗେ ବଞ୍ଚାଇଲେ କୃଷ୍ଣ ନନ୍ଦିଘୋଷ ରଥ
ଘଟୋତ୍କଚ ପରେ ପଡ଼ି ସେ ହେଲା ନିପାତ ।
ଧୃତରାଷ୍ଟ୍ର ବୋଲେ ବଡ଼ ଦୁର୍ଲ୍ଲଭ ଏ କଥା
ଦୈବତା କାର୍ଯ୍ୟ କେମନ୍ତେ ହୋଇଲା ଅନ୍ୟଥା
ଘଟୋତ୍କଚର ଆବର ଥିଲା କେଉଁ ଦୋଷ
ସେଥିପାଇଁ ବଜ୍ରଘାତେ ହୋଇଲା ବିନାଶ ।

ଗାଲବ ନନ୍ଦନ ବୋଲେ ଶୁଣ ନୃପମଣି
ରାଜସୂୟ ଯାଗରେ ମୁଁ ଯାହା ଅଛି ଶୁଣି ।
ବ୍ୟାସ ଯେତେବେଳେ ଦେଲେ ସମ୍ପୂର୍ଣ୍ଣ ଆହୁତ
ଅଗ୍ନି ଶିଖା ନ ସେକ୍ଷଣ ଦିଶଇ ଅମୂର୍ତ୍ତି ।
ମାରକଣ୍ଡ ବୋଇଲେ ହୋ ତୋରପସ୍ୱ ମୁନି
ପୂର୍ଣ୍ଣାହୁତ ଦେଲେ ସୁଦ୍ଧା ନ ସେନିଲ ବହ୍ନି ।
ନାରଦ ବୋଲେ ବ୍ୟାସଙ୍କ ନାହିଁ କିଛି ଦୋଷ
ଯୁଧିଷ୍ଠିର ଅପୂର୍ବ ହେତୁ ଅଗ୍ନି ନୁହେ ତୋଷ ।
ମାର୍କଣ୍ଡ ବୋଇଲେ ତୁମ୍ଭେ ନ ଜାଣିଛ କିଛି
ଆମ୍ଭେ ଜାଣୁ ଯୁଧିଷ୍ଠିରଙ୍କ ଭଜନ୍ତ ଯେ ଅଛି ।
ପଞ୍ଚ ପାଣ୍ଡବେ ଅଟନ୍ତି ଯେଣୁ ଏକଆତ୍ମା
ହିଡ଼ିମ୍ବକ ପୁରେ ପୁତ୍ର ଜାତ କଲା ଭୀମା ।
ନାରଦ ବୋଇଲେ ତାକୁ ବେଗେ ଅଣାଇଣ
ଯୁଧିଷ୍ଠିର ଦ୍ରୌପଦୀ କୋଳେ କର ଆରୋପଣ ।
ଆଜ୍ଞା ପାଇ ବୃକୋଦର ତାକୁ ସୁମରିଲା
ଘଟୋତ୍କଚର ଆସନ ଅଚିରେ କମ୍ପିଲା ।
କୋଟିଏ ରଥ ସେକ୍ଷଣ ହିଡ଼ିମ୍ବିଙ୍କ ସୁତ
ରାଜସୂୟ ଯଜ୍ଞକୁ ସେ ହୋଇଲା ପ୍ରସ୍ତୁତ ।
ହିଡ଼ିମ୍ବିଙ୍କ ବୋଲେ ବାବୁ ରାଜସୂୟେ ଯିବୁ
ମୋର ବଚନ ସର୍ବଦା ମନେ ରଖିଥିବୁ ।
ଆଗେ ପ୍ରଣମିବୁ ପିତା ପାଣ୍ଡବମାନଙ୍କୁ
ଉଭୟରେ ପ୍ରଣମିବୁ ବ୍ୟାସ ଶ୍ରୀକୃଷ୍ଣଙ୍କୁ ।
ପୁଣି ପ୍ରଣମିବୁ ଋଷି ଯେତେକ ବ୍ରାହ୍ମଣ
ଆଉ ନମସ୍କାର କାରେ ନ କରିବୁ ଜାଣ ।
ଘଟୋତ୍କଚ କହେ ମାତା କହିଲୁ ଅମିତ
ସଭାମଧ୍ୟେ ଥିବେ କେତେ ମାନ୍ୟଜନ ବ୍ୟକ୍ତି ।
ପୁଣି ଯୁଧିଷ୍ଠିରଙ୍କ କୋଳେ ଥିବେ ଯାଜ୍ଞସେନୀ
ବ୍ରାହ୍ମଣ ରାଜ ଋଷି ସାକ୍ଷାତ ଜନନୀ ।
ଯଦ୍ୟପି ତାହାଙ୍କୁ ମୁହିଁ ପ୍ରଣାମ ନୋହିବ
ତାହାଙ୍କ କୋପରେ ମାତ ନଷ୍ଟେ ଭସ୍ମ ହେବ
ହିଡ଼ମ୍ବିକ ବୋଇଲା କୁ ପାଟ ଅଭିଷେକେ
ତୋର ନମସ୍କାର ବାବୁ ନୁହଇ ସ୍ତ୍ରିଙ୍କି ।
ଯୁକତେ ଦ୍ରୁପଦ ଝିଅ ଅଟଇ ଅସତୀ
ଗୋଟିଏ ସ୍ତିରୀର କାନ୍ତ ଅଛି ପାଞ୍ଚପଣ ।
ତେଣୁ ଯେବେ ଦ୍ରୌପଦୀକୁ ଡରିଲୁ ବୁ ବାବୁ
ଆମ୍ଭେ ତୋର ସଙ୍ଗ ରାଜସ୍ଥଳକୁ ତ ଯିବୁ ।

ପୁତ୍ରକୁ ଘେନଣ ବଜ୍ର କବଚର ବାର୍ଣ୍ଣୀ
କୋଟିଏ ରଥ ସଙ୍ଗରେ ଯକ୍ଷେ ଘେନ ଚଳି ।
ରହିଲା ହିଡ଼ମ୍ବୀ ସୈନ୍ୟସହ ସଭାଦ୍ୱାରେ
ଏକା ଘଟୋତ୍କଚ ଗଲା ସଭାର ଭିତରେ ।
ଆଗେ ନମସ୍କାର କଲା ଯୁଧିଷ୍ଠିର ଦେବଙ୍କୁ
ପଛେ ପ୍ରଣମିତ ହେଲା ବ୍ୟାସ ଶ୍ରୀକୃଷ୍ଣଙ୍କୁ ।
ଏହପର ସମସ୍ତଙ୍କୁ ନମସ୍କାର କରି
ଅଗ୍ରେ ଉଭା ହେଲା ବେନି ହସ୍ତ କାଖେ ଭରି
ଦ୍ରୌପଦୀଙ୍କୁ ନମସ୍କାର ନୋହିବାରୁ ପୁଣ
ଅପମାନରେ ତାଙ୍କର ବହ୍ନିହେଲା ଗାତ୍ର ।
କୋପରେ ବୋଇଲେ ଆରେ ମୁହିଁ ତୋରମାଏ
ଅସୁର ଜାତି ତୁ ମୂର୍ଖ ଅଟୁ ମାତୃଦ୍ୱେଷେ ।
ଲକ୍ଷେରାଜା ସମ୍ମୁଖରେ ମୋତେ ଦେଲୁ ଲଜ୍ଜା
ସାବତ ହିଂସାରେ ତୁହି ମୋତେ କଲୁ ତ୍ୟଜା ।
ମୁହିଁ ଯେବେ ତୋରମାତା ଅଟଇ ପ୍ରମାଣ
ରଣାଯୁଦ୍ଧେ ହୃଦେ ତୋର ପଡ଼ୁ ବଜ୍ର ବାଣ
ସଞ୍ଜୟ ବୋଇଲେ ତୁମ୍ଭେ ଶୁଣ ଧୃତରାଷ୍ଟ୍ର
ଘଟୋତ୍କଚ ଦ୍ରୌପଦୀର ଶାପେ ହେଲେ ନଷ୍ଟ ।
ଗୁରୁଜନ ବଚନ କି କେବେ ହୁଏ ଆନ
ତେଣୁ ରଣାଯୁଦ୍ଧେ ଶକ୍ତି ହୋଇଲା ପତନ ।
ଏଥୁଅନ୍ତେ ଧୃତରାଷ୍ଟ୍ର ପଚାରିଲେ ପୁଣି
ତା ମାତା କିସ କରିଲା ଏହି କଥା ଶୁଣି ।
ହିଡ଼ମ୍ବୀ ବୋଇଲା ତୋର ଅଟେ ପାଞ୍ଚପତି
ସ୍ତ୍ରୀମାନଙ୍କରେ ତୁହି ଅଟୁ ସେ ଅସତୀ ।
କୋଟିପାଟେ ଅଭିଷେକ ଅଟେ ମୋର ସୁତ
ପ୍ରିୟଙ୍କୁ ତା ନମସ୍କାର ନୁହଇ ଯୁବତ ।
ତୁ ମୂଢ଼ୀ ଆଣ୍ଟୁକୁଡ଼ ଲୋ ଅଟୁ ଅପୁତ୍ରକୀ
ପୁତ୍ରର ସ୍ନେହ କେମନ୍ତେ କାହୁଁ ଜାଣିବୁ କି ।
ତରପୁଅ ମାରି ତୁହି ଦେଲୁ ଗୁରୁଦଣ୍ଡ
ବଂଶ ବୁଡ଼ାଇଲୁ ନଷ୍ଟେଁ ବୁଡ଼ିଲା ତୋ ପିଣ୍ଡ ।
ଅବଶ୍ୟ ଲୋ ପାଞ୍ଚପୁତ୍ର ହେବେ ତୋର ଗର୍ଭେ
ସ ତବର୍ଷେ ଶିରଚ୍ଛେଦ ସେମାନେ ହୋଇବେ
ଶୁଣି ବଧାଦତ ହେଲେ ଧୃତରାଷ୍ଟ୍ର ନୃପ
ବେଲେ ଦୁଇକୋହୂ କୋଟେବଂଶହେଲା ଲୋପ
ନମଇଁ ଶ୍ରୀମାଳଗିରି ନାଥ ଜଗନ୍ନାଥ
କଳ୍ପତରୁରୂପେ ହୋଇବ ଶଙ୍ଖ ଚକ୍ର ହସ୍ତ ।
ଆହେ ପ୍ରଭୁ କଳକାନ୍ତ ବଢ଼ଇ ଦୁସ୍ତର
କୁଟିଳନା ପ୍ରବଞ୍ଚନା ମିଥ୍ୟାକଥା ଘର ।
ଘରଦର ବୁଡ଼ା ଯେହ୍ନ ଅଟଇ କନ୍ଦୁକ
ହାଣ୍ଡି ଘୋଡ଼ା ଚଢ଼ି ଅର୍ଥେ ଭରିଲେ ସିନ୍ଦୁକ ।
ସଂତ୍ୟ ଥାଇ ତୋତେ ଧ୍ୟାୟୀ ସେ ହେଲମଣ୍ଡଳ
ସଂସାରେ କହିଲେ ତାକୁ ନର୍ବୋଧ ଅଜ୍ଞାନ ।
ଏହିପରି ନରଙ୍କର ଦେଖି ବାଭ୍ରଷିକା
ମନ ମଧ୍ୟରେ ହେଲଣି ସର୍ବଦା ଚାଟକା ।
ଯେହ୍ନ ଯାହା କହୁ ତହିଁ ମୋର କିସ ଫଳ
କେବଳ ମାଗୁଛି ନାଥ ଦିଅ ଏହି ବର ।
ହୃଦୟ ସିଂହାସନରେ କରେ ଅଧିଷ୍ଠାନ
ଜପୁ ମୋ ରସନା କୃଷ୍ଣ ଶ୍ରୀମଧୁସୂଦନ ।
ଗତ ଅଗତ ବୋଲଣ ଯେ ଦୁଇ ବିଷୟ
ଯାହା କୁ କରିବୁ ଯେଣୁ ଅଟୁ ଇଚ୍ଛାମୟ ।
ସେଥିପାଇଁ ଭକ୍ତେ ମାତ୍ର ନ କରେ ଭାବନା
ଶାରଳା ଦାସର କଥା ତୋତେ ଲାଗେ ପ୍ରିୟା

## ଭୀମହେନ ଅଶ୍ୱତ୍ଥାମା ରଥ ଫିଙ୍ଗିଦେବା ଅଶ୍ୱତ୍ଥାମା ହସ୍ତୀର ନିଧନ ଓ ତାହାର ବଂଶାବଳୀ

ଶୁଣ ବୈବସ୍ୱତ ମନୁ ଏ ଅନ୍ତେ ଯା ହେଲା
ଅଢ଼ାଇ ପ୍ରହର ଯାଏ ଘଟୋତ୍କଚ ମଲା ।
ପୁତ୍ରର ନିଧନେ ଭୀମ ହୋଇ ମହାକ୍ରୋଧ
ନଇକ୍ରୋଧ ହୋଇ ଘୋର କରିଲାକ ଯୁଦ୍ଧ ।
ମହା ବାତରେ ଯେସନେ ବୃକ୍ଷ ତଳେ ଲୋଟେ
ଗଦା ବୁଲାଇ ତେସନେ ସମସ୍ତଙ୍କୁ ପିଟେ ।
ଅପାର ସୈନ୍ୟ ପଡ଼ିଲେ ତାର ରଣରଙ୍ଗେ
ରକ୍ତ ବିଲେପନ ହେଲା ସବୁଙ୍କର ଅଙ୍ଗେ ।
ସୈନ୍ୟ ପଡ଼ନ୍ତେ ପାବନ ଦ୍ୱିଗୁଣ ବଳିଷ୍ଠ
ଭୀମ ଅଶ୍ୱତ୍ଥାମା ଦୁହେଁ ଆସି ହେଲେ ଭେଟ ।
ପ୍ରହଙ୍କ କରିଣ କୋପେ ବୋଲେ ଅଶ୍ୱତ୍ଥାମା
ଆଜ ତୋ କାଳ ପୂରିଲା ଜାଣ ଆରେ ଭୀମା
ଏତେ ବୋଲି କୋପେ ବୀର ହୋଇଣ ଅସ୍ଥିର
କୋଦଣ୍ଡ ଧରି ଗୁଣରେ କରିଲା ଟଙ୍କାର ।
ଲୁହା ପାଞ୍ଚଶର ଯେହ୍ନ ଅତି ତୀକ୍ଷ୍ଣ ମୁନା
ତାକୁ ଘେନିଣ ବିନ୍ଧିଲା ନ ଯାଇ ଗଣନା ।

ମହା ଧନୁ ଏକ ଧରି ଆଉ ବୃକୋଦର
ପୁଣି କଙ୍କପକ୍ଷଯୁକ୍ତ ଲଭିଲା ସପ୍ତଶର ।
ତାକୁ ଧରି ଯହୁଁ ଭୀମ ଅତି କ୍ରୋଧ ହୋଇ
ଦ୍ରୋଣଙ୍କ କୁମର ରଣେ ନିର୍ଭୟ ଅଟଇ ।
ଶରେ ଶର ପରିହାର ହସ୍ତକ୍ଷେପଣ ହେନ
ଝୁଣୁଝୁଣୁ ଶବଦରେ ଉଠିଲା ବହ୍ନ ।
ତେଣୁ ତାହାକୁ ଯେ ଦୁହେଁ ନୁହନ୍ତି ନା ଊଣ
ଯୁଝନ୍ତେ ସମରେ ତେଜ ଆଉ ସମଗୁଣ ।
ପୁଣି ଦଂଶବାଣ କ୍ରୋଧେ ଧଇଲାକ ଦ୍ରୋଣୀ
ଭୀମସେନ ଉପରକୁ ଏଡ଼ିଲାକ ଟାଣି ।
ଯେସନେ ପ୍ରଳୟକାଳେ ମେଘମାନେ ଘୋଟି
ସେହିମତ ଆକାଶରୁ ହେଲା ଶରବୃଷ୍ଟି ।
ମାଇଲେକ ଚଉଷଠି ଶର ଗୃଧ୍ରପତ୍ର
ଯେସନେକ ଆକାଶରୁ ପଡ଼ଇ ନିର୍ଘାତ ।
ଭୀମସେନ ରଥ ଖଣ୍ଡଖଣ୍ଡ ହୋଇ ଧ୍ୱଜ
ସାତଘାତ ହୋଇ ଭୀମସେନ ପଦଗାଜ ।
ଗଦାକୁ ବୁଲାଇଣ ଯେ ଧାଇଁଲା ପାବନ
ଅଶ୍ୱତ୍ଥାମା ପ୍ରହାରିଲା ଶର ଶତ ତିନ ।
ଶିଳି ସମାନ ପଡ଼ିଲା ଭୀମ ବାମଅଙ୍ଗ
ତିନିଶତ ବାଣ ପଡ଼ି ହେଲା ସର୍ବ ଭଙ୍ଗ ।
ପୁଣି ନାରାଚ ଏଡ଼ିଲା ଦ୍ରୋଣୀ ତିନିଶତ
ରୋମେ ରୋମେ ନିକଳିଲା ଭୀମଦେହୁ ରକ୍ତ ।
ଯେଉଁରୂପେ ସର୍ପମାନେ ପଶନ୍ତି ବିବରେ
ତେମନ୍ତ ଶର ଚଳିଲା ଭୀମର ଶରୀରେ ।
ହିଷଣ୍ଡ ଗଳଇ ରକ୍ତ ଭୀମସେନ କାୟେ
କୋପଇରେ ଗର୍ଜଇ ସେ କାଳସର୍ପ ପ୍ରାୟେ ।
ତହୁଁ ବୃକୋଦର ରୂପ ଧଇଲା ପାବନ
ଶୂନ୍ୟ ଭୁବନେ ବଢ଼ାଶେ ଲମ୍ବେ ପୃଥ୍ୱୀ ତିନ
ରେ ରେ କାର କରି କୋପେ ଧାଇଁଣ ପ୍ରଚଣ୍ଡ
ଧଇଲା ଅଶ୍ୱତ୍ଥାମାର ଯାଇ ରଥଦଣ୍ଡ ।
ଶରୀର କମ୍ପେ କଦଳୀ ପତର ପରାୟେ
ରଥକୁ ଶୂନ୍ୟେ ବୁଲାଏ କରି ଚକ୍ରପ୍ରାୟେ ।
ଯେସନ୍ତେ ବାଳଯୋଏ ଟେକାଫିଙ୍ଗିଦ୍ୟନ୍ତି ଖେଳେ
ତେସନ୍ତେ ଦ୍ରୋଣୀରଥ ଫିଙ୍ଗେ ପବନର ବାଳେ
ସରତ ଭୂମିକୁ ଲଙ୍ଘି କାରୁଣାର ବନେ
ଯମୁନା ସେପାରେ ପଡ଼େ ବତିଶ ଯୋଜନେ

ରଥ ଅଖ ତଳ ଭାଙ୍ଗି ମଲେ ଅଶ୍ୱଗଣ
ସାରଥି ମରିଲା ମଧ୍ୟ ତଳେ ପଡ଼ିକଣ ।
ରଥ ପଡ଼ିବାର ଦେଖି ତହୁଁ ଅଶ୍ୱତ୍ଥାମା
ଯୋଜନ ଅନ୍ତରେ ଯାଇ ପଡ଼ିଲା ମହାତ୍ମା ।
କର ଚରଣ ତାହାର ଚହିଁ ଭାଙ୍ଗି ଗଲ
ରୁଧିରରେ ବଲେପନ ଶରୀର ହୋଇଲ ।
ମୁଖ ନାସିକା କାନରୁ ବୋହିଲା ଶୋଣିତ
ଷଟାତ୍ମା ପ୍ରାୟ ପଡ଼ିଲା ଦ୍ରୋଣଙ୍କର ସୁତ ।
ମାଳବ ଦେଶର ରାଜା ଅଟେ କୃତବର୍ମ୍ମ
ତାହାର ହସ୍ତୀର ନାମ ପୁଣି ଅଶ୍ୱତ୍ଥାମା ।
ଚାଶଲକ୍ଷ ଯୋଦ୍ଧା ଘେନି ସେହି ନୃପବର
କୋପାନଳେ ଧାଇଁଦେଲା ଭୀମର ଆଗର ।
ସେହି ମହାମତ୍ତ ଅଶ୍ୱତ୍ଥାମା ହସ୍ତୀ ଚଢ଼ି
ଭୀମସେନ ଉଗାଳଇ ବଜ୍ର ସେହ୍ନା ଉଡ଼ି ।
ପରିଘ ତୋମର ଲଙ୍ଗିଆ ପୁଣି କରବାଳ
ବଜ୍ରାଳ ତେଜରୁ ବଳ ବଢ଼ଇ ଉଜ୍ଜ୍ୱଳ ।
ଚାଶଲକ୍ଷ୍ୟ ଯୋଦ୍ଧା ଏକମୁଖ ହୋଇ ଉଠି
ଭୀମସେନକୁ ମାଇଲେ ଦବଦବି ଯାଠି ।
କୋପେ ଭୀମସେନ ଦେଲା ବାମଅଙ୍ଗ ପାତି
ପଡ଼ିଣ ଚୂର୍ଣ୍ଣ ହୋଇଲା ମୁଦ୍‌ଗର ଶକତି ।
ବାମ ଅଙ୍ଗ ପାତ ପାତ ବୁଲଇ ପାବନ
ଗୋଡ଼ାଇ ମାରେ ମାଳବ ଦେଶର ସଇନ ।
ରଥକୁ ରଥ ଭଙ୍ଗଇ କରିବଏ ଚୂର
ଗଜକୁ ଗଜ ବଜାଡେ କରଇ ସଂହାର ।
ଅସଂଖ୍ୟ ସସ୍ ସୈନ୍ୟକୁ ଛଡ଼େ ମାର୍ଚ୍ଚି ଖଙ୍ଗା
ସମରେ ନିବାର ସେହି ଅଟେ ରଣରଙ୍ଗା ।
ରଣରେ ସମ୍ମୁଖ ହୋଇ ରହିଲେ ସଇନ
କେବା କେନ୍ତେ କ୍ରୀଡ଼ା ଧରି କରିଲେ ବଇମା ।
ନନ୍ଦସୁତର କରପକ୍ଷ ଅଟେ ଯାର ବାନା
ଶରଣେ ବୋଇଲେ ମାରେ ଆଗକର କନା ।
ତିନିଲକ୍ଷ୍ୟ ଯୋଦ୍ଧା ରଥୀ ଆଉ ଅଶ୍ୱ ହସ୍ତୀ
ବେନଯୋଜନ ପର୍ଯ୍ୟନ୍ତେ ପଡ଼ିଲେ ପଦାତି ।
ଅସଂଖ୍ୟ ସୈନ୍ୟ ପଡ଼ିବା ଦେଖି କୃତବର୍ମ୍ମା
ଆପଣେ ଟେକିଲା ମହାନାଗ ଅଶ୍ୱତ୍ଥାମା ।
ତିନି ଯୋଜନ ଉର୍ଦ୍ଧ୍ୱଗ ଅଶ୍ୱତ୍ଥାମା ହସ୍ତୀ
ତା ଉପରେ ଚଢ଼ି ଶର ବର୍ଷଇ ନପତି ।

ବୈବସ୍ୱତ ମନୁ ପୁଚ୍ଛେ ଆହେ ବ୍ରହ୍ମଦେଶ୍ୱ
ଏହି ନାଗର ଅସଂଖ୍ୟ ଅଟଇ ଯେ କଥା ।
ଏଥିରେ ଭଣନ୍ତୁ ମୋତେ କହ ମହାମୁନି
ତବ ମୁଖୁ ଶୁଣି ମୁହିଁ ହୋଇବଇଁ ଜ୍ଞାନୀ ।
ବଦନ୍ତି ଅଗସ୍ତି ଶୁଣ ତଳଙ୍କା ସ୍ୱଜନ
ଏ ହସ୍ତୀର ବଂଶାବଳୀ ଭରନ୍ତୁ ଶାସ୍ତନ ।
ସିନ୍ଧୁ ମନ୍ଥନରୁ ଜାତ ଐରାବତ ହସ୍ତୀ
ବୈରାବତ ନାଗ ଅଟେ ଏହାର ସନ୍ତତି ।
ବୈରାବତର ନନ୍ଦନ ନାମ ମହାନାଦ
ଏହାର ନନ୍ଦନ ନାମ ମଦନ ଅନାଦ ।
ମଦନ ଅନାଦ ସୁତ ମହାନନ୍ଦ ହସ୍ତୀ
ମହାମେରୁ ବୋଲାଉଛି ଏହାର ସନ୍ତତି ।
ମହାମେରୁର ନନ୍ଦନ ଶ୍ୱେତ ବଜ୍ର ହସ୍ତୀ
ତାହାର ନନ୍ଦନ ଅଟେ ଗଜ ପୁଷ୍ପଦନ୍ତୀ ।
ଗଣେଶଙ୍କର ଶିର ପୁଷ୍ପଦନ୍ତ ମୁଣ୍ଡ
ପୂର୍ବେ ଛିଦ କଣ୍ଠଥିଲେ ଯାକୁ ଦୁଇଖଣ୍ଡ ।
ପୁଷ୍ପଦନ୍ତର ନନ୍ଦନ ଗଜ ଅଶ୍ୱଦକ୍ଷ
ତାହାର ନନ୍ଦନ ବାସ୍ତୁକଧି ସିନ୍ଧୁବକ୍ଷ ।
ସିନ୍ଧୁବକ୍ଷର ନନ୍ଦନ ଗିଶଳା ଉତ୍ତମା
ଗିଶଳା ନନ୍ଦନ ନାମ ଅଟେ ଅଶ୍ୱତ୍ଥାମା ।
ଏହାର ସୁତ ସୁହସ୍ତୀ ନାମ ଅଟେ ତାର
ଭରତଯୁଦ୍ଧେ ଦେଖିଲେ ଏ ଦୁଇ କୁଞ୍ଜର ।
ବିଶ୍ୱରୂପକୁ ଧଇଲେ ପୃଥ୍ୱୀ ସଙ୍ଗେ ସତ
ମହାରୂପ ହେଲେ ପୁଣି ହୁଏ ମେରୁଗିରି ।
ଉପରବଂଶ ମହିମା ପ୍ରତ୍ୟକ୍ଷରେ ଜାଣୁ
ତେରକୋଶ ବ୍ୟାପିଅଛି ସେ ହସ୍ତୀର ତନୁ ।
ଭାରତର ଯୁଦ୍ଧଭୂମି ବାରଯୁଣ ସ୍ଥଳୀ
ଯୋର ହସ୍ତେ ଜମ୍ବୁଦ୍ୱୀପ ପାରଇ ସେ ତେଳି
ଶୁଣି ନୃପତି ବୋଇଲା ମନୁ ନୃପବର
ଅଶ୍ୱତ୍ଥାମା ହସ୍ତୀଯୁଦ୍ଧ ଏବେ ମୋତେ କହ ।
ବଦନ୍ତି ଅଗସ୍ତି ଶୁଣ ବଳଙ୍କାଧିପତି
ସେ ହସ୍ତୀକି ସିନା ଯୋଦ୍ଧା ଭଦନ ସନ୍ତତି ।
ଅଶ୍ୱତ୍ଥାମା ହସ୍ତୀ ଯେତେକ ମଦର ପଣେ
ଦିଶେ ମନ୍ଦର ଜାଣିଣ ଭୀମସେନ ତାସେ ।
ବୃକୋଦର ସ୍ୱରୂପକୁ ଭୀମ ଧରକାଣ୍ଡି
ଅଶ୍ୱତ୍ଥାମା କୁଞ୍ଜରକୁ ମନରେ ଆଟହାଣି ।
ବାଉନ ବାଉନ ଧରି ଗଦା ବେଳକରେ
ପୃଥ୍ୱୀଶ କମ୍ପିଲା ଭୀମସେନର ଉଡ଼ରେ ।
ବୃଷଭଣ ଗଦାବର କରି ଅନ୍ତହମ
ଅଶ୍ୱତ୍ଥାମା କୁମ୍ଭସ୍ଥଳେ ପିଟେ କରି ତମ ।
ଶତଖଣ୍ଡ ହେଲା ଅସ୍ଥି କୁମ୍ଭସ୍ଥଳ ଯୁଗ
ଖାଏ ମଣ୍ଡନାଗ ପଡ଼େ ହୋଇ ଗଳପାଣ ।
ରଣ ଭୂଇଁରେ ପଡ଼ିଲା ବହୁ ସୈନ୍ୟମାଡ଼
ଆକାଶେ ଶୁଭିଲା ଭୀମସେନ ଘୋର ରଡ଼ି ।
ଆକାଶରେ ଦେଖିଥିଲେ ଥାଇଣ ଦ୍ୱିବଶେ
ଅଶ୍ୱତ୍ଥାମା ହତ ବୋଲି ଶୁଭେ ଚଉପାଶେ ।
ଆଁ ଘାତ ନକ୍ଷତ୍ର ଶୁଭେ ଏ ଶବଦ
ଶୁଣିଶୁଣ ସଜ୍ଜନ ହୋଇଲେ ସ୍ତବ୍ଧ ।
ଜୟ ଜଗନ୍ନାଥ ଜୟ ଜୟ ଚକ୍ରଧର
ଚଉଦ ଭୁବନନାଥ ମହିମା ଅପାର ।
ଦୁଷ୍ଟଜନଙ୍କୁ ନବାଶ ହନୁଜନ ପାତ୍ର
ତୋ ବାହାରେ ଅଛ ଏଏ ପରମ ବସ୍ତ୍ର ।
ତୋ ନାମକ ଭୂଲ ନରେ ମନ୍ଦନମେ ମାତ
ନାନାଦ ଅନିତ୍ୟ ଜଶ ବଲ୍ଗାନ୍ତ ନଭ ।
ଥବେ ଭ୍ରମନ୍ତେ ତୋର ନାମ ଦେଲେ ଧରି
ସଭଭ ପାସୋଣି ତାକୁ ନେଉ ଦୋଳକରି ।
ମୁଁ ତ ସେମାନଙ୍କଠାରୁ ଅଟଇ ଅନାଥ
ତାକ ତାକ ପ୍ରାଣ ମୋର ହେଲା ଓଷ୍ଠାଗତ
ଜାଣିଲା ହେ ନାଥ ମୋତେ ନାହିଁ କୃ ନିର୍ମାଣି
ତେଣୁ ଶୁଣନାହିଁ କର୍ଣ୍ଣେ ମୋ ଡାକଦା ବାଣୀ
ଶୁଣ ବା ନ ଶୁଣ ମୋର ଡାକିବାର ମୂଳ
ଶାରଳା ଦାସ ମାଗଇ ମୁକତି କେବଳ ।

---

## ଦ୍ରୋଣାଚାର୍ଯ୍ୟ ବଧ

ଏଥିଅନ୍ତେ ଘସ୍ୱରନ୍ତ ମନୁ ମହାରଥୀ
ହେ ଅଗସ୍ତି ମୁନି କହ ଦ୍ରୋଣଯୁଦ୍ଧ କଥା ।
ସେହି କଥାକୁ ଶୁଣାଇ ପ୍ରସନ୍ନ ମାନସ
ତବ ମୁଖ ଶୁଣି ମୁହିଁ ହୋଇବ ସନ୍ତୋଷ ।
ତାହା ଶୁଣି କହନ୍ତି କୁମ୍ଭମୁନି ସୁତ
ମନଦେଇ ଶୁଣ ତେବେ ତାହାର ଚରିତ ।
ଦ୍ରୋଣଗୁରୁ ଏହିରୂପେ ସମର କରନ୍ତି
ଯେତେବେଳେ ଅଗ୍ନିର ସମ୍ମୁଖେ କେହି ନ ରହନ୍ତି ।

କାଶୀଦେଶରେ ନୃପତି ନାମ କାଶୀଶ୍ୱର
ତାର ସଙ୍ଗେ ଅଛୁ ପାଞ୍ଚସହସ୍ର କୁଞ୍ଜର ।
ଦ୍ରୋଣଙ୍କ ସମ୍ମୁଖରେ ଆସି ମିଳେ କଣାକାଳେ
ଦୁଃସହ ପ୍ରତିଜ୍ଞା ଦ୍ରୋଣ ଆକର୍ଷବେଳେ ।
ଧାମନ୍ତି ଯେ ଦ୍ରୋଣଗୁରୁ କାଶୀଶ୍ୱର ଦେଖି
ବହନ୍ତି ନାଗତ ଦୁରୁଁ ଧର୍ମକୁ ଉପେକ୍ଷି ।
ଯେଉଁପରି ପକ୍ୱଫଳ ବାତାଘାତେ ପଡ଼େ
ଖରଘାତେ ସେହିରୂପେ ଯୋଦ୍ଧା ଶିର ଛୁଟେ
ଲକ୍ଷ ଲକ୍ଷ ଶର ମାରି ସମର କରନ୍ତି
କୋଟି କୋଟି ମୁଣ୍ଡ ଛୁଡ଼ି କବନ୍ଧ ନାଚନ୍ତି ।
ଦ୍ରୋଣଶରେ କାଶୀଶ୍ୱର ହେଲେ ସୈନ୍ୟହତ
ତିନିଲକ୍ଷ ଗଜ ଯୋଦ୍ଧା ଖଣ୍ଡିକେ ନିପାତ ।
ହାତୋଡ଼ା ଶରରେ କାଶୀ ପଡ଼ିଲା ଗଜରୁ
ମହାକ୍ଷତ୍ରୀ ଅଟଇ ସେ ଆନ ଯୋଦ୍ଧାଠାରୁ ।
ଉତ୍ତାନଶାୟୀ ହୋଇଣ ପଡ଼ିଲାକ କ୍ଷେତ
କୁନ୍ତରେ ମାଇଲେ ପୁଣି ଦ୍ରୋଣ ସେନାପତି
ହୃଦୟରେ ବାଜ କୁନ୍ତ ପିଠି ଗଲା ଫୁଟି
ପୁଣି କଣ୍ଠ କଣ୍ଠାଗ୍ରରେ ଶିର ଦେଲେ କାଟି ।
ପାଞ୍ଚ ଅଇଭୂତ ଯୋଦ୍ଧାମାନଙ୍କର କୁଳେ
ଦ୍ରୋଣ ବଣାଘାତରେ କାଶୀଶ୍ୱର ଗଡ଼ି ମଲେ ।
ଘଟଦେଶର ନୃପତି ନାମ ମନସିଜ
ନବସହସ୍ର ରଜା କୁଳେ ଗଲା ଯମରାଜ୍ୟ ।
କୌଶିକ ଦେଶର ରଜା ଆର ଜହ୍ନୁପାକ୍ଷ
ତିନିସହସ୍ର ରଜା କୁଳେ ଦ୍ରୋଣ କାଟେ ବକ୍ଷ ।
କନାଉଜ ଦେଶ ରଜା ନାମ ସତ୍ୟମନୁ
ତରଣ ପ୍ରସଙ୍ଗେ କାଟେ ଦ୍ରୋଣ ତାର ତନୁ ।
ଦକ୍ଷିଣ ଦେଶର ରଜା ଅଟେ ବିଦ୍ୟୁନ୍ମାଳୀ
ତିନିଶତ ପାରିଦନ୍ତି ସଙ୍ଗେ ମଲା ବଳୀ ।
ଯେଉଁରୂପେ ସୂର୍ଯ୍ୟସମ ହୋଇ ଅବତାର
ପରଶୁ ଘାତେ ନିକ୍ଷତ୍ରୀ କରିଲେ ସଂସାର ।
ଅବା ପକ୍ଷୀଯୁଦ୍ଧେ ଖେଦେ ଯେହ୍ନେ ପକ୍ଷୀସେଣା
ଗରୁଡ ଯୁଦ୍ଧରେ ଦ୍ରୋଣ ତେହ୍ନେ କଟକ୍ଷଣା ।
ଯାନ ବାହନ ଆଦି ଯେ ସଙ୍ଗେ କିଛି ନାହିଁ
ଧାମନ୍ତି ସେ ମହାରଥ ପାଦପତି ହୋଇ ।
କିଂକର ବସନ ପିନ୍ଧି ସିଂହ ବକ୍ଷଠାଣି
ବ୍ରାହ୍ମଣ କି ଶୂଦ୍ର ହେଇ ଅଜସ୍ରେ ହାଣି ।

ନବସହସ୍ର ରଜା ପାଞ୍ଚସହସ୍ର ପାରିଦନ୍ତି
ତିନିଅଯୁତ ମଧ୍ୟେ ଦ୍ରୋଣ କାଟିଦେଲେ ମୁଣ୍ଡି ।
ସୈନ୍ୟ ପଡ଼ିବାର ଦେଖି କୋପରେ ମାରୁତି
ଦ୍ରୋଣଙ୍କ ସମ୍ମୁଖରେ ଯାଇ ମିଳିଲା ତଡ଼ିତ ।
ରଥେକ ଆରୋହି ଯୁଦ୍ଧେ ବାହାରେ ନକୁଳ
କର୍ଣ୍ଣ ସଙ୍ଗେ ଯୁଦ୍ଧ କରେ ହୋଇଣ ପ୍ରବଳ ।
ତା ଦେଖି ରାଧାନନ୍ଦନ କୁନ୍ତଇ ପରଶେ
ନକୁଳ ରଥରେ ନେଇ ପିଟିଲାକ ବେଗେ ।
କର୍ଣ୍ଣ ବଣାଘାତେ ନକୁଳ ରଥ ଯାଏ ଭଜ
କୁନ୍ତ ବୁଲାଇଣ ତହୁଁ ଧାଏ ଗଜରାଜ ।
ସେ କୁନ୍ତ ନେଇ ପିଟିଲା କର୍ଣ୍ଣବୀର ରଥେ
ପ୍ରହାରକେ ଫୁଟେ ରଥ ସାରଥି ସହିତେ ।
ପାଦଗତି ହୋଇ ତହୁଁ ଧାମେ ସୂର୍ଯ୍ୟବଳା
ଯେଉଁରୂପେ ମତ୍ତଗଜ ଦଉଡ଼େ ମୁକୁଳା ।
କୁନ୍ତ ବୁଲାଇ ନକୁଳ ପୁଣି ପ୍ରହାରଇ
ଆରେ ରହ ବୋଲି କର୍ଣ୍ଣ କୁନ୍ତକୁ ଧରଇ ।
କୁନ୍ତ ଧରନ୍ତେ ନକୁଳ ଶୂନ୍ୟହସ୍ତ ହେଲେ
କାଳଦଣ୍ଡ ପ୍ରାୟେ କର୍ଣ୍ଣ ନେଇ ବୁଲାଇଲେ ।
ବାମକରରେ ନକୁଳ ଡାହାଣେ ଖଡ଼୍ଗ·
ବଳେ ଅଧର ଚର୍ପଣ ହୋଇ ଅତିରାଗ ।
ବୋଇଲା ରେ ରେ ପାଣ୍ଡବା ପକାଇବ ହାଣି
ପଡ଼ିଲୁ ମୋ ହାତେ ଆଉ ନ ବଞ୍ଚିବୁ ପୁଣି ।
ଆଜ ନିଶ୍ଚୟ ହୋଇଲୁ ତୁହି ନରମାଖି
ହେ ଲୋକ୍ୟ ମଧ୍ୟରେ ତୋତେ କେ ପାରିବ ରଖି
ଏମନ୍ତ ସମୟେ ଆସି ଦୁର୍ଲକ୍ଷ କୁମର
ଲୁହାଗଦା ଘେନି ମଲେ କର୍ଣ୍ଣର ପଛର ।
ଗଦା ବୁଲାଇଣ ବେଗେ ଗାନ୍ଧାରୀ ଦୁଲାଳ
କର୍ଣ୍ଣ ଉପରେ ପ୍ରହାର କରିଲା ପ୍ରବଳ ।
ରାଧାର ନନ୍ଦନ ତହୁଁ ପଡ଼େ ମୂର୍ଚ୍ଛା ହୋଇ
ମାଦ୍ରୀର ନନ୍ଦନ ଦେଖି ଗଲାକ ପଳାଇ ।
କର୍ଣ୍ଣ ଅଶ୍ୱତ୍ଥାମ ଦେଖି ବୀର ଧର୍ମ ଶଲ୍ୟ
ଧାଇଁକାରେ ଉଭା ହେଲେ ରଣେ ମହାମଲ୍ଲ ।
ନକୁଳ ଦୁର୍ଲକ୍ଷ ଯୁଦ୍ଧେ କଣ୍ଠ ଥିଲେ ଘୋଟି
ଶଲ୍ୟବୀରଙ୍କୁ ଦେଖିଣ ରହିଲେ ପାଲଟି ।
ଶଲ୍ୟଙ୍କ ସଙ୍ଗେ ଦୁର୍ଲକ୍ଷ କରିଲା ସମର
ମୋହ ପ୍ରହାଣ ଉଠିଲା କର୍ଣ୍ଣ ମହାବୀର ।

ବେଗେ ଆଗେଇଲା ପୁଣି ମହା ମତ୍ତହସ୍ତୀ
ଅସ୍ତ୍ରକୁ ଧରିଣ ସେହୁ ଆମର୍ଷ କରନ୍ତି ।
ଧନୁରେ ଶର ପୂରାଇ ମହାବୀର କର୍ଣ୍ଣ
ଆସନ୍ତେ ଭେଟିଲା ତାକୁ ବୀର ଧୃଷ୍ଟଦ୍ୟୁମ୍ନ ।
କର୍ଣ୍ଣ ବୋଇଲାକ ଧୃଷ୍ଟଦ୍ୟୁମ୍ନ ମୁଖ ଚାହିଁ
ତୁହି ଯୁଦ୍ଧ କରନ୍ତୁ ରେ ତୋର ପିତା ନାହିଁ ।
ଶୁଣି ଧୃଷ୍ଟଦ୍ୟୁମ୍ନ ବୋଲେ ଶୁଣରେ ରାଧେୟ
ଯୁଧିଷ୍ଠିରଙ୍କ ସଙ୍ଗେ ଛନ୍ତି ପଞ୍ଚାଳର ରାୟ ।
ଧୃଷ୍ଟଦ୍ୟୁମ୍ନର ବଚନେ ରାଧେୟ ବୋଇଲା
ଶିରଚ୍ଛେଦ ରାଜ ସାତବତ୍ତୀଠାରେ ହେଲା ।
ଭରଦ୍ୱାଜଙ୍କ ନନ୍ଦନ ଦ୍ରୋଣ ମହାରଥୀ
ତୋ ପିତାକୁ ସମରରେ କଲେ ଜନଶ୍ୟତ ।
ତା ଶୁଣି ଧୃଷ୍ଟଦ୍ୟୁମନ ଶର ବେଗେ ବିନ୍ଧ
କର୍ଣ୍ଣର ଗଜ ବାହନ କୋଇଲା ଛେଦ ।
ବିରଥ ହୋଇଲା ଯହୁଁ ସେନାପତି କର୍ଣ୍ଣ
ଅନ୍ଧ ହୋଇଗଲା ତାହା ଦେଖି ଧୃଷ୍ଟଦ୍ୟୁମ୍ନ ।
ସମରେ ତିନିପ୍ରହର ରାତ୍ର ହେଲା ଗତ
ଯୁଝନ୍ତେ ମକର ମାସ ଶୀତେ ଅସକତ ।
କର ଚରଣ ଯୋଡ଼ିଣ ହେଲେ ଥରହର
ଅସ୍ତ୍ର ଧରି ନ ପାରନ୍ତି ତେଣୁ ଯେ ଯାହାର ।
ସୈନ୍ୟଙ୍କ ଆକୁଳ ଦେଖି ବୀର ଫାଲଗୁନ
କୋପରେ ବିନ୍ଧିଲା ଏକ ଅଗ୍ନିବାଣ ସେନ ।
ପ୍ରଜ୍ୱଳିତ ହୋଇ ଅଗ୍ନି ଉଠେ ଦାବାନଳ
ସୈନ୍ୟଙ୍କୁ ଛାଡ଼ିଲା ଶୀତ ତେଜିଲେ ବିକଳ ।
ଅଗ୍ନି ତାପରେ ସାସ୍ଥ୍ୟାମ ହେଲେ ସର୍ବଯୋଧୀ
ଧନୁ ଥୋଇ ଶରକୁ ଯେ ପାରିଲେକ ବାନ୍ଧି ।
ସେହ୍ଲାକାଟି ରଥୀମାନେ ରଥ ତେଜ୍ୟାକଲେ
ପଦାତି ଅଗ୍ନି ଆକର୍ଷ ଉଠି ନ ଇଛିଲେ ।
ଉଭୟ ଥାଟ ମଧ୍ୟରେ ଶୁଭେ ଧନ୍ୟ ଧନ୍ୟ
ବୋଇଲେ ଦୀର୍ଘାୟୁ ହୋଇ ବଞ୍ଚ ହେ ଅର୍ଜ୍ଜୁନ
କଷ୍ଟଲୋକଙ୍କର ଜାଣି ପାରିଲୁ ତୁ ମନ
ଶତ୍ରୁ ମାରି ପଞ୍ଚରାଜ୍ୟ ଭୁଞ୍ଜ ତୁ ରାଜନ ।
ଜନଙ୍କ ମୁଖରୁ ସାଧୁ ବଚନକୁ ଶୁଣି
ପାଞ୍ଚଜନ୍ୟ ଶଙ୍ଖନାଦ କଲେ ଚକ୍ରପାଣି ।
ବୋଇଲେ ଧନ୍ୟ ଜୀବନ ତୋର ରେ ଅର୍ଜ୍ଜୁନ
ଶତ୍ରୁମୁଖେ ଧନ୍ୟବାଦ ଶୁଣିଲି ମୋ କାନ ।

ଅଗ୍ନିର ତାପ ଲାଗନ୍ତେ ନିଦ୍ରା ଆସକତେ
ଅସାସ୍ଥ୍ୟାମ ହୋଇ ସର୍ବେ ପଡ଼ିଲେ ସମସ୍ତେ ।
ପିତା ହତ ଶୁଣି ମନେ ହୋଇ ଖେଦାନ୍ୱିତ
ଦ୍ରୋଣେ ଭେଟିଲେ ଦ୍ରୁପଦ ରାଜା ଦେହସୁତ
ଧୃଷ୍ଟଦ୍ୟୁମ୍ନ ବୋଲେ ଦ୍ରୋଣ କେଉଁ କର୍ମ କଲୁ
ଧର୍ମ କେମନ୍ତେ ଗଞ୍ଜିଲୁ ମିତ୍ରଦ୍ରୋହୀ ହେଲୁ ।
ଅନେକ ଥର ସମରେ ତୋତେ ମୁଁ ଛାଡ଼ିଲି
ପିତାର ମଇତ୍ର ଯେଣୁ ମାନ୍ୟସ୍ଥଳ ବୋଲି ।
ଏବେ ମୁଁ ଶୁଣିଲି ମୋତେ କହିଲାକ କର୍ଣ୍ଣ
ଆଜ ମୋର ହାତେ ତୋର ରହିଲା ଜୀବନ
ସମରେ ନ ନାଏ ଯେବେ ତୋହର ପ୍ରାଣକୁ
ବାହୁଡ଼ି ନ ଯିବି ମୁହିଁ ପଞ୍ଚାଳ ଦେଶକୁ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ରଣେ ପଡ଼ିଲାକ ରୋଳ
ଶର ବିନ୍ଧାବିନ୍ଧି ତହିଁ ହେଲେ ଦୁଇକୁଳ ।
ରଥୀ ଯୋଦ୍ଧାମାନେ ରଥେ ପଡ଼ି ନିଦ୍ରା ଗଲେ
ସାରଥିମାନେ ଘୋଟକ କୁଣ୍ଢାଇ ଶୋଇଲେ ।
ଗଜାରୋହୀ ଗଜକୁମ୍ଭେ ପଡ଼ି ହେଲେ ଘାରି
ପଦାତିମାନେ ପଡ଼ିଲେ ଶରକୁ ଆବୋରି ।
ଅଶ୍ୱପୃଷ୍ଠେ ନିଦ୍ରା ଗଲେ ଅଶ୍ୱାରୋହୀମାନେ
ଯାହାକୁ ନିଦ୍ରା ଘାରିଲା ଶୋଇଲେ ସେମାନେ
ଉଜାଣି ଦେଶର ରାଜା ନାମ ସତ୍ୟଙ୍କର
ତାହାକୁ କରିଲା ବଧ ଶଲ୍ୟ ମହାବୀର ।
ନୈଋତ ଦେଶର ନୃପ ତାର ନାମ ଶିବ
ଶକୁନି ମନ୍ତ୍ରୀ ତାହାକୁ ଦେଲା ପରାଭବ ।
ଉଡ୍ଡଙ୍ଗ ଦେଶର ଅଟେ କ୍ଷେମସେନ ରାଜ
ତାହାକୁ କରିଲା ବଧ ବିରାଟ ଆତ୍ମଜ ।
ବଙ୍ଗଦେଶର ନୃପତି ଶ୍ରୀକୃଷ୍ଣ କେଶରୀ
ତାକୁ ବଧିଲା ଶିଖଣ୍ଡୀ ନାମେ ଦଣ୍ଡଧାରୀ ।
କ୍ଷିତ୍ତଡ଼ି ଦେଶର ରାଜା ଅନଙ୍ଗଳସେନ
ତାହାକୁ କରିଲା ବଧ ରାଧାର ନନ୍ଦନ ।
ବିରଥା ଦେଶର ରାଜା ସୁରଥ ନୃପତି
ତାହାକୁ ବଧ କରିଲା ସହଦେବ ମନ୍ତ୍ରି ।
କାଉଁରି ଦେଶର ରାଜା ଅଟେ କାମପାଳ
ତାହାକୁ କରିଲା ବଧ କୁମାର ନକୁଳ ।
ବଙ୍ଗଳା ଦେଶର ରାଜା ଶ୍ରୀମନ୍ତ ନୃପତି
ତାହାକୁ ବଧ କଲାକ ଦୁଃଶାସନ କ୍ଷତ୍ରୀ ।

କୁଞ୍ଜରଳ ଦେଶ ରାଜା ନାମ ଚନ୍ଦ୍ରାଙ୍କିତ
ଉତ୍ତର କୁମର ଦ୍ୱାରା ସେହୁ ହେଲା ହତ ।
ଖଡ଼ଗପୁରର ରାଜା ଅଙ୍ଗନାନୁପମ
ସେ ପଡ଼େ ଶିଖଣ୍ଡୀ ସଙ୍ଗେ କରଣ ସଂଗ୍ରାମ ।
ଇନ୍ଦ୍ରଧ୍ୱଜ ନାମେ ରାଜା ରାଜ୍ୟ ତା ସୌରାଷ୍ଟ୍ର
ଭୀମସେନ ମୁଖେ ପଡ଼ ମଲେ ତାର ଥାଟ ।
ନନ୍ଦସେନ ରାଜା ହୋଇ ଏକ ନୃପରାସ୍ତ
ଉତ୍ତର କୁମର ମୁଖେ ପଡ଼ ହେଲା ଅସ୍ତ ।
ଯମୁନାପୁରର ରାଜା ନାମ ସଜ୍ଜଦାସ
ଶିଖଣ୍ଡୀ ସମରେ ଯଢ଼ ହେଲା ସେ ବିନାଶ ।
ପାଣିମଣ୍ଡଳର ରାଜା ଅଟେ ରଣଦକ୍ଷ
ତାହାକୁ କରିଲା ବଧ କୁମାର ଦୁର୍ଦ୍ଧର୍ଷ ।
କୁଶମଣ୍ଡଳର ରାଜା ସେହୁ ଜମ୍ବୁକେଶୀ
ନକୁଳ ହସ୍ତରେ ସେହୁ ହେଲା ସ୍ୱର୍ଗବାସୀ ।
କାମିନୀମଣ୍ଡଳ ରାଜା ବୀର ଚକ୍ରବର୍ତ୍ତୀ
ଅର୍ଜ୍ଜୁନ ସମରେ ସେହୁ ହେଲା ଖଣ୍ଡଖଣ୍ଡ ।
ଦୁରନ୍ତକ ଦେଶ ରାଜା ନାମ ଦୁଷ୍ମନ୍ତକ
ତାହାକୁ କରିଲା ବଧ ବୀର ଭୀମସେନ ।
ତାହାନ ଦେଶର ରାଜା ଅଟେ ଚନ୍ଦ୍ରମାଳି
ସାତ୍ୟକିର ଶରଘାତେ ପଡ଼ିଲା ସେ ଢଳି ।
ପିଡର ଦେଶର ରାଜା ନାମ ଚକ୍ରବର୍ତ୍ତୀ
ଦୁର୍ଜ୍ଜୟର ଶରଘାତେ ପଡ଼େ ସେ ନୃପତି ।
ଯମଅନଳ ଦେଶର ରାଜା ବଙ୍ଗସେନ
ତାହାକୁ କରିଲା ବଧ ବୀର ଧୃଷ୍ଟଦ୍ୟୁମ୍ନ ।
ପାରଙ୍ଗ ଦେଶର ରାଜା ନାମ ସାରଙ୍ଗ
ସମରରେ ବୃକୋଦର ବିଦାରେ ତା ଅଙ୍ଗ ।
ଜେନାବଳ ପାଟଣାର ବଜ୍ରସିଂହ ରାୟ
ସମରେ ନାଶିଲା ତାକୁ ବୀର ଧନଞ୍ଜୟ ।
ଇନ୍ଦ୍ରମଣ୍ଡଳର ରାଜା ଅଟେ କ୍ଷତ୍ରଜାତ
ତାକୁ ବଧିଲା ସାତ୍ୟକି ଯେହୁ ମହାଯଶୀ ।
ବଜସ୍ୱା ଦେଶର ରାଜା ନାମ ବଡପନ
ସମରେ ମାଇଲା ତାକୁ ବୀର ଦୁଃଶାସନ ।
କଣ୍ଠୁକ ଦେଶର ରାଜା ଯେହୁ ବଳରାମ
ତାହାକୁ ଗଦା ଆଘାତେ ନାଶିଲା ଭୀମ ।
କୁଷ୍ଟଦେଶର ନୃପତି ସହଦେବ ରାୟେ
ସେ ରାଜା ନାଶ ହୋଇଲା ଶଲ୍ୟଙ୍କର ଘାଏ ।

ଚେଦ ଦେଶର ନୃପତି ନାମ ମହାବଳୀ
ସମରାରେ ସହଦେବ ତାକୁ କଲେ ଧୂଳି ।
ଶାକଲ୍ପ ଦେଶର ରାଜା ଯେହୁ ହରିହର
ସେ ରାଜା ବଧ ହୋଇଲା ଦୁରନ୍ତକ କର ।
ଜଛାବଛ ଦେଶ ରାଜା ନାମ ଇଚ୍ଛାମାନ
ସହଦେବ ଶରେ ସେହୁ ଗଲା ଯମଆଳ ।
ଶବଷ ଦେଶର ରାଜା ଶୌଶି ନାରାୟଣ
ତାହାକୁ କରିଲା ନାଶ ବୀର ଦୁଃଶାସନ ।
ସଞ୍ଜୟ କହିଲା ଶୁଣ ରାୟ ଧୃତରାଷ୍ଟ୍ର
ରାତ୍ରଯୁଦ୍ଧରେ ପଡ଼ିଲେ ତୋର ଏତେ ଥାଟ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ରଣ କରୁ କରୁ ଆସି ହୋଇଲା ପାହାନ୍ତି ।
ଶୋଇ ପଡ଼ିବାରୁ ସର୍ବେ ହୋଇଲେ ନଷ୍ଟବୁଧ
ଅର୍ଜ୍ଜୁନ ବୋଇଲେ ତହୁଁ ରଣକର ବନ୍ଦ ।
ଈଶାନ୍ୟ କୋଣେ ଦିଶିଲା ଆସି ଶୁକ୍ରତାରା
ନବ ଶୋଭାରେ ଶୋଭିତ ହୋଇଲେକ ଧରା ।
ଉଷା ଆଗମନ ବେଳା ତାମ୍ରଚୂଡ଼ ଜାଣି
ରଟିଲା ଆନନ୍ଦ ହୋଇ ଭୈରବ ରାଗିଣୀ ।
କାକ କୋକିଳ ଡାକିଲେ ତାଙ୍କ ଡାକ ଦେଖି
କାକଳି କରିଲେ କ୍ରମେ ଆଉ ଆଉ ପକ୍ଷୀ ।
ଦେବାଳୟରେ ହୋଇଲା ମଙ୍ଗଳ ଆଳତି
ଘଣ୍ଟା ଘଣ୍ଟା ଶଙ୍ଖନାଦେ କର୍ମ୍ମନିତ୍ୟ ସ୍ଥିତ ।
ସୁରଭି କୁସୁମେ ବହେ ଶୀତଳ ପବନ
ପୂର୍ବ ଆକାଶ ଦିଶିଲା ଲୋହିତ ବରନ ।
ସୂର୍ଯ୍ୟଦେବ ପ୍ରକାଶିଲେ ଉଦୟ ଅଚଳରୁ
ମାନବଗଣ ଉଠିଲେ ଶଯ୍ୟା ପରିହରି ।
ଅଶ୍ୱତ୍ଥାମା ହତ ବୋଲି ଶୁଣିଲା ଶବଦେ
ଅନୁସରି ଦ୍ରୋଣଗୁରୁ ପୁତ୍ର ଖୋଜେ ହାଦେ ।
ଲୋଡ଼ି ଲୋଡ଼ି ଖୋଜନ୍ତି ସେ ଥାଟଯାକେ ବୁଲି
ବୋଲନ୍ତି ଅର୍ଦ୍ଧରାତ୍ରରୁ ପୁତ୍ର ନ ଦେଖିଲି ।
ସେ ପୁତ୍ର ବଧ କରିବା କାଏ ଅଛି କ୍ଷମ
ଚହକୁଟେ ମାଇଲେ ବା ଶ୍ରୀପୁରୁଷୋତ୍ତମ ।
ତର୍କିରେ ଭ୍ରାନ୍ତ ମୋହର ଅଛଇ ଅଳପ
ତହୁଁ ଶବ ଖୋଜିବାକୁ କରିଲେ ସଂକଳ୍ପ ।
ଖୋଜ ନ ପାଇଲେ ପୁତ୍ର ବୀର ଚୂଡ଼ାମଣି
ଅଶ୍ୱତ୍ଥାମା ହତବୋଲି ପୁଣି ଶୁଣିଲେ ବାଣୀ ।

ତହୁଁ କର୍ଣ୍ଣ ଅଗ୍ରତରେ ପଚାରିଲେ ଗୁରୁ
ଅଶ୍ୱତ୍ଥାମା କେଉଁଣେ ଗଲା ତୋହର ସଙ୍ଗରୁ ।
କର୍ଣ୍ଣ ବୋଇଲେ ଗୁରୁହେ ନ କହିବି ମିଥ୍ୟା
ସେହି ନବ ଘଡ଼ିରୁ ସେ ହୋଇଲାଣି ହତ୍ୟା ।
ସମରୁଁ ଭିଡ଼ିବ ବୋଲି ନ କହୁ ତୋ ଆଗେ
ରଥ ଭଗ୍ନବେଳେ ସେହୁ ଥିଲା ମୋର ସଙ୍ଗେ ।
ପୁଣି ପଚାରିଲେ ଶଲ୍ୟ ନିକଟକୁ ଯାଇ
ଅଶ୍ୱତ୍ଥାମା ହତ କଥା ସତ୍ୟ କି ଅଟଇ ।
ଦ୍ରୋଣ ବଚନେ କହନ୍ତି ଶସ୍ତ୍ରଗୁରୁ ଶଲ୍ୟ
ପୁତ୍ରର ବାରତା ମୋର କାହିଁ ଅଛି ଭଲ ।
ସବୁଙ୍କୁ ପୁଚ୍ଛନ୍ତି ଦ୍ରୋଣ କାଏ ଅଛ ଦେଖି
ଏକମାତ୍ର ପୁତ୍ର ମୋର ହୋଇଲେ ନିର୍ମାଥୀ ।
ଦ୍ରୋଣ ପଚାରିଲେ ପୁଣି ଶକୁନି ମନ୍ତ୍ରୀକି
ଅଶ୍ୱତ୍ଥାମାକୁ ଦେଖିଛ ଗଲା ସେ କେଣିକି ।
ଦ୍ରୋଣ ଆଗରେ ନିରାଶ କରି କହେ ଖଳ
ଅଶ୍ୱତ୍ଥାମା ମଲା ଗତ ନବଘଡ଼ି ବେଳ ।
ଅଶ୍ୱତ୍ଥାମାକୁ ତୁ କାହୁଁ ପାଇବୁ ଆବର
ବାପ ଜାଇଁ ଥାଉଁ ଥାଉଁ ମଇଲା କୁମର ।
କୁଳକ୍ଷୟ ମନ୍ତ୍ରୀ କହେ ଝିଙ୍ଗାସ କରଣ
ଏମନ୍ତ ପୁତ୍ର ମଇଲା ତୁ ଅଛୁ ବଞ୍ଚିଣ ।
ସମର ରହିବା ଦେଖି କୃଷ୍ଣ ଅର୍ଜୁନ
ଯୁଧିଷ୍ଠିରଙ୍କ ନିକଟକୁ କରିଣ ଗମନ ।
ଯୁଧିଷ୍ଠିରଦେବ ପୁଛିଲେ ଶୁଣ ସହଦେବ
କେତେ ଆମ୍ଭର ପଡ଼ିଲେ ହୋଇ ମୃତ୍ୟୁଶବ ।
ଯୁଧିଷ୍ଠି ଅଗ୍ରତେ ସହଦେବ ଯା କହିଲା
ଦ୍ରୋଣ ଗୁରୁଙ୍କ ସମରେ ଦ୍ରୁପଦ ମଇଲା ।
କର୍ଣ୍ଣଙ୍କର ମାଇଲାକ ମଗଧଦେଶ ଆଟ
ପାଞ୍ଚ ଅକ୍ଷୌହିଣୀ ବୁଡ଼ିଲେ ନୃପତି ବରାଟ ।
ରଥ ଗଜ ଯୋଦ୍ଧା ବୋଲି କେ କରିବ ଲେଖା
ଅଗାଧ ସମୁଦ୍ରେ କାହିଁ କାଠ ହେବ ଯୋଖା ।
ସହର ଯୁଦ୍ଧେ ପଡ଼ିଲେ ପନ୍ଦର ମର୍ବୁଁତ
ଦୁଇ ସହସ୍ର ରଥୀ ଯେ ଅନସ୍ତ୍ର ରଥ ।
ଗଜ ଯୋଦ୍ଧାଏ ପଡ଼ିଲେ ତେର ଯେ ମର୍ବୁଁତ
ଅଶ୍ୱ ଯେ ଏଗାର କୋଟି ହୋଇଲେ ନିପାତ
ଧ୍ୱଜଧ୍ୱନ ପଦାତିକ ପଡ଼ିଲେ ଆମ୍ଭର
ଏତେ ସୈନ୍ୟ ଗଣିବାକୁ ଶକ୍ତି ହେବ କାର ।

ପୁଣି ପୁଚ୍ଛିଲେ ମନ୍ତ୍ରୀକି ଧର୍ମ ମହୀପାଳ
ଦୁର୍ଯ୍ୟୋଧନର ପଡ଼ିଲେ କେତେ କେତେ ବଳ
ମନ୍ତ୍ରୀ ବୋଲେ ଦୁର୍ଯ୍ୟୋଧନ ଶ୍ୱଶୁର ଭୂମନ୍ୟୁ
ଶିଖଣ୍ଡୀ ରଣେ ଛେଦନ ହେଲା ତାର ତନୁ ।
ରାଜା ମିତ୍ର ଅଳମ୍ବୁଷ ତହିଁ ନାଶଗଲା
ତା ନନ୍ଦନ ଅଳାୟୁଧ ସେ ମଧ୍ୟ ପଡ଼ିଲା ।
ମାଳବ ଦେଶର ରାଜା ନାମ କୃତବର୍ମା
ତାହା ସହିତରେ ନାଶଗଲା ଅଶ୍ୱତ୍ଥାମା ।
ଯୁଧିଷ୍ଠି ପୁଛିଲେ ପୁଣି କହ ସହଦେବ
ଅଶ୍ୱତ୍ଥାମାକୁ କାଏ ସେ କଲା ପରାଭବ ।
ସହଦେବ କହିଲାକ ଘୀର ବୃକୋଦର
ରଥଦଣ୍ଡ ଧରି ପିଙ୍ଗିଦେଲା ବହୁଦୂର ।
ସରସ୍ୱତୀ ନଦୀତୀରେ ବାରୁଣାଇ ବନ
ଭରତ ଭୂଇଁକି ଅଟେ ବତିଶ ଯୋଜନ ।
ରଥ ସହିତରେ ଯାଇ ପଡ଼େ ଅଶ୍ୱତ୍ଥାମା
ଏତେଦୂରେ ପଡ଼ି ମଧ୍ୟ ନ ମଲା ମହାତ୍ମା ।
ଗୋବିନ୍ଦ ବୋଇଲେ ଦେବ ଶୁଣ ଧର୍ମସୁତ
ଦ୍ରୋଣ ତୁମ୍ଭଙ୍କୁ ପଚାରି ଆସିବେ ଏଥ ।
ଅଶ୍ୱତ୍ଥାମା ହତ ବୋଲି କହିଲେକ ବାଣୀ
ଦ୍ରୋଣ ପ୍ରାଣତ୍ୟାଗ ହେବ ସେହି କଥା ଶୁଣି
ଶୁଣସି କେଶବ ଆହେ ବଦନ୍ତି ଯୁଧିଷ୍ଠି
କେମନ୍ତେ କହିବ ମିଥ୍ୟା କରନାହିଁ ବୃଷ୍ଟି ।
ଦ୍ରୋଣ ପୁଛିଲେ କି ଧର୍ମ ନ କରିବା ରକ୍ଷା
ଗୁରୁ ସମ୍ମୁଖେ କେମନ୍ତେ କହିବାକି ମିଥ୍ୟା ।
ଶିବ ଦେବତାଙ୍କଠାରେ ଯେ ମିଥ୍ୟା କହଇ
ଗଳିତ କୁଷ୍ଠବ୍ୟାଧି ତା ଦେହରେ ହୁଅଇ ।
ମାତା ପିତାଙ୍କ ସମ୍ମୁଖେ ଯେ କହିବ ମିଥ୍ୟା
ନିଶ୍ଚୟ ସେ ଜନଙ୍କର ବଂଶ ନୁହେଁ ରକ୍ଷା ।
ଗୁରୁଙ୍କ ସମ୍ମୁଖରେ ମିଥ୍ୟା କହେ ଯେଉଁ ଜନ
ଇହଲୋକେ କଷ୍ଟ ମଲେ ନରକେ ପତନ ।
ଯୁଧିଷ୍ଠି ଦେବଙ୍କ ଏହିପରି ବାକ୍ୟ ଶୁଣି
ପ୍ରଣତ ହୋଇ କହିଲେ ପ୍ରଭୁ ଚକ୍ରପାଣି ।
ଉପାୟ ପ୍ରକାରେ ଯେବେ ଶତ୍ରୁ କରି ବଧ
ଧର୍ମ ବର୍ଦ୍ଧିତ ହୁଅଇ ସର୍ବକାର୍ଯ୍ୟ ସିଦ୍ଧ ।
ନାରାୟଣଙ୍କ ବଚନେ କହନ୍ତି କୌନ୍ତେୟ
ମୋର ବଚନେ ମିଥ୍ୟା କହ ନୁହଇ ନିଶ୍ଚୟ ।

ମୋତେ ପଚାରେ ସ୍ୱାପତ ବୋଲୁ ସତ୍ୟଶୀର
ମିଥ୍ୟା ନ କହିବ ମୂର୍ଚ୍ଛି ଦ୍ରୋଣଙ୍କ ଆଗର ।
ଶ୍ରୀକୃଷ୍ଣ ବୋଇଲେ ତହୁଁ ଶୁଣ ଧର୍ମରାଜ
ଅଶ୍ୱତ୍ଥାମା ହସ୍ତୀ ହତ ଶୁଣିଛ ନିଶ୍ଚୟ ।
ଉଚ୍ଚ ନ ଗର୍ଜିଲ ଅଶ୍ୱତ୍ଥାମାର ମରଣ
ଉତ୍ତର ଧୀରେ କୁଞ୍ଜର ଶବ୍ଦ ଉଚ୍ଚାରଣ ।
ଅନେକ ବାଟେ ଚିଆଇ କହିଲେ ଶ୍ରୀପତି
ଯୁଧିଷ୍ଠି ଶୁଣି ସମସ୍ୟା ତ ଦେଲେ ତାହାଣି ।
ଅନ୍ତ ଶୋଚରେ ଆବର ବୋଇ ଦ୍ରୋଣଗୁରୁ
ଦୁର୍ଯ୍ୟୋଧନକୁ ବୋଇଲେ ଶୋକ ତନ୍ତୁ ତରୁ
ବାବୁ କୃପଣମନ୍ତ୍ରୀ ତୁ ସାବଧାନବର୍ତ୍ତୀ
ଅଶ୍ୱତ୍ଥାମାର ତପସ୍ୟେ ଜାଣ ଦେଇଁ ସ୍ୱସ୍ତି ।
ମାନଗୋଚର ବୋଇଲ ଥିଲା ରଣ ମଧ୍ୟେ
ନିଶ୍ଚେ ଅଶ୍ୱତ୍ଥାମା ତୋର ନାଶ ହେଲା ବାଟେ
ଶୁଣି ଧନୁତୂଣ ଫିଙ୍ଗି ଖଡ୍ଗ ଏକ ଘେନ
ଅରୁଣ ଉଦୟ ପ୍ରାୟେ ଦ୍ୱିଲେ ତଥ୍ ବେଳ ।
ଯୁଧିଷ୍ଠିରଙ୍କ ରଥରେ ପ୍ରବେଶିଲେ ଦ୍ରୋଣ
ପ୍ରଣାମ ଦେଲେ ପାଣ୍ଡବ ବୀର ପାଞ୍ଚଜଣ ।
ଦ୍ରୋଣଗୁରୁ ବୋଇଲେତ ବିଦ୍ୟା ଦେଇ ପ୍ରାପ୍ତ
ମୋହର ଆୟୁଷ ଘେନ ଭର୍ତ୍ତି ପାଣ୍ଡୁଭ୍ରାତ ।
ସ୍ୱସ୍ଥ ରାଜତରେ ସୁଖ ଭୁଞ୍ଜ ନୃପଗଣ
ଏମନ୍ତ ପ୍ରକାରେ ଦ୍ରୋଣ କରିଣ କଲ୍ୟାଣ ।
ବୋଇଲେ ତୁ ଯୁଦ୍ଧ କରୁଥିଲୁ ରେ ଯୁଧିଷ୍ଠି
ମୋର ଅଶ୍ୱତ୍ଥାମାକୁ କି ହୋଇଲା ଅରିଷ୍ଟ ।
ଏ ମହାସମରେ ତାକୁ କେ ଜଣ ସଂହାର
ଦେଖିଥିଲେ ଶୁଣିଥିଲେ କହ ମୋ ଆଗର ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ଗୁରୁପିତା
କହି ନ ପାରିବ ମୂର୍ଚ୍ଛି ତାର ତଥ୍ୟ କଥା ।
ନର ବା କୁଞ୍ଜର ହେଉ ଅଶ୍ୱତ୍ଥାମା ହତ
ଏତ କୃଷ୍ଣର ମନ୍ତ୍ରଣା ଅଟଇ ପ୍ରକୃତ ।
ଏହି କଥାକୁ କହିଲେ ଜଣ ଅତି ଧୀର
ଏକାଳେ ଫୁଙ୍କିଲେ ଶଙ୍ଖ ଦେବ ଚକ୍ରଧର ।
ଯୁଧିଷ୍ଠିରଙ୍କ ବଚନ ଶୁଣି ଗୁରୁଦ୍ରୋଣ
ମୂର୍ଚ୍ଛାଗତ ହୋଇ ହସ୍ତୁ ଛାଡ଼ିଲେ କୃପାଣ ।
ଧୃଷ୍ଟଦ୍ୟୁମ୍ନ ଯୁଧିଷ୍ଠିଙ୍କ ଥିଲା ପଛକଣ୍ଠି
ନୟନ ପାରଣ ଦେଲେ ତାକୁ ଶିଖିପତ ।

ତୋର ପିତାଙ୍କୁ ଅଟେ ବାଟେ ଗୁରୁଦ୍ରୋଣ
କି ସ୍ୱହୁଁ ଖଡ୍ଗ ଘେନ ସ୍ୱାକୁ ଦେବେ ଦାଣ ।
କୃଷ୍ଣଙ୍କ ବଚନେ ବେଗେ ସେ ଧୃଷ୍ଟଦ୍ୟୁମ୍ନ
ଦ୍ରୋଣ ବକ୍ଷସ୍ଥଳେ ଖଡ୍ଗ ହାଣିଲେ ବଦନ
ଦେହଖଣ୍ଡ ହୋଇଗଲା ଛୁଡ଼ିଗଲା ଭାସ୍ୱେ
ରକ୍ତ ଉଠିଲା ଆକାଶୁଁ ବ୍ରହ୍ମଲୋକ ଯାଏ ।
ରଥ ସଜକରି ଆସୁଥିଲା ଅଶ୍ୱତ୍ଥାମା
ସମ୍ମୁଖ ଯାଇ ବାରିତା କହେ କୃପବର୍ମା ।
ଆରେ ମନ ଭାବିଁ ପାରିଁ କରୁ ନଟ କୃଟ
ନ ଜାଣୁ କି ଯମ ତୋର ହୋଇଛି ନିକଟ ।
ଯାହାକୁ ଧରିଲ ଥରେ ନ ଛାଡ଼ିବ ତାକୁ
ରହିଯାଏ ଶେଷ ଭଣ ପାଞ୍ଚି ପାକୁପାକୁ ।
କେତେବେଳେ କିଏ ତୋତେ ହୋଇବ ସହାୟ
ଦେଖଥାଉଁ ଥାଉଁ ତାର ନ କରୁ ଉପାୟ ।
ନଶ୍ୱର ଶରୀରପ୍ରତି କେତେ ତୋ ଯତନ
ଖାଇବାକୁ ସୁଧା ଦେଇ ବିଷ କରେ ଦାନ ।
ମନ ମୃଗ ସ୍ୱେଦକୁପେ ଡୁଅଇ ସେ ଜାତ
କାହାର ନ ଗଲେ ତୋତେ କରଇ ସେ ଘାତ
ଅତଏବ କହେ ବୁଦ୍ଧି ହୁଅ ସାବଧାନ
ହରେ ରାମ କୃଷ୍ଣ ଭଟ ଶ୍ରୀମଧୁସୂଦନ ।
ପଥକୁ ସମ୍ବଳ ନିଶ୍ଚେ ହୋଇବ ସେ ତୋର
କୋଟିଏ ଯମ ଯାହାର ଅଟଇ କିଙ୍କର ।
ଜୀବେ ଦୟା ନାମେ ସଦା କର ରେ ବିଶ୍ୱାସ
ଦ୍ରୋଣପର୍ବରେ କହଇ ଶ୍ରୀ ଶାରଳା ଦାସ ।

## ଅର୍ଜ୍ଜୁନଙ୍କର କୋପ ଓ ଅଙ୍ଗଦର ପିତୃଋଣ ପରିଶୋଧ

ଏଥୁଅନ୍ତେ ବୈବସ୍ୱତ ମନୁ ମହାରାଜା
ଅଗସ୍ତିଙ୍କ ପାଦେ କରି ନାନାବିଧ ପୂଜା ।
ସହସ୍ର ପ୍ରଣାମ କରି ହୋଇ କୃତକୃତ୍ୟ
ବୋଇଲେ ହେ ମହାଭାଗ କରିଲ ମୁକତ ।
ଦ୍ରୋଣ ବଧ କଥା ମୋତେ କହିଲ ବିସ୍ତର
ଗୁରୁବଧ ଦେଖି ପାର୍ଥ କହିଲେ କିପର ।
ସେହି କଥା ଶୁଣିବାକୁ ବଳେ ମୋ ମାନସ
ଅଗସ୍ତି ମୁନି କହନ୍ତି ଶୁଣ ହେ ନରେଶ ।
ଦ୍ରୋଣଙ୍କ ନିଧନ ଦେଖି ପାର୍ଥ ପରିତାପି
କରେ ଖଡ୍ଗ ଘେନ ଧୃଷ୍ଟଦ୍ୟୁମ୍ନ ମହାକୋପୀ

ଗୁରୁ ମୋର ଅଚେତନ ପୁତ୍ରନଷ୍ଟ ଶୁଣି
ଅବୋଧେ ଅଯୁଦ୍ଧେ କପାଁ ପକାଇଲୁ ବାଣି ।
ଅଧରେ ବଳକୁ ରୁପି ଧାମନ୍ତେ କପାଟି
ଶ୍ରୀହରି ଧଇଲେ ତହୁଁ ପାର୍ଥ ଖଡ୍ଗ ମୁଷ୍ଟି ।
ଆରେ ଅର୍ଜୁନ ତାହାଙ୍କୁ କୁଛ କୋପ କରୁ
କାହାକେ ପଟିଲୁ କପାଁ ତୋ ପିଅର ଗୁରୁ ।
ଏ ମହାଭାରତେ ଖଣ୍ଡି କ ଏଡ଼େ ସତ୍ୟ
ସେ ଦ୍ରୋଣ ଥିଲେ ଭୂସ୍ତର ତୃଷ୍ଣା କ ଜୟ ।
ଆଦର ଧୃଷ୍ଟଦ୍ୟୁମ୍ନର ଅଟେ ପିତାବୈରି
ସୈନ୍ୟ ଦ୍ରୋହ କଲା ଦ୍ରୋଣ ଧର୍ମ ନ ବିସ୍ତରି
ଦ୍ରୋଣଗୁରୁ ହସ୍ତେ ଅସ୍ତ୍ର ଥିବା ସମୟରେ
ହରି ବ୍ରହ୍ମା ଇନ୍ଦ୍ର ସବୁ ନୁହନ୍ତି ଜଗତେ ।
ଅଶ୍ୱତ୍ଥାମା ହସ୍ତୀ ହତ ବୋଇଲେ ଯୁଧିଷ୍ଠି
ସେ ସତ୍ୟ ଶୁଣିଥିଲେ ଧରି କୃପାଣଟି ।
ପଞ୍ଚ ପାଣ୍ଡବ ତୁମ୍ଭଙ୍କୁ ସହାୟ ସେ ଜାଣି
ମୋର ବଳେ ରକ୍ଷାକର ନ ପାରନ୍ତ ପୁଣି ।
ଭଲକଥା କରିଲ ତ ଆଉ ଧୃଷ୍ଟଦ୍ୟୁମ୍ନ
ତା ପିତାଶତ୍ରୁ ଦ୍ରୋଣଙ୍କ କରିଲା ନିଧନ ।
ପୁତ୍ର ହୋଇଣ ଯଦ୍ୟପି ପିତାକାର୍ଯ୍ୟ କରି
ଏକାଦଶ ପୁରୁଷଙ୍କୁ ସ୍ୱର୍ଗେ ନିଏ ତାରି ।
ଯୋଗ୍ୟପୁତ୍ର ହୋଇ ପିତା ନ କଲେ ତାରଣ
ପିତୃଲୋକ ସେମାନ ପଡ଼ନ୍ତି ନର୍କରେ ଯାଇଣ ।
ଶୁଣ ତୁ ଅର୍ଜୁନ ମୋର ମନୁ ଗୁପ୍ତ କଥା
ସାବଧାନେ ଶୁଣ ତ୍ରେତାଯୁଗର ବାରତା ।
ବାଳିକୁ ବଧ କରିଲେ ଦେବ ରଘୁପତି
ତାହାର ପୁତ୍ର ଅଙ୍ଗଦ ଥାଟେ ସେନାପତି ।
ହରିସଖା ସେହିଣ ଯେ ଜାମ୍ବବନ୍ତ ବୁଦ୍ଧି
ମନ୍ଦର ଗିରି ଉପାଡ଼ି ବାନ୍ଧିଲେ ବାରିଧି ।
ଷଟେ ଚଉବଂଶ ଯୂଥ ବନ୍ଦର ମର୍ଦ୍ଦିତା
ବହିଶ ଯୂଥ ହୋଇଲା ତାର ପ୍ରସାରିତା ।
ତଉବ ଯୂଥ ହୋଇଲା ଭିତରେ ତାହାର
ରାମଚନ୍ଦ୍ର ବନ୍ଧାଇଲେ ବନ୍ଧ ଏ ପ୍ରକାର ।
ପର୍ବତ ସାଗରେ ବନ୍ଧା ଶୁଣି ଲଙ୍କାନାଥ
ମନରେ ହୋଇଲା ତାର ଆଶଙ୍କା ବହୁତ ।
ଅସୁର ସୈନ୍ୟଙ୍କୁ ଘେନି ବୋଇଲେ ଲଙ୍କେଶ୍ୱର
କାହାର ଜବାବ ଦେବେ ପାଡ଼ିବଥ ମୋର ।

ଏବେ ହୋଇଣ ବନ୍ଦରଦ୍ୱାର ଯେତେ ସେନାପତି
ଲଙ୍କା ଗଡଦ୍ୱାର ସବୁ ନିରୋଧ ପଡ଼ନ୍ତି ।
ବିଭୀଷଣ ବୋଇଲେକ ଶୁଣ ଦାଶରଥି
ଉଦାଟ ପାଡ଼େ ରାବଣ ଭଣେ ତର ଖାତ ।
ବିଭୀଷଣ ବାଣୀ ଶୁଣି ଶ୍ରୀରାମ ପ୍ରତକ୍ଷ
କୋପଭରତେ ଶ୍ରୀରାମ ଧଇଲେ କୋଦଣ୍ଡ ।
ବିଭୀଷଣ ବୋଇଲେକ ଶୁଣ ଦାଶରଥି
ଲଙ୍କା ପଡ଼େ ଶିତ୍ରବେଦ ତର ଲଙ୍କାପତି ।
ଶ୍ରୀରାମ ପାଦେ ଲକ୍ଷ୍ମଣ ହୋଇ ପ୍ରଣାମି
ରାବଣକୁ କୋପ କପାଁ ଏତେ ଦେବ ସ୍ୱାମୀ ।
ଆଗେ ଶ୍ରୀମୁଖକୁ ଦେଇ ଲଙ୍କା ପଠାଇବା
ନ ଦେଲେ ରାବଣ ତାହା ପ୍ରଥମେ ବୁଝିବା ।
ଶ୍ରୀମୁଖ ଶୁଣି ଯଦ୍ୟପି ସୀତା ଦେବ ଫେରି
ଦୈତ୍ୟକୁ ମାରିବା କପାଁ ରକ୍ତ ପାପ ଧରି ।
ଲକ୍ଷ୍ମଣ ବଚନ ଶୁଣି ହସିଲେ ରାଘବ
ଶ୍ରୀମୁଖ ଲେଖିଣ ମୁଦ କରିଲେ ଜାମ୍ବବ ।
ଶ୍ରୀରାମ ବଚନ ଶୁଣି ମନ୍ତ୍ରୀ ଚୂଡ଼ାମଣି
ଆଦ୍ୟ ବଞ୍ଚାବଳୀ ଦେଇ ଶ୍ରୀମୁଖ ନିର୍ମାଣ ।
ଶ୍ରୀହସ୍ତେ ମୁଦ୍ରିକା ମୁଦ ଦେଇ ରଘୁମଣି
ଅଙ୍ଗଦକୁ ଡକାଇଣ ଆଜ୍ଞାଦେଲେ ପୁଣି ।
ଶ୍ରୀମୁଖ ଘେନିଣ ଚଳେ ତହୁଁ ବାଳିସୁତ
ଡମ୍ଫମ ଲଙ୍କାର ଦ୍ୱାରେ ପ୍ରବେଶିଲା ଦୂତ ।
ପ୍ରଥମ ଦ୍ୱାରେ ସୁବର୍ଣ୍ଣ ସିଂହ ଭାଙ୍ଗି ଦେଇ
ଭିତରେ ପଶେ ଅଙ୍ଗଦ ଗଜରାଜ ହୋଇ ।
ପୁଣି ଚନ୍ଦ୍ରବଂଶୀ ପଡ଼ି ଲଙ୍ଘିଣ ଅଙ୍ଗଦ
ଜଙ୍ଘା ତଳେ ମିଳିଲା କରି ଡାକାନାଦ ।
ରେ ରେ ରାବଣ ବୋଲିଣ ଡାକଦେଲା ରାଗେ
ଜଙ୍ଘାରୁ ଆସି ବାନ୍ଧ ପ୍ରଣମରେ ବେଗେ ।
ତବୁତେ ଶ୍ରୀମୁଖକୁ ଘେନ ଦାଶରଥିର
ଲକ୍ଷ୍ମୀ ଘୁଞ୍ଚିଗଲା ତୋର ଜନ୍ମ ଯେ ପ୍ରକାର ।
ରାବଣ ବୋଇଲା କୁହ ଅଙ୍କୁ କାହା ବଳ
ଅଙ୍ଗଦ ବୋଇଲେ ଶ୍ରୀରାମଚନ୍ଦ୍ର ଦୂତପତ ।
ରାବଣ ବୋଲେ ତୁ ଥାଉ ଶ୍ରୀରାମ ପାଖରେ
ଲଙ୍କାପୋଡ଼ା ବୋଲି ଏକ ଜାଣୁ କ ବାନରେ
ରାବଣ ବାକ୍ୟେ ଅଙ୍ଗଦ ହୋଇ ଉଦ୍ଧବେତା
ବୋଲେ ବହୁ ରାମଦୂତ ଅଛନ୍ତି ଗଣିତା ।

ଅଙ୍ଗଦ ବଚନ ଶୁଣି ରାବଣ ବୋଇଲା
କହୁ ସୈନ୍ୟ ମାରି ମୋର ଲଙ୍କା ପୋଡ଼ିଦେଲା
ଅଙ୍ଗଦ ବୋଲେ ଜାଣିଲି ତାର ତଥ୍ୟ ଏବେ
ମାଲ୍ୟବନ୍ତେ ରାମଚନ୍ଦ୍ର ରହିଥିଲେ ଯେବେ ।
ଏକ ବାନର ଗୁମୁରେ କହିଲେକ ବାନ୍ଧ
ରାବଣେଶ୍ୱର ମାଇଲା ଦେବ ମୋତେ ବାନ୍ଧ ।
ବାନର ସୈନ୍ୟ ତା ଶୁଣି ବୋଇଲେ ହିଙ୍ଗାସି
ଲଙ୍କାର ଅସୁରବଳ ନ ପାରିଲୁ ଧ୍ୱଂସି ।
ଏତେବୋଲି ଗର୍ଜିମାରି ଧାଇଁଲେ ସଙ୍କଟେ
ଦେଖା ନାହିଁ ପଳାଇଲା ଜୀବନ ସଙ୍କଟେ ।
ଏ କଥା ଶୁଣି ରାବଣ ହୋଇଲା କ୍ରୁଦ୍ଧ
ଶ୍ରୀମୁଖ ହଅ ବୋଲିଣ ବଢ଼ାଇଣ ପାଦ ।
ଅଙ୍ଗଦ ହସେ ଗୁଡ଼ାଇ ଆପଣାର ପୁଚ୍ଛ
ଜଗତରୁ ଅଧିକ ସେ ହୋଇଲେକ ଉଚ୍ଚ ।
ତାହା ଦେଖିଣ ସମ୍ମୁଖ ହେଲା ଦଶାନନ
ବାମପଦରେ ଶ୍ରୀମୁଖକୁ ଦେଲା କୋପମନ ।
ମନ୍ତ୍ରୀକୁ ତ୍ୟକ୍ତେ ପଡ଼ିଲା ଲେଖା ବଦରଣୀ
ପୁଣି ରାବଣ ପ୍ରତଜ୍ଞା କରେ ଶିରଧୂଣି ।
ତା ଦେଖି ଅଙ୍ଗଦ ରାଗେ ମାରେ ବଜ୍ରମୁଥ
ଖଣ୍ଡ ଚୂର୍ଣ୍ଣ ହୋଇଗଲା ବ୍ରହ୍ମା ଦେବା ରଥ ।
ରାବଣ ଶିର ମୁକୁଟ ବଗାଣ୍ଡି ଧଇଲା
ଜଗତ ଖୁନ୍ଦକୁ ଲଙ୍ଘି ଆଖରେ ଯାକଲା ।
ପୁଣି ରାବଣ ହୃଦରେ ପ୍ରହାରିଲା ପାଦ
ଦେଖନ୍ତି ଅସୁରକୁଳ ଝେପିଲା ଅଙ୍ଗଦ ।
ରାମ ବଳେ କରିଛନ୍ତି ଯାଇ ବେଲବନ
ସେଠାରେ ବାଳି ନନ୍ଦନ କଲକ ବର୍ଣ୍ଣନ ।
ଜଗଖ ରୂନ ମୁକୁଟ ତଳେ ଥୋଇଦେଇ
ସହସ୍ରେକ ପ୍ରଣିପାତ ହେଲା ପାଦେ ଯାଇ ।
ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲେ ରଘୁନାଥ
ବର ମାଗରେ ଅଙ୍ଗଦ ହିଦାଇ ମୋ ସତ୍ୟ ।
ଅଙ୍ଗଦ ବୋଇଲା ତୁମ୍ଭେ ପିତାବୈରି ମୋର
ମୋର ହସ୍ତେ ବଧ ହେବ ହଅ ଏହି ବର ।
ଏହା ଶୁଣି କୋପଭର ହୋଇ ହନୁମନ୍ତ
ମାଡ଼ ବସିଲା ଅଙ୍ଗଦ ଶିରକୁ ତୁରିତ ।
ରହ ରହ ବୋଲି ରାମ ଧଇଲେ ହନୁକୁ
ଗୁଡ଼ ବାବୁ ଯା ଉଚିତ ମାଗିଲା ଆମ୍ଭଙ୍କୁ ।
ଆମ୍ଭଙ୍କୁ ସର ମୋକ୍ଷକ କରିଲେ ଯେ ଋଣ
ଯେଉଁରୂପେ ଉଦ୍ଧରିବ ତାର ପିତୃଋଣ ।
ଏଥିରେ ଅଛଇ ବାକ୍ୟ ତାକୁ ବଡ଼ ଧର୍ମ
ନ ଜାଣି କପାଇଁ କରୁ ଏହିପରି କର୍ମ ।
ବଦନ୍ତି କେଶବ କୁନ୍ତି ଶୁଣ ସବ୍ୟସାଚି
ତ୍ରେତୟା ଯୁଗେ ଏରୂପେ ଚରିତ ହୋଇଛି ।
ଭୁଞ୍ଜ କର୍ଣ୍ଣା କୋପକରୁ ଏ ଧୃଷ୍ଟଦ୍ୟୁମ୍ନକୁ
ପିତା କର୍ମ କଲା ବହୁଧର୍ମ ହେଲା ତାକୁ ।
ଜୟ ଜୟ ରାମଚନ୍ଦ୍ର କୌଶଲ୍ୟା ନନ୍ଦନ
ସ୍ୱରମୂର୍ତ୍ତି ହୋଇ ମର୍ତ୍ତ୍ୟେ ହେଲେ ଅବତୀର୍ଣ୍ଣ ।
ମହୀଭାର ଉଶ୍ୱାସିଲ ରାବଣକୁ ମାରି
ତେଣୁ ନାମ ବହିଅଛ ପ୍ରଭୁ ରାବଣାରି ।
ମହା ମହା ଗିରି ଧରି ବାନ୍ଧିଲ ସାଗର
ସେ ଗିରି କାଷ୍ଠର ମାନେ ନ ପାଇଲା ପାର ।
ଜଳରେ ଭାସିଲା ସେତୁ ହୋଇ ସୋଲବତ
ତୁମ୍ଭ ନାମର ମହିମା ଅଟଇ ଏମନ୍ତ ।
ମୋର ହୃଦୟ ବେଦନା ଗିରଠାରୁ ଭାରୀ
ତେଣୁ ରହିଅଛି ପ୍ରଭୁ ତୟେ ଅପସରି ।
ମରା ମରା ଜପିଥିଲା ଦସ୍ୟୁ ରତ୍ନାକର
ଆହେ ରଘୁନାଥ ତାକୁ କରିଲ ଉଦ୍ଧାର ।
କାଣ୍ଡ କୋଦଣ୍ଡେ ଛେଦିଲ ତାର ପାପଚୟ
ବାଲ୍ମୀକି ନାମେ କଲ ତାର ପରିଚୟ ।
ମୋ ଦୁରିତ ଛେଦିବାକୁ ନାହିଁ ଶରାସନ
ତେଣୁ ରହିଅଛ ଅବା ହୋଇଣ ମଉନ ।
ଶୁଣ ବା ନ ଶୁଣ ପଦ୍ମପାଦେ ନ ହୁଡ଼ିବ
ଶାରଳା ଦାସ କହଇ ଜଡ଼ ରହିଥିବ ।

---

## ଅଶ୍ୱତ୍ଥାମାର ବ୍ରହ୍ମଅସ୍ତ୍ର ପ୍ରୟୋଗ, ଦ୍ରୋଣରମୃତପିଣ୍ଡଦାହ, ଅଶ୍ୱତ୍ଥାମାର ଶୋକ ଓ ଅସ୍ତ୍ର ଶସ୍ତ୍ର ଦାନ

ବଦନ୍ତି ଅଗସ୍ତି ଶୁଣ ହେ ମନୁ ରାଜନ
ରଥ ସଜକରି ଆସେ ଦ୍ରୋଣର ନନ୍ଦନ ।
ଯମୁନାକୁ ପାରିହୋଇ ବାଟେ ଆସୁଥିଲା ।
କୃତବର୍ମା ଶୋକକରି ଏଣୁ ଯାଉଥିଲା ।
ଅଶ୍ୱତ୍ଥାମାକୁ ଦେଖିଣ ଯମୁନାର କୂଳେ
ରୋଦନ କରିଲା ଉଚ୍ଚେ ଦୁଃଶୋକେ ବିକଳେ ।

କାନ୍ଦି ଯାଉଥିଲୁ ଆରେ ବାବୁ ଅଶ୍ୱତ୍ଥାମା
ତୋର ବଧ ଶୁଣି ମଲେ ଦ୍ରୋଣ ମହାତମା ।
ଅଶ୍ୱତ୍ଥାମା ହତ ବୋଲି ଯହୁଁ ଶୁଭେ ବାଣୀ
ଦ୍ରୋଣ ମୂର୍ଚ୍ଛା ଗଲେ ତହୁଁ ତୋର ହତ ଶୁଣି ।
ଦ୍ରୁପଦ ରାଜା ନନ୍ଦନ ସେ ଧୃଷ୍ଟଦ୍ୟୁମ୍ନ
ଦ୍ରୋଣ ଶିର ଛେଦ କଲା ହୋଇ କୋପମନ ।
ଦ୍ରୋଣ ନାଶଗଲା ବୋଲି ଯହୁଁ କହେ କୃପ
ଶୁଣି ଦ୍ରୋଣି ବହିଲେକ ପାଇ ମହାତାପ ।
ପୁଣି କୋପେ ଅଶ୍ୱତ୍ଥାମା ବ୍ରହ୍ମଅସ୍ତ୍ର ଧରି
ପାଣ୍ଡବଙ୍କୁ ମାର ବୋଲି ଦେଲେକ ତିଆରି ।
ଧୃଷ୍ଟଦ୍ୟୁମ୍ନ ସନ୍ତତରେ ପକାଇଲା ମାରି
ଅସ୍ତ୍ରକୁ ଛାଡ଼ଲା ତହୁଁ ମହାକୋପ କରି ।
ମହାବ୍ରହ୍ମଶର ସେ ପେଷିଲେକ ଦ୍ରୋଣି
କୋପରେ ଗର୍ଜ୍ଜନ କଲେ କାଳସର୍ପ ଜିଣି ।
ଆକାଶକୁ ଯୋଡ଼ିଣ ସେ ଆସେ ବ୍ରହ୍ମଶର
ପାଣ୍ଡବ ବିନାଶ ପାଇଁ ହୋଇ ତତପର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଉତପାତ ହୋଇ
ଉଭୟ କୁଳର ସୈନ୍ୟ ନ ପାରିଲେ ରହି ।
ସହଦେବଙ୍କୁ ପୁଚ୍ଛିଲେ ଦେବ ନାରାୟଣ
ଉତପାତ ହୁଏ କପାଁ କହ ତା କାରଣ ।
କସ ଆଲୋଚଇ ପ୍ରଭୁ କହିବ ତୋ ଆଗ
ଅଶ୍ୱତ୍ଥାମା ଆସୁଥିଲା ହୋଇ ଅତିବେଗ ।
ବାଟରେ କହିଲା ତାକୁ ଯାଇ କୃପାଚାର୍ଯ୍ୟ
ଶୁଣିଣ କରିଲା କୋପ ଦ୍ରୋଣର ଆତ୍ମଜ ।
ସ୍ୱାମି ମହାବ୍ରହ୍ମଶର ଏବେ ଅଛି ପେଷି
ଏହିକ୍ଷଣି ସମସ୍ତଙ୍କୁ ଯିବ ସେହି ନାଶି ।
ଅର୍ଜ୍ଜୁନକୁ ରାଇ ଆଜ୍ଞାଦେଲେ ହୃଷୀକେଶ
ନାରାୟଣ ଅସ୍ତ୍ରକୁ ତୁ ଏବେ ନେଇ ପେଷ ।
ସହଦେବର ବାକ୍ୟରେ ନାରାୟଣ ସ୍ମରି
ନାରାୟଣାସ୍ତ୍ରକୁ ପାର୍ଥ ମନରେ ସୁମରି ।
ପାତାଳ ବୈକୁଣ୍ଠପୁରେ ଥିଲେ ବଷ୍ଣୁ ବାଣ
ଅର୍ଜ୍ଜୁନ ପାଶେ ପ୍ରବେଶ ହୋଇଲେ ତକ୍ଷଣ ।
ବ୍ରହ୍ମାସ୍ତ୍ରକୁ ନାରାୟଣ ଅସ୍ତ୍ର ବେଗେ ସନ୍ଧି
ବାସବସୁତ ଆକର୍ଷି ଶର ଦେଲା ସନ୍ଧି ।
ବ୍ରହ୍ମଶର ବିଷ୍ଣୁଶର ଦୁହେଁ ହେଲେ ଭେଟ
ବ୍ରହ୍ମାଣ୍ଡ କମ୍ପିଲା ଦେବେ ପାଇଲେକ କଷ୍ଟ ।

ଆକାଶେ ରହି ନ ପାରି ବୃନ୍ଦାରକଗଣ
ବ୍ରହ୍ମାଙ୍କ ଗ୍ରାମରେ ଯାଇ ପଶିଲେ ଶରଣ ।
ଦୁଇ ଅସ୍ତ୍ରଙ୍କର ତେଜ ଆଘାତରେ ବାଏ
ହସ୍ତିନାକୁ ପଳାଇଲା ଦୁର୍ଯ୍ୟୋଧନ ରାୟେ ।
ଯୁଧିଷ୍ଠିର ଆଦି ସର୍ବେ ଗଲେ ଅପସରି
କେତେ ସୈନ୍ୟ ଯୋଦ୍ଧାମାନେ ପଳାଇ ନ ପାରି
ଏକା ସେ ସ୍ଥାନେ ରହିଲେ କୃଷ୍ଣ ଫାଲଗୁନ
ଆବର ରହିଲେ କୃପ ଅଶ୍ୱତ୍ଥାମା ଜେଣ ।
ତବଣ ଯୋଜନ ଯାଏ ଦାହିଗଲେ ବନ
କୁରୁକ୍ଷେତ୍ରେ ବୃକ୍ଷଜଣ ଉଡ଼ିଲେ କେବଳ ।
ମୁନେ ମନେ ଘଣ୍ଟାକାର ହେଲା ଦେଖି ଅସ୍ତ୍ରେ
ପୃଥିବୀ କମ୍ପିଲା ସେହି ଦୁଇବାଣ ଘାତେ ।
ଦେବତା ପ୍ରମୁଖ ଯାଇ କହିଲେ ହେ ବ୍ରହ୍ମା
ମର୍ତ୍ତ୍ୟସ୍ୱର୍ଗକୁ ତୋହର ନାଶେ ଅଶ୍ୱତ୍ଥାମା ।
ଶୁଣି ମରାଳ ବାହନେ ଯାଇ ବେଦବନ୍ତ
ଅଶ୍ୱତ୍ଥାମାକୁ ବୁଝାଇ କଲେ ଶାନ୍ତମୂର୍ତ୍ତି ।
ବ୍ରହ୍ମାସ୍ତ୍ରକୁ ବ୍ରହ୍ମା ନିଜେ ଘେନିଲେ ହସ୍ତରେ
ନାରାୟଣାସ୍ତ୍ରକୁ କୃଷ୍ଣନେଲେ ଅନ୍ତଃପୁରେ ।
ରଣକ୍ଷେତ୍ରେ ପଡ଼ିଥିଲା ଦ୍ରୋଣଙ୍କର ଶବ
ତାକୁ ନେଇଗଲେ ଦ୍ରୋଣି ଆବର ମାଧବ ।
ଗଙ୍ଗାକୂଳରେ ଅଟଇ ସପ୍ତବଟୀ ବଟ
ଦ୍ରୋଣଙ୍କୁ ଦହନ କଲେ ତାହାର ନିକଟ ।
ପୁଣି ଜାହ୍ନବୀରେ ସ୍ନାନ କରି ଦୁଇକ୍ଷଣୀ
ଯେ ଯାହା ସ୍ଥାନକୁ ଦୁହେଁ ଚଳିଲେ ତଡ଼ିତ ।
ଅଶ୍ୱତ୍ଥାମାର ଜନକ କୁତ୍ସିତସ୍ଥ ଦେଖି
ଅଶ୍ରୁଜଳ ବହେ ରଙ୍ଗବର୍ଣ୍ଣ ହେଲା ଆଖି ।
ଧୃତରାଷ୍ଟ୍ର ଦୁଃଶାସନ ଶଲ୍ୟ କର୍ଣ୍ଣବୀର
ଶୋକ କରଣ ସକଳେ ହୁଅନ୍ତି କାତର ।
ରାଜାପାଶେ ଅପାସ୍ତମେ ପଡ଼େ ଅଶ୍ୱତ୍ଥାମା
କୋଳେ ଧରି ମୁଖେ ମାରି ସିଞ୍ଚେ କୃତବର୍ମା ।
ଅଧାସ୍ତମେ ବହୁଶୋକ କରିଲେକ ଦ୍ରୋଣି
ସକଳେ ହୋଇଲେ ଦୁଃଖୀ ତାର କର୍ମ ଶୁଣି ।
ଶୋକ ଅବସ୍ଥାରେ ଦ୍ରୋଣି ବଚନ କହଇ
ମୋତେ ସେନାପତି କର ଆହେ କୁରୁସାଇଁ ।
ପାଣ୍ଡବକୁଳ ନାଶିବ ମୋର ପିତା କଷ୍ଟେ
ଏକାଙ୍ଗକ୍ଷତ୍ରୀ କରିବ ତୋତେ ପଞ୍ଚରାଷ୍ଟ୍ରେ ।

ତୋର ପରସ୍ପ ପ୍ରତ୍ୟକ୍ଷ ଆଜ୍ଞା କରିଥିଲୁ
କଳ୍ପତରୁ ସେହି ଏବେ ନିଷ୍ଫଳ ହୋଇଲା ।
ପିତାହୁଣ ଶୁଣି ମୋର ମାନ ଉଦ୍ଧାରିବ
ପାଣ୍ଡବ ଧୃଷ୍ଟଦ୍ୟୁମ୍ନ କୃଷ୍ଣଙ୍କୁ ମାରିବ ।
ରଜା ବୋଇଲେ ତୁ କ୍ଷତ୍ରିକୁଳେ ଅବତରି
ହିଂସା ବର ମାଗିଲୁ ମରଣରୁ ଡରି ।
ଆଚାର୍ଯ୍ୟ ବୋଲେ ନ କରିବ ତୋତେ ସେନାପତି
ବାକ୍ୟ ଲଙ୍ଘନର ପୁଂସ ହୋନ୍ତି ଅଧୋଗତି ।
ଯେତେବେଳ ପରିଯନ୍ତେ ପିଣ୍ଡେ ଥିବ ପ୍ରାଣ
ସତ୍ୟ ଲଙ୍ଘିଲେ ଜୀବନ ହେବ ଅକାରଣ ।
ପୃଥିବୀ ଟଳବଟିଳ ହେଲେ ଟଳଟଳ
ହାରିବା ଜିଣିବା କଥା ଅଟେ ଅନ୍ୟମତ ।
ଦ୍ରୋଣି ବୋଲେ ମୋର ବୋଲ ନ କରିଲୁ ବାବୁ
ପଛେ ସୁମରିଲେ ଆଉ ମତେ ନ ପାଇବୁ ।
ଅଧରକୁ ପୃଷ୍ଟ କରି ବୋଲେ କୁରୁରାଜ
ଆରେ ଅଶ୍ୱତ୍ଥାମା ମୋତେ ଏ ସବୁ ନ ବୁଝ
ପୂର୍ବ ଛାଡ଼ି ସୂର୍ଯ୍ୟ ଉଦେ ହୋଇଲେ ପଶ୍ଚିମ
ଚରାଚର ଜୀବ ଚନ୍ତା ଛାଡ଼ି ଦେବ ଧର୍ମ ।
ଜଳ ଛାଡ଼ି ପର୍ବତରେ ଫୁଟିବ କମଳ
ସ୍ଥାନ ଛାଡ଼ି ସିନ୍ଧୁ ଯେବେ ଲଙ୍ଘିବଟି କୂଳ ।
ଅମାବାସ୍ୟା ରାତ୍ରେ ଯେବେ ଉଦେ ଶଶଧର
ଚନ୍ଦ୍ରନଷ୍ଟ ହେବ ଯେବେ ପୂର୍ଣ୍ଣିମା ନଶିର ।
ସ୍ୱର୍ଗ ଛାଡ଼ି ଯେବେ ମର୍ତ୍ତ୍ୟେ ଯିବେ ବୃନ୍ଦାରକ
ତଥାପି ଆନ ନୋହିବ ମହତଙ୍କ ବାକ୍ୟ ।
କହୁ କହୁ ମହାରୋଷ କୁରୁରାଜା ହେଲେ
ଅଶ୍ୱତ୍ଥାମାକୁ ବୋଇଲେ ଥିଲେ ଅବା ଗଲେ
ନିଷ୍ଠୁର କରି କହିଲା ଯହୁଁ ଧାର୍ତ୍ତରାଷ୍ଟ୍ରି
ତହୁଁ ଦ୍ରୋଣଙ୍କ କୁମର ରାଗେ ଗଲା ଉଠି ।
ମନେ ବିଚାରିଲା ହେବ ଅସ୍ତ୍ରଶସ୍ତ୍ର ତ୍ୟାଗୀ
ତୀର୍ଥବାସୀ ହୋଇ ମୁହିଁ ହେବି ମହାଯୋଗୀ ।
ଦୁର୍ଯ୍ୟୋଧନକୁ ଯାଇଣ ଶଲ୍ୟ ଜଣାଇଲା
ଅଶ୍ୱତ୍ଥାମାର ଚରିତ ଏମନ୍ତ ହୋଇଲା ।
ଶୁଣି ଦୁର୍ଯ୍ୟୋଧନ ଶୋକେ ଆକୁଳ ହୋଇଲା
ଅଳମ୍ବୁଷ ଅଳାୟୁଧ ଜୟଦ୍ରଥ ମଲା ।
ଭୀଷ୍ମ ଶରଶଯ୍ୟା କଲେ ନାଶଗଲେ ଦ୍ରୋଣ
କି ବୁଦ୍ଧି କରିଣ ଏବେ ହେବ ପରିତ୍ରାଣ ।

ଏମନ୍ତ ବ୍ୟାକୁଳ ହେଲେ ଦ୍ରୋଣଙ୍କ ଆତ୍ମଜ
ଆଉ କି ସମର କରି ଲଭିବି ମୁଁ କାର୍ଯ୍ୟ ।
ଦ୍ରୋଣ ମହାବୀର ଭରଦ୍ୱାଜଙ୍କ ନନ୍ଦନ
ଏମନ୍ତ କ୍ଷତ୍ରୀର ହେଲା ମସ୍ତକ ଛେଦନ ।
ମଘବା କରଇ ଶଙ୍କା ଦ୍ରୋଣ କଲେ ରଣ
କାହେ ଶିରଶ୍ଛେଦ ହେଲା ଏ ଅସ୍ତ୍ର ଧରଣ ।
ଆହେ ଜନେ କ୍ଷତ୍ରିବୃତ୍ତି ଅଟେ ମହାମତି
କାହେ ସର୍ବ ଯୋଗମନ୍ତ୍ର ହୁଏ ତପଶ୍ୟତି ।
ଅସ୍ତ୍ରବିଦ୍ୟାର ଅଟଇ ବହୁତ ଦୁର୍ଗୁଣ
ମହା ମହା ଦ୍ୱନ୍ଦ୍ୱ ଆଣି କରେ ସଂଘଟଣ ।
ଦ୍ରୋଣଗୁରୁ ଥିଲେ ସବୁ ଗୁଣରେ ପଣ୍ଡିତ
ମନ୍ତ୍ର ପାଠକଲେ ବ୍ରହ୍ମା ହୁଅନ୍ତି ଶଙ୍କିତ ।
କୃପଙ୍କ ଆଗରେ ଦ୍ରୋଣି ଯାଇଣ କହିଲା
ରଜା ମୋତେ ସେନାପତି ଯଦ୍ୟପି ନ କଲା ।
ତେଣୁ ପିତାଙ୍କର ଶତ୍ରୁ ନ ପାରିଲି ସାଧି
ଅସ୍ତ୍ର ଥିଲେ ପୁଣି ଇଚ୍ଛା ହୋଇବ ଉପାଧି ।
ଅତଏବ ଅସ୍ତ୍ର ଶସ୍ତ୍ର କରିଦେବି ଦାନ
ନାନାବିଧ ତୀର୍ଥକୁ ଯାଇ କରିବି ସ୍ନାହାନ ।
ସହଦେବ ଜଣାଇଲା ଶୁଣ ଚକ୍ରପାଣି
ପିତା ବିୟୋଗେ ବହୁତ ଶୋକକଲା ଦ୍ରୋଣି ।
ଦୁର୍ଯ୍ୟୋଧନ ସେନାପତି ନ କରିଲା ଯହୁଁ
ଅସ୍ତ୍ରମାନ ଦାନଦେବ କହିଲାକ ତହୁଁ ।
ଭଲ ବୁଦ୍ଧି ପାଇଲେ ସେ ଦେବ ଅସ୍ତ୍ରଦାନ
ତାହା ସେନବାକୁ ହେବ ଅଟୁ ରାଜନ ।
ଗଙ୍ଗାକୂଳେ ଅଛି ଦେବ ଜଟିବଟ ତଳେ
ସମସ୍ତ ଦାନ ଦେବାକୁ ଇଚ୍ଛିଛି ସେ ସ୍ଥଳେ ।
ମାନଗୋବିନ୍ଦ ଦ୍ରୋଣିକୁ ସେନାପତି କଲେ
ଲେଖି ନ ପାରିବୁ ନାଥ ଆମ୍ଭଙ୍କୁ କି ଭଲେ ।
ଏତେବେଳେ ଭଲବେଳ ହୋଇଅଛି ହରି
ନିଭ୍ରାନ୍ତ ହୋଇଣ ତୁମ୍ଭେ ଯାଅ ବେଗକରି ।
ସହଦେବର ବଚନେ ସାନନ୍ଦ ଗୋବିନ୍ଦ
ବୋଇଲେ ସେହିବା ଦାନ ତାକୁ କର ମନ୍ଦ
ପ୍ରତ୍ୟକ୍ଷ ହୋଇଲେ ଦେବ ଉତ୍ତମ ବ୍ରାହ୍ମଣ
ଲମ୍ବିତ କରିଣ ଜୁଡ଼ା ବିକଚ୍ଛ ବସନ ।
ଦ୍ୱାଦଶ ଚିତା ଶ୍ରୀଅଙ୍ଗେ ଶ୍ରୀବତ୍ସ ଲାଞ୍ଛନ
ଯଜ୍ଞୋପବୀତ କାନ୍ଧରେ ଦିଶେ ଶୋଭାବନ ।

ଚନ୍ଦକୂଟ କୁଶବନ୍ଧ କକ୍ଷେ ଛନ୍ତି ଧରି
ରୁଦ୍ରାକ୍ଷର ଜପାମାଳ ହୃଦୟରେ ଭରି ।
ପାଣ୍ଡବଙ୍କ ଛଳେ ନିଜ ରୂପ କଲେ ଗୋପ୍ୟ
ଦ୍ରୋଣି କଟକକୁ ଗଲେ ବ୍ରାହ୍ମଣ ସ୍ୱରୂପ ।
ଗଙ୍ଗାତୀର ଉଟିବଟ ତଳେ ଅଛି ବସି
ଛମୂରେ ପଢ଼ିଲେ ବେଦ ବେଦ ବ୍ରହ୍ମଋଷି ।
ଗାୟତ୍ରୀ ଧନୁର୍ବେଦକୁ ପଢ଼ିଲେ ସେ ବାଛି
ଶୁଣି ଦ୍ରୋଣନନ୍ଦନର ନ ସ୍ଫୁରିଲା ବାଛି ।
ଅଶ୍ୱତ୍ଥାମା ବୋଲେ ଅସ୍ତ୍ର ଶସ୍ତ୍ର ଦେବ ତୋତେ
ଧନୁ ଅସ୍ତ୍ର ବନା ଆନ ତ ମିଳିବ ମୋତେ ।
ଗୋବିନ୍ଦ ବୋଇଲେ ବାବୁ କରିବୁ କି ନାସ୍ତି
ରୁଦ୍ର କୋପକଲେ ମୁହିଁ ପାଇବ କି ବସ୍ତି ।
ବ୍ରାହ୍ମଣ ହୋଇଣ ଯେବେ ଗଣଇ ବାରମ୍ବାର
ଯେ ଯାହା ବଳଇ ତାହା ଦେବଇ ବେଗରେ
ଉପର ହସ୍ତରେ ବଏ ଦ୍ରୋଣଙ୍କ ସନ୍ତତି
ତଳହସ୍ତ ପାତି ନେଲେ ବେଦ ଶିଖିପତି ।
ଯେତେ ଅବା ଅଙ୍ଗେ ଲଭିଥିଲା ତା ଭୂଷଣ
ରଥ ଅଶ୍ୱ ଆଦିକରି ଦେଲାକ ଦାନେଣ ।
ଦେଲାକଲେ ସେ ମହାବାଳ ଦେବ ଦଇତ୍ୟାରି
ଶସ୍ତ୍ରମାନ ରଥେ ରଖି ଚଳଲେ ଶ୍ରୀହରି
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହେଲେ ଜଗଦ୍ଗୁରୁ ।
ଭୀମସେନର ଗୋଚରେ ଦେଲେ ଧନୁ ରଥ ।
ଅସ୍ତ୍ର ଶସ୍ତ୍ର ଦେଇଣ ସେ ତପୋଧନ ବେଶେ
ଜଟାବସ୍ତ୍ର ପରିଧାନେ ନାନା ତୀର୍ଥେ ପଶେ ।
ପିତୃକାର୍ଯ୍ୟ ସାରିଲା ସେ ଗଣ୍ଡୂକୀର ତୀର୍ଥେ
ଦଣ୍ଡ କମଣ୍ଡଳୁ ସେନ ମିଳ ଚଳାଗ୍ରତେ ।
ବଳସ୍ତ୍ର ମାନଗୋବିନ୍ଦ ଉତ୍ତମ ଆସନେ
ଦ୍ରୋଣି ପ୍ରବେଶିଲା କୁରୁନାଥ ସନ୍ନିଧାନେ ।
ତପୋଧନ ବେଶ ଦେଖି ବୋଇଲା ଶକୁନି
ଏତେକାଳେ ଦ୍ରୋଣି ତୋର ଜୀବ ହେଲାଧମୀ
କ୍ଷତ୍ରି ହୋଇ ପିତୃକାର୍ଯ୍ୟ କରି ନ ପାରିଲୁ
ଭିକ୍ଷାରୀ ହୋଇଣ ନିଜ ଜୀବନ ରଖିଲୁ ।
କି ଲାଗି ହୋଇଣ ଯେଣୁ ମରଣକୁ ଡରି
ପିତାଶତ୍ରୁ ନ ମାରିଲେ କେଉଁ ଧର୍ମେ ସରି ।
ଦ୍ରୋଣି ବୋଲେ ବ୍ରହ୍ମଶିର କଲି ମୁଁ କ୍ଷେପଣ
ଉପାୟରେ ବଞ୍ଚାଇଲେ ତାଙ୍କୁ ନାରାୟଣ ।

ଶକୁନି ବୋଇଲା ବିପ୍ରକୁଳେ କୁ ଜନମ
ତୋଠାରୁ ଦାନ ଯେଣିକା କେ ହେଲା ସକ୍ଷମ
ଅଶ୍ୱତ୍ଥାମା ବୋଲେ ଏକ ଦ୍ୱିଜେ ଦେଲି ଦାନ
ଶକୁନି ବୋଇଲା ଏବେ ବଝିଲି ତୋ ମନ ।
ତୋହଠାରୁ ସବୁ ଶସ୍ତ୍ର କୃଷ୍ଣ ନେଲେ ହରି
ଅନ୍ତର୍ଯ୍ୟାମୀ ନାଥ ସେହୁ ଗଲେ ମାୟାକରି ।
ପାଣ୍ଡବ ରକ୍ଷଣେ ହରି କୃଷ୍ଣ ଭୁଆଇଲେ
ତାହାଙ୍କ କପଟ ଜାଣି ନ ପାରିଲୁ ହେଳେ ।
ଅଶ୍ୱତ୍ଥାମା ବୋଲେ ମୁହିଁ ଶସ୍ତ୍ର ଦେଲି ଦାନ
କୃଷ୍ଣ ନେଇଲେ ଯଦ୍ୟପି ହେଲା ବଡ଼ ପୁଣ୍ୟ ।
ଭୃଗୁରାମ ଅବତାରେ ଅସ୍ତ୍ର ଦେଇଥିଲେ
ଜନ୍ମ ଅବତାରେ ତାହା ବାହୁଡ଼ାଇ ନେଲେ
ଯେ ଆୟୁଧ ଦେଇଥିଲା ସେହୁ ସେକପଣ
ମଧ୍ୟେ କେବଳ ମୋ ପିତା ଶିରଚ୍ଛେଦ ହେଲା
ଅଶ୍ୱତ୍ଥାମା ବୋଇଲା ହେ ମାନଚକ୍ରବର୍ତ୍ତୀ
ମୋ ବଚନ ଶୁଣିବୁ କି କୁହ ନା ଏ ଘାନ୍ତି ।
ଶ୍ରୀକୃଷ୍ଣ ଭୂମ୍ନ ସର୍ବଙ୍କୁ ନାଶିବେ ଉପାୟେ
ଗ୍ରାମ ଦେଇ ପାଣ୍ଡବଙ୍କୁ ଥୁଅ କୁରୁସ୍ୱୟେ ।
ଭୀଷ୍ମ ଶରଶଯ୍ୟା କଲେ ଦ୍ରୋଣ ହେଲେ ହତ
ଅନ୍ତେ ଅସ୍ତ୍ର ତ୍ୟାଗୀ ହୋଇ ହେଲି ତପୋବନ୍ତ
ଶଲ୍ୟ ସଙ୍ଗତରେ ଜାଣ ନାଶଯିବ କର୍ଣ୍ଣ
ଶକୁନି ମନ୍ତ୍ରୀର କାର୍ଯ୍ୟ ହୋଇବ ସାଧନ ।
ଅଶ୍ୱତ୍ଥାମାର ଏମନ୍ତ ବଚନକୁ ଶୁଣି
ରାଧେୟ ସଭାମଧ୍ୟରୁ ଉଠେ ଶିରଝୁଣି ।
ରହ ରହ ଅଶ୍ୱତ୍ଥାମା ଦେଖିବୁ ମୋ ଯୁଦ୍ଧ
ଆଜଦିନ ଅନ୍ତେ ନଷ୍ଟେ ପାଣ୍ଡବଙ୍କ ବଧ ।
ଆଜ୍ଞା ଅଶ୍ୱତ୍ଥାମା ଆମ୍ଭ ଗୁରୁ ଯେବେ ଦ୍ରୋଣ
ମାରିବ ଦ୍ରୁପଦ ପୁଅ କରି ଧୋଇ ରଣ ।
ଅଶ୍ୱତ୍ଥାମା ବୋଲେ ତୋ କଥାରେ ଆକ୍ଷେପକଲେ
ମାନଗୋବିନ୍ଦ ସକଳ ବୁଡ଼ାଇ ବସିଲେ ।
ଯାଇଛି ପ୍ରୟାଗ ତୀର୍ଥେ ଥିବ ଦିନ ଚାରି
ଜାଣିବ କ୍ଷତ୍ରି ସ୍ୱପଣ କେମନ୍ତ ଭୁଜଶରି ।
କର୍ଣ୍ଣ ବୋଲେ ଶିରେ ବାନ୍ଧ ମୁକୁଟ ଭୁରତେ
ହେଲା ଯୁଦ୍ଧ କର ଭୀଷ୍ମ ଦ୍ରୋଣଙ୍କ ଦେଖନ୍ତେ ।

ଶିବ ବ୍ରହ୍ମା ବିଷ୍ଣୁ ଅବା ଆସୁ ପୁରନ୍ଦର
ପାଣ୍ଡବ ରଖିବା କ୍ଷମ ନୋହିବ କାହାର ।
ଯୁଧିଷ୍ଠିର ପ୍ରତିଜ୍ଞା ଦେଖି ମାନଚକ୍ରବର୍ତ୍ତୀ
କର୍ଣ୍ଣ ଶିରରେ ମୁକୁଟ ବାନ୍ଧିଲେକ ଧାତ ।
ଭୀଷ୍ମ ଦଶଦିନ ଯୁଝି କଲେ ଶରଶଯ୍ୟା
ଦ୍ରୋଣ ସମରେ ପଡ଼ିଲେ ନବସସ୍ର ରଜା ।
ଦ୍ରୋଣ ଦ୍ୱିତୀୟ ଯୁଦ୍ଧରେ ପଡ଼େ ଅଭିମନ୍ୟୁ
ତୃତୀୟ ଯୁଦ୍ଧେ ପଡ଼ିଲା ସିନ୍ଧୁ ରଜା ସୂନୁ ।
ଚତୁର୍ଥ ଦିବସ ଯୁଦ୍ଧରେ ବହୁସୈନ୍ୟ ବଧ
ପଞ୍ଚମ ଦିବସେ ହେଲା ଦ୍ରୋଣ ଶିରଚ୍ଛେଦ ।
ଦ୍ରୋଣ ଅନ୍ତେ ସେନାପତି ହୋଇଲେ ଯେ କର୍ଣ୍ଣ
ପାଞ୍ଚଲକ୍ଷ ରଥସବୁ ଅଟଇ ସୁବର୍ଣ୍ଣ ।
ନବଲକ୍ଷ ହସ୍ତୀ ସର୍ବେ ମହାମତ୍ତ ଦନ୍ତୀ
ଅର୍ବୁଦେ ଅଶ୍ୱ ପଦାତି ଅଟେ ଅଗଣିତା ।
ତାଡ଼ ତୋଡ଼ର ବାହୁଟି ପୁଣି ଜଗଦ୍‌ବଳା
ମଣିମୁକୁଟ କୁଣ୍ଡଳ ଗଳେ ରତ୍ନମାଳା ।
ଭଣସ୍ୱରଥେ ଦେଖସି ଲାଙ୍ଗୁଡ଼ର ଧ୍ୱଜା
ଦେବକୋଟି କଣସ୍ୱକୁ ବୃଷ୍ଟି କଲା ରଜା ।
ଯୁଧିଷ୍ଠିର ସ୍ମରଣ କଲା ଦେବୀ କାତ୍ୟାୟନୀ
ଜୟ ତୁ ଜୟ ତୁ ମାତ କାମାକ୍ଷୀ ଜନନୀ ।
ଜୟ ତୁ ଜୟ ମାତା ଗୋ ଅଭିଷ୍ଟ ନବାନ୍ତୁ
ତୋର ନାମ ସୁମରନ୍ତେ ସର୍ବଦା ତୁ ଚାନ୍ତୁ ।
ଜୟ ତୁ ଜୟ ତୁ ମାଗୋ ଅଟୁ ତୁ ପିଙ୍ଗଳା
ଜୟ ତୁ ମହାମାୟୀ ତୁ ସର୍ବମଙ୍ଗଳା ।
ଜୟ ତୁ ଜୟ ତୁ ମାତ ଅଟୁ ବିଶ୍ୱରୂପୀ
ସକଳ ଜନଙ୍କୁ ସଦା ରଖ ତୁ ଅଦ୍ୟାପି ।
ତୁହି ମାତ ମାତଙ୍ଗିନୀ ତୁହି ଗୋ ଶାରଳା
ଧ୍ୟାନ ଧାରଣା ଜନଙ୍କ ସଙ୍ଗେ ତୋର ଖେଳା
ଜୟ ତୁ ଜୟ ତୁ ମାତ ତୁହି ନାରାୟଣୀ
ଦେବ ଦାନବ ମାନବ ଶରଣ ରକ୍ଷଣୀ ।
ତୁହି ମାତ ରୂପାନ୍ତରେ ଅଟ ଗୋ ବଗଳା
କାତ୍ୟାୟନୀରୂପେ ମାଗୋ ହେଉ ମତିଭୋଳା
ତୁହି ମାତ ମହାମନ୍ତ୍ରରୂପୀ ଗୋ ଗାୟତ୍ରୀ
ଜଗତଜନ ମାତାଙ୍କ ଅଟୁ ଜନୟିତ୍ରୀ ।
ତୁ ମାତ ଅଟୁ ପ୍ରଳୟକାଳ ରକ୍ଷାକାରୀ
ତୋ ପାଦେ ଶରଣ ପଶେ ରଖ ଶାକମ୍ଭରୀ ।
ଶୂଦ୍ରମୁନି ଶାରଳାର ଯେନ ଏ ବିନତି
ସର୍ବଦା ମୋ ହୃଦେ ଥାଇ କର ତୁ ବସତି ।
ଆହେ ଭକ୍ତଜନମାନେ ନ ଧରିବ ଦୋଷ
ଦ୍ରୋଣପର୍ବ ହେଲା ଏବେ ଏଥିଠାରେ ଶେଷ ।

* ଦ୍ରୋଣପର୍ବ ସମାପ୍ତ *



ମୁଦ୍ରାକର—ଶ୍ରୀ କମଳଲୋଚନ ପରବଡ଼ୁ, ଶ୍ରୀରାଧାରମଣ ପ୍ରେସ, କଟକ—୧୯୮୧